# ଯୁଗେ ଯୁଗେ ଭାରତ

ସୂର୍ଯ୍ୟନାରାୟଣ ଦାସ



# ଯୁଗେ ଯୁଗେ ଭାରତ

( ପ୍ରାଗୈତିହାସିକ ଯୁଗ—ମୋଗଲ ଯୁଗ )

ଶ୍ରୀ ସୂର୍ଯ୍ୟନାରାୟଣ ଦାସ
ଏମ୍. ଏ. ଓ. ଏଫ୍. ଏସ୍.

ପୁସ୍ତକ ଭଣ୍ଡାର
ବ୍ରହ୍ମପୁର-୧

*YUGE YUGE BHARAT*
*SURYANARAYAN DAS.* ( A cultural history of India )

Publisher
*Sri Nityananda Das*
**PUSTAK BHANDAR**
Berhampur-1

Printer :
**New Stores Press**
Berhampur-2

PRICE ;
Bound: Rs. 10/-
Unbound: Rs. 8-50
ISt. Edition
August, 1972

ପ୍ରକାଶକ :
ଶ୍ରୀ ନିତ୍ୟାନନ୍ଦ ଦାସ
ପୁସ୍ତକ ଭଣ୍ଡାର
ବ୍ରହ୍ମପୁର-୧

ପ୍ରଚ୍ଛଦ :
ଶ୍ରୀ ସୀତାକାନ୍ତ ମହାପାତ୍ର

ମୂଲ୍ୟ :
ବନ୍ଧେଇ ଟ ୧୦୲
ଅବନ୍ଧା ଟ ୮-୫୦

# ଅଭିମତ

ଶ୍ରୀଯୁକ୍ତ ସୂର୍ଯ୍ୟନାରାୟଣ ଦାସଙ୍କ ଦ୍ୱାରା ଲିଖିତ 'ଯୁଗେ ଯୁଗେ ଭାରତ' ପୁସ୍ତକଟି ମୁଁ ମନଯୋଗ ସହକାରେ ପଢ଼ିଛି । ଶ୍ରୀଯୁକ୍ତ ଦାସ ପ୍ରଶାସନିକ ବିଭାଗରେ କାର୍ଯ୍ୟକରି ସୁଦ୍ଧା ଓଡ଼ିଶାରେ ଜ୍ଞାନ ବିସ୍ତାର ପାଇଁ ଏକାଧିକ ପୁସ୍ତକ ପ୍ରଣୟନ କରି ତରୁଣ ବୟସରେ ଯେ ଯେଉଁ ଆଦର୍ଶ ଦେଖାଇଛନ୍ତି, ତାହା ପ୍ରକୃତରେ ପ୍ରଶଂସାର୍ହ । ଓଡ଼ିଶାରେ ଉପାଦେୟ ପୁସ୍ତକ ଅବଧି ଦୁର୍ଲଭ । ଅଳ୍ପଦିନ ଭିତରେ ଯେତେବେଳେ ଓଡ଼ିଆ ମାଧ୍ୟମରେ ସମସ୍ତ ଶ୍ରେଣୀରେ ସମସ୍ତ ବିଷୟ ଶିକ୍ଷା ଦିଆଯିବ, ସେତେବେଳେ ଏହି ଦୁର୍ଲଭତା ଆହୁରି ବେଶୀ ଅନୁଭୂତ ହେବ । ଶ୍ରୀଯୁକ୍ତ ଦାସଙ୍କ ଅନ୍ୟାନ୍ୟ ପୁସ୍ତକ ଭଳି ଏହି 'ଯୁଗେ ଯୁଗେ ଭାରତ' ପୁସ୍ତକଟି ଏହି ଅଭାବ ଦୂର କରିବାରେ ଯେ କେତେକାଂଶରେ ସାହାଯ୍ୟ କରିବ, ଏଥିରେ ସନ୍ଦେହ ନାହିଁ ।

ପୁସ୍ତକଟି ପାଠ୍ୟ ପୁସ୍ତକ ଭଳି ଲେଖା ଯାଇନାହିଁ, ଏଣୁ ଏହା ସର୍ବସାଧାରଣଙ୍କ ସୁଖ-ପାଠ୍ୟ ହେବ । ମାତ୍ର ଏହା ସବୁ ଶ୍ରେଣୀର ଛାତ୍ରମାନଙ୍କ ଚାହିଦା ଯେ କେତେକ ପରିମାଣରେ ମେଣ୍ଟାଇ ପାରିବ, ଏକଥା କହିବାକୁ ମୁଁ କୁଣ୍ଠାବୋଧ କରୁନାହିଁ । ଭାରତୀୟ ସଭ୍ୟତା ଓ ଇତିହାସର ସଂକ୍ଷିପ୍ତ ଚିତ୍ରଟିଏ ସହଜ ଓ ସୁବୋଧ ଭାଷାରେ ଦିଆଯାଇ ଥିବାରୁ ଛାତ୍ର ତଥା ସାଧାରଣ ପାଠକମାନଙ୍କ ପାଇଁ ଏହା ଉପଯୋଗୀ ହୋଇପାରିବ ବୋଲି ମୋର ଧାରଣା ।

ପୁସ୍ତକଟିରେ ସନ୍ନିବେଶିତ ବିଷୟମାନଙ୍କ ସମ୍ବନ୍ଧରେ ମୋର ମତଦ୍ୱୈଧ ନାହିଁ, କିନ୍ତୁ ମୋର ମନେ ହେଉଛି ଯେ ଶୁଙ୍ଗ ରାଜତ୍ୱ କାଳକୁ ସେ ଯେଉଁ ପୌରାଣିକ କାଳ ଆଖ୍ୟା ଦେଇଛନ୍ତି, ତାହା ସର୍ବଜନସମ୍ମତ ହେବ ନାହିଁ । ଶୁଙ୍ଗମାନଙ୍କ ସମ୍ବନ୍ଧରେ କେବଳ ପୁରାଣରୁ ନୁହେଁ, ପତଞ୍ଜଳିଙ୍କ ମହାଭାଷ୍ୟରୁ ଓ ଶିଳାଲେଖମାନଙ୍କରୁ ମଧ୍ୟ ବହୁ କଥା ଜଣା ଯାଇଛି । ଏଣୁ ଏମାନଙ୍କ ରାଜତ୍ୱ କାଳକୁ ପୌରାଣିକ କାଳ ଆଖ୍ୟା ଦେବା ସମୀଚୀନ ହେଉ ନାହିଁ । ଅନ୍ୟଥା ପୁସ୍ତକଟି ସର୍ବାଙ୍ଗ ସୁନ୍ଦର କହିଲେ ଚଳେ ।

ସ୍ୱା–(ଡକ୍ଟର) କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
୧୨।୮।୭୨
ମୁଖ୍ୟ ଅଧ୍ୟାପକ, ଇତିହାସ ବିଭାଗ,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ।

ଏହି ପୁସ୍ତକର ପ୍ରଣୟନ ଓ ପ୍ରକାଶ ଦିଗରେ ‘ନବ ଜୀବନ’ ପତ୍ରିକାର ସଂପାଦକ ଶ୍ରୀ ଚିନ୍ତାମଣି ମିଶ୍ର, ଖଣ୍ଡପଡ଼ା ଉଚ୍ଚ ବିଦ୍ୟାଳୟର ସହକାରୀ ଶିକ୍ଷକ ଶ୍ରୀ କୃଷ୍ଣଚନ୍ଦ୍ର ମହାରଣା, ଲାଲଶାସନ ଉଚ୍ଚ ବିଦ୍ୟାଳୟର ଶିକ୍ଷକ ଶ୍ରୀ ବାଉରିବନ୍ଧୁ ସାହୁ, ଓଡ଼ିଶା ବୁକ୍ ଷ୍ଟୋରର ହିସାବ ରକ୍ଷକ ଶ୍ରୀ ନରସିଂହ ପାଲ, ବିଜୟ ବୁକ୍ ଷ୍ଟୋରର ସ୍ୱତ୍ୱାଧିକାରୀ ଶ୍ରୀ ଭାସ୍କରଚନ୍ଦ୍ର ପାତ୍ର, ଚିତ୍ରଶିଳ୍ପୀ ଶ୍ରୀ ସୀତାକାନ୍ତ ମହାପାତ୍ର, ରୟାଲ ହାଫଟୋନ୍ କମ୍ପାନୀର ଶ୍ରୀ ନିହାର ରଞ୍ଜନ ଦାସ, ସହକର୍ମୀ ଶ୍ରୀ ଅଜୟକୁମାର ଦାସ, ଶ୍ରୀ ରାମଚନ୍ଦ୍ର ବେହେରା, ପ୍ରକାଶକ ଶ୍ରୀ ନିତ୍ୟାନନ୍ଦ ଦାସ ଏବଂ ପୁସ୍ତକ ଭଣ୍ଡାର ଓ ନିଉ ଷ୍ଟୋର୍ସ ପ୍ରେସର କର୍ମକର୍ତ୍ତାଗଣ ମୋତେ ବିଭିନ୍ନ ଭାବରେ ସାହାଯ୍ୟ କରିଥିବାରୁ ଏ ସମସ୍ତଙ୍କ ନିକଟରେ ମୁଁ ଋଣୀ । ସର୍ବୋପରି, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଇତିହାସ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହି ପୁସ୍ତକ ଧୈର୍ଯ୍ୟର ସହ ପାଠକରି ତାଙ୍କର ସୁଚିନ୍ତିତ ଅଭିମତ ଦେଇଥିବାରୁ ତାଙ୍କ ନିକଟରେ ମୁଁ ଚିର କୃତଜ୍ଞ । ଇତି ।

ଆସିକା

ତା·୧୫ । ୫ । ୭୨ ଲେଖକ

ଅକ୍ଷୟ ତୃତୀୟା

ମୋର ଶିକ୍ଷା ଓ ସାରସ୍ୱତ ସାଧନାର ଦୀର୍ଘ ଚଲାପଥରେ ଯେଉଁମାନଙ୍କର ଶୁଭଦାନ ମୋ ପ୍ରଜ୍ଞା ଓ ରୁଚିବୋଧକୁ ପରିପୁଷ୍ଟ କରିଛି, ଯେଉଁମାନଙ୍କର ସାମାନ୍ୟ ସଂସର୍ଗ ମୋ ଲାଗି ପ୍ରେରଣାର ଉତ୍ସ, ସେମାନେ ସମୟର ଆଢ଼ୁଆଳେର ଯେଉଁଠି ଥାଆନ୍ତୁ ପଛକେ, ସେହି ଶୁଭେଚ୍ଛୁ ବୃନ୍ଦ—

ସ୍ୱର୍ଗତ ଗୋଦାବରୀଶ ମହାପାତ୍ର, ଲିଙ୍ଗରାଜ ପାଣିଗ୍ରାହୀ, ହରେକୃଷ୍ଣ ଦାସ, ସର୍ବଶ୍ରୀ ଭି. ଭି. ଗିରି, ବିଶ୍ୱନାଥ ଦାସ, ଅଯୋଧ୍ୟାନାଥ ଖୋସଲା, ଅବଧବିହାରୀ ଲାଲ, ରାଧାନାଥ ରଥ (ସମାଜ), ରାଧାନାଥ ରଥ (ମାଣ୍ଡୁକ୍ୟ), ଉଦୟନାଥ ଷଡ଼ଙ୍ଗୀ, ବିଶ୍ୱାନନ୍ଦ କର, ରାମକୃଷ୍ଣ ନନ୍ଦ, ଚିନ୍ତାମଣି ମିଶ୍ର, ଚିନ୍ତାମଣି ଦାଶ, ଶ୍ରୀରାମଚନ୍ଦ୍ର ଦାଶ, ଗୌରୀକୁମାର ବ୍ରହ୍ମା, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ବେଣୀ ମାଧବ ପାଢ଼ୀ, ସୀତାରାମ ମହାପାତ୍ର, ସୁଦର୍ଶନ ଆଚାର୍ଯ୍ୟ, ହରେନ୍ଦ୍ରକୁମାର ସାହୁ, ହିମାଂଶୁଶେଖର ପାଢ଼ୀ, ପ୍ରବୋଧକୁମାର ମିଶ୍ର, ମୁରଲୀଧର ମଲ୍ଲିକ, ରଘୁନାଥ ରାମାନୁଜ ଦାସ, ଭଗୀରଥୀ ପୁରୋହିତ, ପୂର୍ଣ୍ଣଚନ୍ଦ୍ର ପଣ୍ଡା, ରଘୁନନ୍ଦନ ପାଣିଗ୍ରାହୀ, କାଳା କୃତ୍ତିବାସ, କିଶୋରଚନ୍ଦ୍ର ମିଶ୍ର ଓ ପ୍ରତାପଚନ୍ଦ୍ର ପାଣ୍ଡଙ୍କୁ—

ଏହି ଅବସରରେ ମୋ ସର୍ଜନାର ଅର୍ଘ୍ୟଫଳ ଅର୍ପଣ କରୁଛି ।

# ବିଷୟ ସୂଚୀ

---

# ପ୍ରମାଦ-ସୂଚୀ

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୬ | ୧୦ | actuaily | actually |
| ୧୩ | ୧୬ | ସିନ୍ଧୁ ଓ ସଭ୍ୟତା | ସିନ୍ଧୁ-ସଭ୍ୟତା |
| ୨୧ | ୪ | ଧର୍ମଭିରୁତା | ଧର୍ମଭୀରୁତା |
| ୩୨ | ୧୯ | ମନୀମଷୀନଙ୍କୁ | ମନୀଷୀମାନଙ୍କୁ |
| ୪୨ | ୧୮ | ଅଧ୍ୟଯାଙ୍କି କ | ଅଧ୍ୟାଙ୍କି କ |
| ୭୨ | ୨୦ | କ୍ରମାବସ୍ଥାନ | କ୍ରମାବସାନ |
| ୭୭ | ୩ | Successfuley | Successfully |
| ୮୩ | ୧୧ | ନାଗାବଂଶ | ନାଗବଂଶ |
| ୧୦୪ | ୨୩ | ନାଗର ଭକ୍ତ | ନାଗଭକ୍ତ |
| ୧୦୯ | ୧୩ | କହ୍ଲଣଙ୍କର | କହ୍ଲଣଙ୍କର |
| ,, | ୧୪ | ବହ୍ଲଣଙ୍କର | ବହ୍ଲଣଙ୍କର |
| ୧୧୧ | ୨୪ | ନଯ୍ୟନମାର୍ | ନଯ୍ୟନମାର୍ |
| ୧୨୩ | ୧୨ | ୧୩୨୩ | ୧୩୨୯ |
| ୧୪୦ | ୧୧ | culturae | culture |
| ୧୪୪ | ୨୪ | ସଙ୍କୁଚନକୁ | ସଙ୍କୋଚନକୁ |
| ୧୫୪ | ୮ | ସମଜିଦ୍ | ମସ୍‌ଜିଦ୍ |
| ୧୮୭ | ୮ | ଚୈତିମୂକ | ଚୈତିମୂକ |
| ୧୯୫ | ୧୮ | ୭୦୦ ଠାରୁ | ୭୦୦୦ ଠାରୁ |
| ୨୦୨ | ୧୦ | ୧୨୨୯ | ୧୬୨୯ |
| ୨୦୫ | ୧୩ | ବୈଦ୍ୟଲଖଣ୍ଡ | ବୈଦ୍ୟଲଖଣ୍ଡ |
| ୨୧୧ | ୨ | ଅଦ୍ଦଗନ୍ଥ | ଆଦ୍ଦଗନ୍ଥ |
| ୨୧୪ | ୨୩ | କୁସ୍ତାଳ | କୁଷ୍ଟାଳ |
| ୨୩୩ | (ଅନ୍ତ୍ୟ ପ୍ରସ୍ଥ ଶେଷଧାଡ଼ି) | କାଢ଼ନ୍ତୁ | କାଢନ୍ତୁ |

# ଗ୍ରନ୍ଥ-ସୂଚୀ

Dr. R. K. Mookerjee — Hindu Civilization (Part—I & II)
Margaret E. Noble — Footfalls of Indian History.
A. A. Macdonell — India's Past.
Sri J. N. Sirkar — India Through the Ages.
Prof. A. L. Basham — The Wonder that was India.
Prof. D. S. Sharma — Hinduism through the Ages.
Pt. Jawaharlal Nehru — The Discovery of India.
H. V. R. Iengar — Administration in India.
Dr. Beni Prasad — The State in Ancient India.
Dr. Tarachand — Society and State in the Mughal Period.
Edwardes & Garret — Moghul Rule in India.
Prof. A. L. Shrivastava — The Sultanate of Delhi.
Dr. Majumdar, Raychoudhury & Dutta — The Advanced History of India.
K. M. Munshi & R. R. Diwakar — Pageant of Great Lives (S-I)
Prof. L. Mukherjee — History of India (Medieval Period)
Dr. Albert Schweitzer — Indian thought and its development.
Dr. S. Radhakrishnan — The Indian Philosophy.
Farquhar — An out line of the Religious Literature of India.
Dr. V. A. Smith — The Oxford History of India & History of Fine Art in India and Ceylon.
ଶ୍ରୀ ସୁରେନ୍ଦ୍ର ମହାନ୍ତି — ଓଡ଼ିଆ ସାହିତ୍ୟର ମଧ୍ୟପର୍ବ

———

# ଚିତ୍ର ସୂଚୀ

# ଉପୋଦ୍‌ଘାତ

ଆମର ଏହି ପୃଥିବୀ ଦିନେ ଅନ୍ୟାନ୍ୟ ଗ୍ରହ ଉପଗ୍ରହ ଭଳି ଏକ ଜ୍ୱଳନ୍ତ ଦୀପ୍ତିମାନ ପଦାର୍ଥ ଥିଲା । କାଳକ୍ରମେ ଜଡ଼ ଜଗତ, କୀଟପତଙ୍ଗ, ପଶୁପକ୍ଷୀ ପ୍ରଭୃତି ଜୀବଜଗତ ସୃଷ୍ଟି ହେଲାପରେ ଶେଷରେ ଏଠାରେ ମାନବ ଜାତିର ଅଭ୍ୟୁଦୟ ଘଟିଲା । ପୃଥିବୀର ଆଦ୍ୟାବସ୍ଥାରେ ଭାରତବର୍ଷ ବୋଲି କୌଣସି ସୀମାରେଖାଙ୍କିତ ଭୂଖଣ୍ଡର ସ୍ଥିତି ଆଦୌ ସମ୍ଭବପର ନୁହେଁ । ଅତଏବ ଭାରତବର୍ଷ ଏକ ଦିନ ବା ବର୍ଷର ସୃଷ୍ଟି ମଧ୍ୟ ନୁହେଁ । ଯୁଗ ଯୁଗ ଧରି ଭୂତାତ୍ତ୍ୱିକ ବିବର୍ତ୍ତନ ଓ ବିବର୍ଦ୍ଧନର କ୍ରମପରିଣାମରେ ହିଁ ଏହାର ସୃଷ୍ଟି । ଯେଉଁ ପ୍ରାକୃତିକ ପ୍ରକ୍ରିୟାରେ ହିମାଳୟ, ଚିତ୍ରକୂଟ, ମହେନ୍ଦ୍ରଗିରି, ଗଙ୍ଗା, ଗୋଦାବରୀ, କୃଷ୍ଣା, କାବେରୀ ପ୍ରଭୃତି ଗିରିନଦୀର ସୃଷ୍ଟି ଘଟିଛି, ସେହି ନିୟମରେ ଏହି ଭାରତବର୍ଷର ଅଭ୍ୟୁତ୍‌ଥାନ ସମ୍ଭବ ହୋଇଛି ଏବଂ ସେହି ଭୌଗୋଳିକ ଭାରତ ସୃଷ୍ଟି ହେବାର କିଛିକାଳ ପରେ ତାର ପ୍ରଭାବରେ ସେଠାରେ ମାନବଜାତିର ଅଭ୍ୟୁଦୟ ଘଟିଛି ।

ଏସିଆ ମହାଦେଶ ଅନ୍ତର୍ଗତ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ବିସ୍ତୃତ ବିଶାଳ ଭୂଖଣ୍ଡ ଭାରତ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ର ରୂପେ ମୁଣ୍ଡ ଟେକିଥିଲେ ସୁଦ୍ଧା ଯୁଗେ ଯୁଗେ ତାର ପ୍ରାଧାନ୍ୟ ଅକ୍ଷୁର୍ଣ୍ଣ ରଖି ଆସିଛି । ପ୍ରାଚୀନ ଭୌଗୋଳିକମାନେ 'ଚତୁଃସଂସ୍ଥାନ ସଂସ୍ଥିତମ୍'

ଭାରତର ସୀମାରେଖା ନିର୍ଦ୍ଧାରଣ କରିସାରିଛନ୍ତି । ଏହାର ପୂର୍ବ, ପଶ୍ଚିମ ଓ ଦକ୍ଷିଣରେ ସାଗରର ଅଗାଧ ବାରିରାଶି ଏବଂ ଉତ୍ତରରେ ଉତ୍ତୁଙ୍ଗ ହିମାଚଳ ଚିରଦଣ୍ଡାୟମାନ । ଏହି ଭୂଖଣ୍ଡ ପୁରାଣ ଯୁଗରେ ଜମ୍ବୁଦ୍ୱୀପ ନାମରେ କଥିତଥିଲା । ବୌଦ୍ଧିକ ସୂତ୍ରରୁ ପ୍ରମାଣ ମିଳେ ଯେ, ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ତାହା ସେହି ନାମରେ ପରିଚିତ ଥିଲା ଏବଂ ବିଶେଷତଃ ସାତୋଟି ବୃହତ୍ ଦ୍ୱୀପକୁ ତାହା ବୁଝାଉଥିଲା । ପ୍ରାଚୀନ ପର୍ଶିଆନ୍ ଶିଳାଲେଖରେ ଏହା 'ସପ୍ତସିନ୍ଧବଃ' ନାମରେ ଅଭିହିତ ହୋଇଥିବା ଜଣାଯାଏ ଏବଂ ତାହାର ଅପଭ୍ରଂଶ ଶବ୍ଦ 'ହପ୍ତହିନ୍ଦୁ'ରୁ 'ହିନ୍ଦୁ' ତଥା 'ହିନ୍ଦୁସ୍ଥାନ'ର ଉତ୍ପତ୍ତି ହେଲାବୋଲି ଧରାଯାଏ । ତେବେ, ପୁରାଣଯୁଗୀୟ ଆଦର୍ଶ ଦମ୍ପତି ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କର ବୀର ସନ୍ତାନ ତଥା ସୁଶାସକ ଭରତଙ୍କର ନାମାନୁସାରେ ଏହି ଭୂଖଣ୍ଡର ନାମ 'ଭାରତବର୍ଷ' ରଖାଯାଇଛି । ବିଷ୍ଣୁ ପୁରାଣରେ ମଧ୍ୟ ଉଲ୍ଲେଖ ଅଛି —

"ଉତ୍ତରଂଯତ୍ ସମୁଦ୍ରସ୍ୟ
ହିମାଦ୍ରେଶ୍ଚୈବ ଦକ୍ଷିଣମ୍
ବର୍ଷମ୍ ତଦ୍ ଭାରତମ୍ ନାମ
ଭାରତି ଯତ୍ର ସନ୍ତତିଃ ।"

ଅର୍ଥାତ୍, ସମୁଦ୍ରଠାରୁ ଉତ୍ତରରେ ଏବଂ ହିମାଦ୍ରିଠାରୁ ଦକ୍ଷିଣରେ ଭାରତବର୍ଷ ଅବସ୍ଥିତ । ସେଠାରେ ଭରତଙ୍କର ବଂଶଧରମାନେ ବାସ କରନ୍ତି ।

ଏହି ଉପମହାଦେଶ ଭାରତବର୍ଷ କେବଳ ଆଜି ନୁହେଁ, ଯୁଗେ ଯୁଗେ ତାର ଅସଂଖ୍ୟ ସନ୍ତାନଙ୍କର ବାସସ୍ଥାନ ରୂପେ ଅନ୍ୟାନ୍ୟ ଦେଶ ତୁଳନାରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରି ବସିଛି । ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ଗ୍ରୀକ୍ ଐତିହାସିକ ହିରୋଡ଼ୋଟାସ ଲେଖିଥିଲେ, "ଆମେ ଯେତେ ଦେଶ ବିଷୟରେ ଜାଣୁ ତନ୍ମଧ୍ୟରେ ଭାରତର ଜନସଂଖ୍ୟା ସର୍ବାଧିକ ।"

ଏହି ବୃହତ୍ ଉପମହାଦେଶକୁ ଭୌଗୋଳିକ ଦୃଷ୍ଟିକୋଣରୁ ମୁଖ୍ୟତଃ ଚାରି ଭାଗରେ ବିଭକ୍ତ କରାଯାଏ ।

୧ – ଉତ୍ତରାଞ୍ଚଳର ପାର୍ବତ୍ୟ ଶ୍ରେଣୀ । (କାଶ୍ମୀର, ନେପାଳ, ଭୁଟାନ, ସିକିମ ପ୍ରଭୃତି ଅଞ୍ଚଳକୁ ବିସ୍ତାରିତ ହିମାଳୟ ପର୍ବତ ଏହାର ଅନ୍ତର୍ଗତ ।)

୨ – ଉତ୍ତରାଞ୍ଚଳର ସମତଳ ଅଞ୍ଚଳ । (ସିନ୍ଧୁ ଉପତ୍ୟକା, ରାଜସ୍ଥାନର ମାଳଭୂମି ଓ ଗଙ୍ଗା ଉପତ୍ୟକାର ଉର୍ବର ସମତଳ ଅଞ୍ଚଳ ଏହାର ଅନ୍ତର୍ଗତ ।)

୩ – ମଧ୍ୟଭାରତର ମାଳଭୂମି । (ଗଙ୍ଗା ଉପତ୍ୟକାଠାରୁ ଦକ୍ଷିଣ ବିନ୍ଧ୍ୟାଚଳ ତଥା ମହେନ୍ଦ୍ରଗିରି ପର୍ଯ୍ୟନ୍ତ ଅଞ୍ଚଳ ଏହାର ଅନ୍ତର୍ଗତ ।)

୪ – ଦକ୍ଷିଣ ଭାରତର ବେଳାଭୂମି । (ଗୋଦାବରୀ, କୃଷ୍ଣା, କାବେରୀ ନଦୀର ଉପକୂଳବର୍ତ୍ତୀ ଉର୍ବର ସମତଳ ଅଞ୍ଚଳ ଏହାର ଅନ୍ତର୍ଗତ ।)

କିନ୍ତୁ ପ୍ରାଚୀନ ସାହିତ୍ୟରେ ଏହି ବିଭକ୍ତିକରଣ ଦେଖିବାକୁ ମିଳେନାହିଁ । ପ୍ରାଚୀନ ଭାରତର ପଣ୍ଡିତମାନେ ଭାରତକୁ ପାଞ୍ଚଭାଗରେ ବିଭକ୍ତ କରିଥିଲେ, ଯଥା:—(୧) ମଧ୍ୟ ଦେଶ, (୨) ପୂର୍ବଦେଶ, (୩) ଦକ୍ଷିଣାପଥ, (୪) ଉତ୍ତରାପଥ, ଓ (୫ ଅପରାନ୍ତ ବା ପଶ୍ଚିମାଞ୍ଚଳ । ଏହା ସାଙ୍ଗକୁ କେତେକ ପୁରାତନ ଗ୍ରନ୍ଥରେ ହିମାଳୟ ଅଞ୍ଚଳର ପାର୍ବତ୍ୟଭୂମି ଓ ବିନ୍ଧ୍ୟାଚଳ ଯୋଗ କରାଯାଇ ସମଗ୍ର ଭାରତକୁ ସାତଭାଗରେ ବିଭକ୍ତ କରାଯାଇଥିବା ଦୃଷ୍ଟି ଗୋଚର ହୁଏ ।

ଅନ୍ୟାନ୍ୟ ଦେଶମାନଙ୍କ ଭଳି ଭାରତର ଇତିହାସ ମଧ୍ୟ ତାର ଭୂଗୋଳ ଦ୍ୱାରା ନିୟନ୍ତ୍ରିତ ହୋଇଛି । ନଗର ନିର୍ମାଣ, ରାଜ୍ୟଗଠନ, ସୀମା ନିର୍ଦ୍ଧାରଣ, ବହିରାକ୍ରମଣ ଇତ୍ୟାଦି ଐତିହାସିକ କ୍ରମବିକାଶ ପଥରେ ଭୌଗୋଳିକ ପ୍ରଭାବ ନ୍ୟୂନ ବୋଲି ଧରାଯାଇ ପାରେନା । ବସ୍ତୁତ ସାଗର ଓ ସମୁଚ୍ଚ ଗିରିଶ୍ରେଣୀ କେବଳ ବିଜୟ ଓ ଆକ୍ରମଣର ଦ୍ୱାରଦେଶ ନୁହେଁ, ତାହା ଏ ଦେଶର ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ବଜାୟ ରଖିବା ଦିଗରେ ମଧ୍ୟ ପ୍ରଧାନ ସହାୟକ । ସେହିପରି ବିଭିନ୍ନ ନଦୀ, ଗିରି, ହ୍ରଦ ଓ ବନାନୀଦ୍ୱାରା ଏ ଦେଶର ଆର୍ଥିକ ଓ ସାମାଜିକ ଜୀବନ ଗଭୀର ଭାବେ ପ୍ରଭାବିତ ହେବା ସ୍ୱାଭାବିକ । ଲର୍ଡ୍ ହେକ୍‌ଲୁଇଟ୍‌ଙ୍କ ଭାଷାରେ, "ଭୂଗୋଳ ଓ କାଳକ୍ରମ ଇତିହାସର ଚନ୍ଦ୍ର ଓ ସୂର୍ଯ୍ୟ ତଥା ଦକ୍ଷିଣ ଓ ବାମ ଚକ୍ଷୁ ସଦୃଶ ।"

ଭୌଗୋଳିକ ବିବର୍ତ୍ତନ ଓ ବିବର୍ଦ୍ଧନ ଫଳରେ କିଭଳି ଇତିହାସର ସୃଷ୍ଟି ହୁଏ ତାହା ବୁଝାଇବାକୁ ଯାଇ ଥମସନ୍ ଓ ଗେଡ୍‌ସ୍ ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ମତ ଉଦ୍ଧାର କରି ଉଲ୍ଲେଖ କରିଛନ୍ତି—

"The importance of the Himalayas to human history cannot be overstated. The growth of Man is itself traced to that momentous geological formation. Barell first suggested that Man and the Himalayas arose simultaneously, towards the end of the Miocene Period, over a million years ago. According to Sir Aurthor Smith Woodward, 'as the land rose, the

temperature would be lowered and some of the apes which had previously lived in the warm forest would be trapped to the north of the raised area'. 'As the forests shrank and gave place to the plains, the ancestors of Man had to face living on the ground. If they had remained arboreal or semi-arboreal like the apes, there might never have been men'. *

ଏହାର ସାରମର୍ମ ହେଲ—ମାନବ ଇତିହାସକୁ ହିମାଳୟର ଦାନ ଅତୁଳନୀୟ । ସେହି ଭୂତାତ୍ତ୍ୱିକ ଉତ୍ପତ୍ତି ଫଳରେ ହିଁ ମାନବଜାତିର ବିକାଶ ସମ୍ଭବ ହୋଇପାରିଛି । ବାରେଲଙ୍କର ମତାନୁସାରେ ଲକ୍ଷଲକ୍ଷ ବର୍ଷ ପୂର୍ବେ ହିମାଳୟ ଓ ମନୁଷ୍ୟ ଜାତିର ଏକକାଳୀନ ଆବିର୍ଭାବ ହୋଇଥିଲା । ସାର୍ ଆର୍ଥର ସ୍ମିଥ୍ ଉଡ୍‌ଉଆର୍ଡ଼ଙ୍କ ମତରେ 'ଭୂପୃଷ୍ଠର ଅଭ୍ୟୁତ୍‌ଥାନ ଫଳରେ ଉତ୍ତାପ ହ୍ରାସ ଘଟିଥିବ ଏବଂ ତାର ପ୍ରଭାବରେ କେତେକ ବଣମନୁଷ୍ୟ ଉଷ୍ଣବନରୁ ଅଭ୍ୟୁତ୍ଥିତ ଅଞ୍ଚଳର ଉତ୍ତର ଦିଗକୁ ଚାଲିଯାଇଥିବେ । କ୍ରମେ ବନ ସଙ୍କୁଚିତ ହୋଇଗିବା ଫଳରେ ମନୁଷ୍ୟ ଜାତିର ପୂର୍ବପୁରୁଷମାନେ ସମତଳ ଅଞ୍ଚଳରେ ବଞ୍ଚିରହିବା ଶିଖିଥିବେ । ସେମାନେ ଯଦି ସବୁଦିନ ଲାଗି ଜଙ୍ଗଲି ଜୀବନ ଯାପନ କରିଥାନ୍ତେ, ତେବେ ମନୁଷ୍ୟ କସ୍ମିନ କାଳେ ଦେଖିବାକୁ ମିଳି ନ ଥାନ୍ତା ।'

ଭାରତର ଇତିହାସ ଓ ଭୂଗୋଳର ସମ୍ପର୍କ ସମ୍ବନ୍ଧରେ ଡ଼କ୍ଟର୍ ରାଧାକୁମୁଦ ମୁର୍ଖାର୍ଜି ମତପ୍ରକାଶ କରିବାକୁ ଯାଇ ପାଞ୍ଚୋଟି ଉପାଦାନ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ତାହା ହେଉଛି – ବିଚ୍ଛିନ୍ନତା, ସଂସର୍ଗତା, ବିଶାଳତା, ବିଭିନ୍ନତା ଓ ଅଭିନ୍ନତା । ବିଚ୍ଛିନ୍ନତା ବିଷୟ ଉଲ୍ଲେଖ କରିବାକୁ ଗଲେ, ଭାରତର ପ୍ରାକୃତିକ ସୀମାରେଖାଦ୍ୱାରା ସେ କପରି ପୃଥିବୀର ଅନ୍ୟାନ୍ୟ ଦେଶଠାରୁ ବିଚ୍ଛିନ୍ନ ଏବଂ ତାହା କଭଳି ଏକ ଭୌଗୋଳିକ ଏକକ ରୂପେ ବିଦ୍ୟମାନ ତାହା ଦ୍ରଷ୍ଟବ୍ୟ । ଭାରତ ଏକ ଭୌଗୋଳିକ ଏକକ ରୂପେ ଅନ୍ୟାନ୍ୟ ଦେଶଠାରୁ ବିଚ୍ଛିନ୍ନ ହେଲେ ମଧ୍ୟ ବହୁ ପୂର୍ବକାଳରୁ ଅନ୍ୟାନ୍ୟ ଦେଶ ସହିତ ତାର ସାଂସ୍କୃତିକ ଓ ବାଣିଜ୍ୟିକ ସମ୍ପର୍କ ସ୍ଥାପିତ ହୋଇଅଛି । ଏହା ବ୍ୟତୀତ, ସେ

---

* ଥମସନ୍ ଓ ଗେଡ଼୍‌ସ୍‌ଙ୍କର "Outlines of General Biology" ପୁସ୍ତକ ଦ୍ରଷ୍ଟବ୍ୟ ।

ବହୁ ବିଦେଶୀ ଶକ୍ତିଙ୍କର ଦୃଷ୍ଟି ଆକର୍ଷଣ କରି ସେମାନଙ୍କର ଅଭିଷ୍ଟ ସ୍ଥଳ ମଧ୍ୟ ବନିଯାଇଛି । ଏଣୁ ସେ ସ୍ୱର୍ଗଠାରୁ ସ୍ୱଳ୍ପ ନୁହେଁ । ତାର ବିଶାଳତା ବର୍ଣ୍ଣନା କରିବା ବାହୁଲ୍ୟ ମାତ୍ର, କାରଣ ଆୟତନ ଦୃଷ୍ଟିରୁ ତାହା ରୁଷିଆ ବ୍ୟତୀତ ସମଗ୍ର ୟୁରୋପ ମହାଦେଶ ସଙ୍ଗେ ସମାନ ଏବଂ ତାର ଜନସଂଖ୍ୟା ପୃଥିବୀର ପ୍ରାୟ ଏକ ସପ୍ତମାଂଶ । ଭାଷା, ଧର୍ମ, ସାମାଜିକ ପ୍ରଥା, ବିଭିନ୍ନ ରୀତି ଓ ଚଳଣି ଦୃଷ୍ଟିରୁ ଭାରତ ଏକ ସଂଗ୍ରହାଳୟ ସଙ୍ଗେ ତୁଳନୀୟ । ପୁଣି, ଭୌଗୋଳିକ ଦୃଷ୍ଟିରୁ ଏଠାରେ ଦେଖିବାକୁ ମିଳେ ଉର୍ବର ଭୂମି, ମାଳଭୂମି, ମରୁଭୂମି, ଅନାବୃଷ୍ଟି ଅଞ୍ଚଳ, ବହୁବୃଷ୍ଟି ଅଞ୍ଚଳ, ନଦୀ, ସାଗର, ଗିରି, ହ୍ରଦାଦିର ବହୁଳତା । ସର୍ବୋପରି ଆୟତନ ଓ ଜନସଂଖ୍ୟା ଦୃଷ୍ଟିରୁ ଭାରତ ସୁବୃହତ ହେଲେ ମଧ୍ୟ ଏବଂ ଏହା ବିଭିନ୍ନ ଜାତି, ବର୍ଣ୍ଣ ଓ ଧର୍ମାବଲମ୍ବୀମାନଙ୍କର 'ଚିଡ଼ିଆ-ଖାନା' ନାମରେ ଅଭିହିତ ହେଲେ ସୁଦ୍ଧା ଆଦିମ ଯୁଗରୁ ଏଠାରେ ବିଭିନ୍ନତା ମଧ୍ୟରେ ଅଭିନ୍ନତାର ପରିପ୍ରକାଶ ସୁସ୍ପଷ୍ଟ ।

ଆମର ପ୍ରାଚୀନ କବି ଓ ମନୀଷୀମାନେ ହିମାଚଳ ଠାରୁ କୁମାରିକା ପର୍ଯ୍ୟନ୍ତ ସୁବିସ୍ତୃତ ପବିତ୍ର ଭୂଖଣ୍ଡକୁ ଏକ ଅଖଣ୍ଡ ଦେଶ ରୂପେ ଗ୍ରହଣ କରି ଆସିଥିବା ବିଷୟ ବିଭିନ୍ନ ପୁରାଣ ଓ କାବ୍ୟରୁ ସ୍ପଷ୍ଟ ପ୍ରମାଣିତ ହୁଏ । ପାଶ୍ଚାତ୍ୟ ଜଗତରେ ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କର ଆବିର୍ଭାବ ପରଠାରୁ ଏହି ବିଶାଳ ଭୂଖଣ୍ଡରେ ଶ୍ରୁତି ଓ ପ୍ରାକୃତ ଭାଷା ମାଧ୍ୟମରେ ସଂହତି ରକ୍ଷା ହୋଇପାରିଥିଲା ଏବଂ ପରେ ସଂସ୍କୃତ ଭାଷା ଗ୍ରାମ ଓ ପ୍ରାନ୍ତ ପର୍ଯ୍ୟନ୍ତ ସମଗ୍ର ଭାରତର ଅଧିବାସୀମାନଙ୍କୁ ଏକତା ସୂତ୍ରରେ ଆବଦ୍ଧ କରି ରଖିଥିଲା । ଏବେ ମଧ୍ୟ ଚତୁର୍ଧାମର ଆକର୍ଷଣ, ଦେଶର ସର୍ବତ୍ର କେତେକ ପର୍ବପର୍ବାଣିର ସାମୂହିକ ପାଳନ, ସାମାଜିକ କ୍ଷେତ୍ରରେ ନାନା ବୈଦିକ ଓ ପାରଂପରିକ ପ୍ରଥାର ସାର୍ବଜନୀନ ପ୍ରଚଳନ ଫଳରେ ଦେଶରେ ଐକ୍ୟମନୋଭାବ ବହୁଗୁଣରେ ସଂଜୀବିତ ହୋଇ ରହିଛି । ବିଜ୍ଞାନର ବିକାଶ ଫଳରେ ଯାନବାହାନ ସଂଯୋଗ ତଥା ରେଳରାସ୍ତାର ପ୍ରସାରଦ୍ୱାରା ଆକୁମାରୀହିମାଳୟ ଏକ ଗ୍ରନ୍ଥିରେ ଖଚିତ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କାଳର କରାଳ ସ୍ରୋତରେ ଏଠାରେ ନାନା ଐତିହାସିକ ପରିବର୍ତ୍ତନ ସଂଘଟିତ ହୋଇ ଯାଇଛି । ତଥାପି ଅଦ୍ୟାବଧି ଭାରତର ପାରଂପରିକ ଉତ୍କର୍ଷ ଓ ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ଅକ୍ଷୁର୍ଣ୍ଣ ରହିଛି ଏବଂ ଆଜି ମଧ୍ୟ ସେ ତାର ଆଧ୍ୟାତ୍ମିକ ଓ ସାତ୍ତ୍ୱିକ ଗୁଣ ତଥା ଶାନ୍ତି ଓ ନିରପେକ୍ଷ ନୀତି ଲାଗି ଆନ୍ତର୍ଜାତୀୟ ମହଲରେ ଅଖଣ୍ଡ ଗର୍ବ ଓ ଗୌରବର ଅଧିକାରୀ ହୋଇପାରିଛି ।

ତେବେ, ବର୍ତ୍ତମାନ ଭାରତବର୍ଷ ଏକ ସମସ୍ୟା ରୂପେ ଦଣ୍ଡାୟମାନ । ଏଠାରେ ଆଜି ନାନା ପ୍ରକାର ନୈତିକ, ସାମାଜିକ, ରାଜନୈତିକ, ଅର୍ଥନୈତିକ ସମସ୍ୟା ମୁଣ୍ଡଟେକିଛି ଏବଂ ସମଗ୍ର ଭାରତର ସାଧାରଣ ସରଳ ଜୀବନ ବ୍ୟାହତ ହୋଇଛି । ଏଣୁ ବର୍ତ୍ତମାନ ପରିସ୍ଥିତିରେ ତାର ଅତୀତକୁ ସ୍ମରଣ କରି ଭବିଷ୍ୟତ ପ୍ରଶ୍ନ ବିଚାର କରିବାର ବେଳ ଆସିଯାଇଛି । ଭଗିନୀ ନିବେଦିତାଙ୍କ ଭାଷାରେ ପ୍ରକାଶ କରିବାକୁ ଗଲେ—

"India, as she is, is a problem which can only be read by the light of Indian history. Only by a gradual and loving study of how she came to be, can we grow to understand what the country actually is, what the intention of her evolution, and what her sleeping potentiality may be."*

ଅର୍ଥାତ୍, ଭାରତ ବର୍ତ୍ତମାନ ଯେଉଁଭଳି ଅଛି, ଏକ ସମସ୍ୟା ହୋଇ ରହିଛି, ତାହା କେବଳ ଭାରତୀୟ ଇତିହାସର ଆଲୋକରେ ହିଁ ଅନୁଧ୍ୟାନ କରାଯାଇ ପାରିବ । ଏ ଦେଶ ପ୍ରକୃତରେ କ'ଣ, ତାର କ୍ରମବିକାଶର ଉଦ୍ଦେଶ୍ୟ କଣ ଏବଂ ତାର ସୁପ୍ତ ସମ୍ଭାବ୍ୟ ଶକ୍ତି କଣ ଅଛି, ତାହା କେବଳ ତାର ଆବିର୍ଭାବ ସମ୍ପର୍କୀୟ ଏକ କ୍ରମାନ୍ୱିତ ସରସ ଅନୁଧ୍ୟାନଦ୍ୱାରା ହିଁ ଆମେ ବୁଝିବାକୁ ସମର୍ଥ ହୋଇପାରିବା ।

ସୁତରାଂ, ପରିସ୍ଥିତିର ପର୍ଯ୍ୟାଲୋଚନା ନିମିତ୍ତ ପ୍ରାଗୈତିହାସିକ ଯୁଗରୁ ଆରମ୍ଭ କରି ଅତ୍ୟାଧୁନିକ ଯୁଗ ପର୍ଯ୍ୟନ୍ତ ଭାରତୀୟ ସଭ୍ୟତା, ସଂସ୍କୃତି ଏବଂ ନୈତିକ, ରାଜନୈତିକ, ସାମାଜିକ ଓ ଐତିହାସିକ କ୍ରମବିକାଶଧାରାର ବିଚାର-ଆଲୋଚନା ଆବଶ୍ୟକ । ଏହି ଦୃଷ୍ଟିରୁ ପରବର୍ତ୍ତୀ ପୃଷ୍ଠାଗୁଡ଼ିକରେ କେବଳ ନିଛକ ଐତିହାସିକ ଘଟଣାବଳୀର ବର୍ଣ୍ଣନା କରାନଯାଇ, ଯୁଗେ ଯୁଗେ ଭାରତୀୟ ଜୀବନ ଓ ସମାଜ କିଭଳି ସମସାମୟିକ ଧର୍ମ, ଦର୍ଶନ, ସାହିତ୍ୟ ଓ ସଂସ୍କୃତି ସମନ୍ୱିତ ପରିବେଷ୍ଟନୀ ମଧ୍ୟ ଦେଇ ଗତି କରି ଆସିଛି, ତାର ଏକ ସଂକ୍ଷିପ୍ତ ଚିତ୍ରଣ ଉପସ୍ଥାପନ କରାଯାଇଛି । ଆଜିର ଯୁବ-ସମାଜର ଗତିପଥ ନିୟନ୍ତ୍ରଣ କରିବାରେ ଏହାର ଭୂମିକା ନଗଣ୍ୟ ହୋଇନପାରେ, ଏହା ସର୍ବଜନ ସ୍ୱୀକାର୍ଯ୍ୟ ।

---

*(Footfalls of Indian history. (1956,) P. 6 ed

ଆମର ସୁଧୀସମାଜ ଏହା ମଧ୍ୟ ସ୍ୱୀକାର କରିବେ ଯେ କେତେକ ପାଶ୍ଚାତ୍ୟ ଐତିହାସିକ ଭାରତର ଇତିହାସକୁ ଯେଉଁଭଳି 'ପ୍ରାଚୀନ ଯୁଗ' (ବା ହିନ୍ଦୁଯୁଗ), 'ମଧ୍ୟ ଯୁଗ' (ବା ମୁସଲମାନ ଯୁଗ) ଓ 'ବ୍ରିଟିଶ ଯୁଗ' ଆଖ୍ୟା ଦେଇ ତିନି ଭାଗରେ ବିଭକ୍ତ କରିଛନ୍ତି, ସେଥିରେ କୌଣସି ଐତିହାସିକ ଗୁରୁତ୍ୱ ବା ଯଥାର୍ଥତା ନାହିଁ । ପଣ୍ଡିତ ନେହେରୁଙ୍କ ଭାଷାରେ—

"this division is neither intelligent nor correct; it is deceptive and gives a wrong perspective. It deals more with the superficial changes at the top than with the essential changes in the political, economic and cultural deveolpment of the Indian people." *

ଅର୍ଥାତ୍ ଏହି ବିଭାଜନ ବିଜ୍ଞ ନୁହଁ କି ନିର୍ଭୁଲ ନୁହଁ; ଏହା ଏକ ଭ୍ରାନ୍ତ ଓ ପ୍ରତାରିତ ଧାରଣା ଦେଉଛି । ଏହା ଭାରତୀୟ ଜନତାର ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ବିକାଶ ଉପରେ ବିଶେଷ ଗୁରୁତ୍ୱ ନଦେଇ କେବଳ ବାହ୍ୟ ପରିବର୍ତ୍ତନ ଉପରେ ପ୍ରାଧାନ୍ୟ ଆରୋପ କରୁଛି ।

ବାସ୍ତବିକ ଭାରତୀୟ ସାମାଜିକ ଜୀବନର ଧାରା, ସାଂସ୍କୃତିକ ପରଂପରା ଓ ଆଧ୍ୟାତ୍ମିକତାର ଉତ୍ସ ପବିତ୍ର ଗଙ୍ଗା ଓ ଗୋଦାବରୀର ସ୍ରୋତ ଭଳି ଅବାରିତ ଗତିରେ ଚିର ପ୍ରବାହଶୀଳ । କାଳର କୁଟିଳ ଗତିରେ ମୁସଲମାନମାନଙ୍କର ଆଧିପତ୍ୟ ବିସ୍ତାର ଭାରତର ଶାସନ କ୍ଷେତ୍ରରେ ସାମାନ୍ୟ ପରିବର୍ତ୍ତନ ଆଣିଥିଲେ ସୁଦ୍ଧା ଏବଂ ତଦ୍ୱାରା ଭାରତୀୟ ସାମାଜିକ ଜୀବନ ଓ ଚଳଣି କିଞ୍ଚିତ ପ୍ରଭାବିତ ହୋଇଥିଲେ ମଧ୍ୟ ତାହା ଭାରତୀୟମାନଙ୍କର ଆଭ୍ୟନ୍ତରୀଣ ସତ୍ତାକୁ ବିଶେଷ ମାତ୍ରାରେ ଆଲୋଡିତ କରିପାରି ନଥିଲା । ଭାରତୀୟ ସଂସ୍କୃତି ଓ ପରଂପରା ଅନ୍ତଃସଲିଳା ଫଲ୍‌ଗୁ ଭଳି ସ୍ୱଚ୍ଛଳ, ସ୍ନିଗ୍ଧ ଓ ଶାଶ୍ୱତ । ଅବଶ୍ୟ ଆମ ମାତୃଭୂମିରେ ବ୍ରିଟିଶମାନଙ୍କର ରାଜତ୍ୱ ଭାରତୀୟ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଜାତିର ଇତିହାସରେ ଭାରତ ପ୍ରଥମଥର ପାଇଁ ଯେତେବେଳେ ଏକ ବିଦେଶୀ ଶକ୍ତିର ଉପନିବେଶ ଭାବରେ

---

* Jawaharlal Nehru ଙ୍କର The Discovey of India (1960 ed.) P· 232 ଦ୍ରଷ୍ଟବ୍ୟ ।

ଶାସିତ ହେଲା । ଏହା ବ୍ୟତୀତ, ଇଂରେଜ ଶିକ୍ଷା ପ୍ରଣାଳୀ ଓ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ଭାରତୀୟ ସମାଜରେ କେତେକ ପରିବର୍ତ୍ତନ ଅନିବାର୍ଯ୍ୟ ହୋଇ ପଡ଼ିଲା । ଏହା ସତ୍ତ୍ୱେ ଭାରତ ତାର ମୌଳିକତା ହରାଇଛି ବୋଲି କୁହାଯାଇନପାରେ; ମହାବିକ୍ରମଶାଳୀ ବ୍ରିଟିଶ ସାମ୍ରାଜ୍ୟ ମଧ୍ଯ ଶାନ୍ତି ଓ ଅହିଂସା ମନ୍ତ୍ରସାଧନା ବଳରେ ପରାଭୂତ ହୋଇ ଏଠାରୁ ବିଦାୟ ନେବାକୁ ବାଧ୍ୟହେଲା ଓ ତା ଫଳରେ ସ୍ୱାଧୀନ ଭାରତ ଜନ୍ମ ଲାଭ କଲା । ଅବଶ୍ୟ ସ୍ୱାଧୀନୋତ୍ତର ଭାରତର ଅବସ୍ଥା ସ୍ୱତନ୍ତ୍ର ଭାବେ ବିଚାର୍ଯ୍ୟ ।

ଏହି ଦୃଷ୍ଟିରୁ ଆଲୋଚ୍ୟ ପୁସ୍ତକରେ ଜାତୀୟ ଜୀବନର ଇତିବୃତ୍ତକୁ ଇତିହାସ ରଚନା ପଦ୍ଧତିର ରୁଦ୍ଧ ପରିସୀମା ମଧ୍ୟରେ ଆବଦ୍ଧ ନକରି, ଐତିହାସିକ ପ୍ରବାହର ବିଭିନ୍ନ ସ୍ତରରେ ଭାରତୀୟ ଶାସନ, ସମାଜ, ସଭ୍ୟତା, ସଂସ୍କୃତି, ସାହିତ୍ୟ, ଧର୍ମ ଓ ଦର୍ଶନର କ୍ରମଧାରା କିପରି ଆତ୍ମପ୍ରକାଶ କରିଛି, ତା'ର ଏକ ସଂକ୍ଷିପ୍ତ ଓ ସାମୂହିକ ଆଲୋଚନା ପ୍ରଦତ୍ତ ହୋଇଛି । ପୁଣି, ପୁସ୍ତକଟିକୁ ଗ୍ରାହ୍ୟ ତଥା ଜିଜ୍ଞାସୁ ପାଠକମାନଙ୍କ ପକ୍ଷରେ ସହଜଲବ୍ଧ କରିବା ଉଦ୍ଦେଶ୍ୟରେ ଦୁଇ ଭାଗରେ ପରିବେଷଣ କରିବାର ଅଭିପ୍ରାୟ ରଖି ଏହି ପ୍ରଥମ ଭାଗରେ ପ୍ରାଗୈତିହାସିକ ଯୁଗରୁ ଆରମ୍ଭକରି ମୋଗଲ ଶାସନର ଅସ୍ତକାଳ ପର୍ଯ୍ୟନ୍ତ ବିଭିନ୍ନ ବିଷୟାବଳୀର ଅବତାରଣା କରାଯାଇଛି । ଏହାର ଉପାଦେୟତା ବିଜ୍ଞ ପାଠକବୃନ୍ଦ ହିଁ ବିଚାର କରିବେ ।

ଲେଖକ



ପ୍ରାଚୀନ ଭାରତ
କାବୁଲ
କାଶ୍ମୀର
ପୋରବେସ୍
ଇନ୍ଦ୍ରପ୍ରସ୍ଥ
ମଗଧ
ଅଙ୍ଗ
ଗୌଡ଼
ବଙ୍ଗ
ବିଦେହ
ପୁଣ୍ଡ୍ରବର୍ଦ୍ଧନ
ବରେନ୍ଦ୍ର
ଅବନ୍ତୀ
ଅନୂପ
କଚ୍ଛ
ସୁରାଷ୍ଟ୍ର
ବିଦର୍ଭ
ଉତ୍କଳ
କଳିଙ୍ଗ
ଗଞ୍ଜାମ
ଦକ୍ଷିଣାପଥ
ଗଙ୍ଗବାଡ଼
ପାଣ୍ଡ୍ୟ
ତାମ୍ରପର୍ଣ୍ଣୀ
ସିଂହଳ
ସୁବର୍ଣ୍ଣଭୂମି
ପଶ୍ଚିମପୟୋଧି
ପୂର୍ବସାଗର
ଦ କ୍ଷି ଣ ଜ ଳ ନି ଧି

# ପ୍ରଥମ ପର୍ଯ୍ୟାୟ
# ପ୍ରାଗୈତିହାସିକ ଯୁଗ

କୌଣସି ଦେଶ ବା ଜାତିର ଅତୀତ ଘଟଣାବଳୀର କାଳାନୁକ୍ରମିକ ଅଭିଲେଖ ହିଁ ଇତିହାସ । ତାହା ମାନବର କୃତିତ୍ୱ କାହାଣୀର ଅମର ଆଲେଖ୍ୟ । ଇତିହାସ ହିଁ ଦେଶ ବା ଜାତିର ଅତୀତ ଗର୍ବ, ଗୌରବ ଓ ବିଭବର ଏକମାତ୍ର ବଳିଷ୍ଠ ଓ ବିଶ୍ୱାସଯୋଗ୍ୟ ସାକ୍ଷ୍ୟ । ବର୍ତ୍ତମାନ ସହିତ ତାହାର କୌଣସି ସଂପର୍କ ନ ଥିଲେ ମଧ୍ୟ ଅତୀତକାଳୀନ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥାର ଦୃଷ୍ଟାନ୍ତ ଉପସ୍ଥାପିତ କରିବା ଦୃଷ୍ଟିରୁ ତାହା ବର୍ତ୍ତମାନର ସହାୟକ ତଥା ନିର୍ଦ୍ଦେଶକ । ତେବେ ଲିଖିତ ଘଟଣାବଳୀର ଅଭାବରେ ଇତିହାସପ୍ରଣୟନ ଅସମ୍ଭବ । ସୁତରାଂ ଲିପି ପ୍ରବର୍ତ୍ତନ ସମୟର ପୂର୍ବବର୍ତ୍ତୀ ଇତିହାସ ବିଷୟରେ ଅବହିତହେବା ସହଜସାଧ୍ୟ ନୁହେଁ । ଯେଉଁ ଯୁଗରେ ମାନବଜାତି ତାଙ୍କର ସମସାମୟିକ ଘଟଣାବଳୀ କୌଣସି ପ୍ରକାରେ ଲିପିବଦ୍ଧ କରି ଯାଇ ନାହାନ୍ତି, ସେହି ଯୁଗର ଇତିହାସ ଜାଣିବା ଆଦୌ ସମ୍ଭବପର ନୁହେଁ । ଏଥିଯୋଗୁଁ ଭାରତବର୍ଷର ସୃଷ୍ଟି ପ୍ରାରମ୍ଭ ତଥା ମାନବ ଜାତିର ଜନ୍ମ ଓ ବିଭିନ୍ନ ରାଜ୍ୟର ଅଭ୍ୟୁଦୟର କାଳାନୁକ୍ରମିକ ପ୍ରାମାଣିକ ତଥ୍ୟ ସଂଗ୍ରହ ଓ ନିର୍ଦ୍ଧାରଣ ଅସମ୍ଭବ । ଏଣୁ ଖ୍ରୀଷ୍ଟପୂର୍ବ ୬୦୦ ପୂର୍ବରୁ ଭାରତର କାଳାନୁକ୍ରମିକ ଇତିହାସ ଦେଖିବାକୁ ମିଳେନାହିଁ ।

କିନ୍ତୁ ଏହା ବୋଲି, ଖ୍ରୀ: ପୂ: ୬୦୦ ଠାରୁ ତଥା ବୁଦ୍ଧଦେବଙ୍କର ଆବିର୍ଭାବ ବେଳରୁ ହିଁ ଭାରତୀୟ ଇତିହାସର ଆରମ୍ଭ ବୋଲି ବୁଝିବା ଠିକ୍ ନୁହେଁ । ବୁଦ୍ଧଦେବଙ୍କର ଆବିର୍ଭାବର ବହୁ ପୂର୍ବରୁ ଅତୀତ ଭାରତର ସଭ୍ୟତା ଓ ସଂସ୍କୃତି ରହିଅଛି ଏବଂ ଖ୍ରୀ: ପୂ: ୬୦୦ ରେ ବୌଦ୍ଧଧର୍ମର ବିକାଶ ସେହି ସୁଦୂର ଅତୀତ ଇତିହାସର ଏକ ଉଲ୍ଲେଖଯୋଗ୍ୟ ଅଭିବ୍ୟକ୍ତି ମାତ୍ର । ତେବେ ଖ୍ରୀ: ପୂ: ୬୦୦ର ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଇତିହାସ ମଧ୍ୟରେ ପ୍ରଭେଦ ଏତିକି ଯେ, ଖ୍ରୀ: ପୂ: ୬୦୦ ପରେ ବିଭିନ୍ନ ଘଟଣାବଳୀର ସମୟାନୁକ୍ରମିକ ସଠିକ ବିବରଣୀକୁ ଭିତ୍ତି କରି ଇତିହାସ ପ୍ରଣୟନ କରାଯାଇଛି ଏବଂ ଖ୍ରୀ: ପୂ: ୬୦୦ର ପୂର୍ବବର୍ତ୍ତୀ ଇତିହାସ ଘଟଣାନୁକ୍ରମିକ ହେଲେ ମଧ୍ୟ ସେଥିରେ ବିଭିନ୍ନ ଘଟଣାର ସଠିକ ସମୟ ନିରୂପଣ କରାଯାଇ ପାରିନାହିଁ ।

ଅବଶ୍ୟ, କେତେକ ଐତିହାସିକଙ୍କ ମତରେ ଖ୍ରୀ: ପୂ: ୮୦୦ ପୂର୍ବରୁ ଭାରତରେ ଲିପି ପ୍ରବର୍ତ୍ତନ ହୋଇ ନଥିଲା । ଏହି ମତ ଯେତେଦୂର ଯଥାର୍ଥ ହେଉ ନା କାହିଁକି ଖ୍ରୀଷ୍ଟଜନ୍ମର ବହୁ ଶତାବ୍ଦୀ ପୂର୍ବରୁ ଯେ ଭାରତରେ ସାହିତ୍ୟର ପ୍ରସାର ଘଟିଥିଲା, ଏଥିରେ ସନ୍ଦେହ ନାହିଁ । ବାଚନିକ ଶିକ୍ଷା ବା ଶ୍ରୁତି ଭାରତୀୟ ଶିକ୍ଷାପଦ୍ଧତିର ପ୍ରଥମ ପର୍ଯ୍ୟାୟ । ତାହା ଲିପି ପ୍ରବର୍ତ୍ତନର ବହୁ ପୂର୍ବରୁ ବହୁ ପୁରୁଷ କାଳ ଧରି ପ୍ରଚଳିତ ଥିଲା । ଶିକ୍ଷିତ ବ୍ୟକ୍ତିଙ୍କର ସ୍ମରଣଶକ୍ତି ଥିଲା ସେ କାଳର ପାଠ୍ୟପୁସ୍ତକ; ଏବଂ ସେମାନେ ଚଳନ୍ତି-ପାଠାଗାର ରୂପେ ପରିଗଣିତ ହେଉଥିଲେ । ତଥାପି ଏହି ଶ୍ରୁତିସାହିତ୍ୟ ଭାରତୀୟ ଇତିହାସର ପ୍ରଥମ ସୋପାନ ବୋଲି ଧରାଯାଇ ନପାରେ, କାରଣ ତାହା ପୂର୍ବରୁ ପ୍ରଚଳିତ ଥିବା ଭାରତୀୟ ସଭ୍ୟତା ସମ୍ପର୍କରେ ବିଭିନ୍ନ ଉତ୍ଖନନରୁ ଓ ଧ୍ୱଂସାବଶେଷଗୁଡ଼ିକରୁ କେତେକ ସୂଚନା ମିଳେ । ସେହି କାଳର ସେହି ସଭ୍ୟତା ପ୍ରାଗୈତିହାସିକଯୁଗୀୟ ସଭ୍ୟତା ରୂପେ ସୁବିଦିତ ।

ଏହି ପ୍ରାଗୈତିହାସିକ-ଯୁଗୀୟ ମାନବ-ସଭ୍ୟତାକୁ ବିଭିନ୍ନ ଅସ୍ତ୍ରଶସ୍ତ୍ରାଦି ଉପକରଣର ବ୍ୟବହାର ଅନୁସାରେ ଐତିହାସିକମାନେ ବିଭିନ୍ନ ଯୁଗରେ ବିଭକ୍ତ କରିଥାନ୍ତି; ଯଥା – ପ୍ରାଚୀନ ପ୍ରସ୍ତର ଯୁଗ, ନୂତନ ପ୍ରସ୍ତର ଯୁଗ, ତାମ୍ର-ଯୁଗ, କାଂସ୍ୟଯୁଗ ଓ ଲୌହଯୁଗ ।

**ପ୍ରାଚୀନ ପ୍ରସ୍ତର ଯୁଗ** – ମାନ୍ଦ୍ରାଜ, ଆନ୍ଧ୍ରପ୍ରଦେଶର ଗୁଣ୍ଟୁର ଜିଲ୍ଲା, ନର୍ମଦା ଓ ଗୋଦାବରୀ ଅଞ୍ଚଳରୁ ଆବିଷ୍କୃତ କେତେକ ପ୍ରସ୍ତର-ଭଗ୍ନାବଶେଷରୁ ପ୍ରାଚୀନ ପ୍ରସ୍ତର ଯୁଗର ଚଳଣୀ ସମ୍ପର୍କରେ କେତେକ ସୂଚନା ମିଳେ । ସେହି ସମୟରେ କୃଷି ଓ ବାଣିଜ୍ୟର ବିକାଶ ଘଟି ନ ଥିଲା । ଲୋକମାନେ ମୁନିଆ ପଥର ସାହାଯ୍ୟରେ ପଶୁପକ୍ଷୀ ଶିକାର୍‌କରି ଏବଂ ଜଙ୍ଗଲଜାତ କଞ୍ଚା ଫଳମୂଳ ଭକ୍ଷଣକରି ଜୀବିକା ନିର୍ବାହ କରୁଥିଲେ । ସେତେବେଳେ ଅଗ୍ନି ଆବିଷ୍କୃତ ହୋଇ ନଥିବା କାରଣରୁ ରନ୍ଧନକ୍ରିୟା ସମ୍ପାଦନ କରିବା ପ୍ରଶ୍ନ ଉଠୁ ନଥିଲା । ସେମାନଙ୍କର ବାସଗୃହ ବୋଲି କିଛି ନଥିଲା । ପର୍ବତଗାତର କୁଡ଼ିଆ ତଳେ ସେମାନେ ଖରାବର୍ଷାର ଦାଉରୁ ରକ୍ଷା ପାଇବା ପାଇଁ ଆଶ୍ରୟ ନେଉଥିଲେ ଏବଂ ବ୍ୟାଘ୍ର, ସିଂହ, ଗଣ୍ଡାଦି ହିଂସ୍ର ଜନ୍ତୁଙ୍କର ଆକ୍ରମଣ ଆଶଙ୍କାରେ ସର୍ବଦା ଶଙ୍କିତ ରହୁଥିଲେ ।

ସଂକ୍ଷେପରେ କହିବାକୁ ଗଲେ, ସେମାନେ ପଶୁମାନଙ୍କ ଭଳି ଜୀବନ ଯାପନ କରୁଥିଲେ । ଏହି ଯୁଗର ଲୋକେ କ୍ଷୁଦ୍ରକାୟ, କୃଷ୍ଣବର୍ଣ୍ଣ, ବସ୍ତୃତନାଶା ଓ ପଶମକେଶୀ ଥିବାର ଜଣାଯାଏ ।

## ନୂତନ ପ୍ରସ୍ତର ଯୁଗ

କାଳର ଆବର୍ତ୍ତନ ଫଳରେ ତଦାନୀନ୍ତନ ପରିସ୍ଥିତିରେ ସାମାନ୍ୟ ଉନ୍ନତି ଦେଖାଦେଲା । ଲୋକେ କ୍ରମେ କ୍ରମେ ପାଶବିକ ସ୍ତରରୁ ମାନବିକ ସ୍ତରକୁ ଆଗୁଁସାର ହେଲେ । ତଥାପି ସେତେବେଳେ ସଭ୍ୟତାର ଆଲୋକ ରଶ୍ମି ବିଚ୍ଛୁରିତ ହୋଇ ନ ଥିଲା । ସେହି ଯୁଗକୁ ଐତିହାସିକମାନେ 'ନୂତନ ପ୍ରସ୍ତର ଯୁଗ' ଆଖ୍ୟା ଦେଇଛନ୍ତି ।

ଭାରତରେ ନୂତନ ପ୍ରସ୍ତରଯୁଗୀୟ ମାନବର ସ୍ଥିତି ସଂପର୍କରେ ପର୍ଯ୍ୟାପ୍ତ ପ୍ରମାଣ ମିଳେ । (୧) ସେମାନେ ପ୍ରାଚୀନ ପ୍ରସ୍ତରଯୁଗୀୟ ଲୋକମାନଙ୍କ ଭଳି କୌଣସି ବିଶେଷ ଅଞ୍ଚଳରେ ଆବଦ୍ଧ ନ ଥିଲେ । ଭାରତ ସାରା ସେମାନେ ବିକ୍ଷିପ୍ତ ହୋଇ ରହିଥିଲେ । 'ନୂତନ ପ୍ରସ୍ତର ଯୁଗ' ନାମକରଣର ତାତ୍ପର୍ଯ୍ୟ ଏହି ଯେ, ସେ ଯୁଗର ଲୋକେ ମୂଳତଃ ପ୍ରସ୍ତର ଉପରେ ନିର୍ଭର କରୁଥିଲେ । ତେବେ ପ୍ରାଚୀନ ପ୍ରସ୍ତର ଓ ନୂତନ ପ୍ରସ୍ତର ଯୁଗର ଲୋକମାନଙ୍କ ମଧ୍ୟରେ ପ୍ରଭେଦ ଏତିକି ଯେ, ଆଦ୍ୟ ପ୍ରସ୍ତର ଯୁଗୀୟ ଲୋକେ ଅତି ସରଳ ଓ ସାଧାରଣ ଭାବରେ ପ୍ରସ୍ତର ଉପରେ ନିର୍ଭର କରୁଥିଲେ ତଥା ପ୍ରସ୍ତରକୁ ଅସ୍ତ୍ରଶସ୍ତ୍ର ରୂପେ ବ୍ୟବହାର କରି ଜୀବିକା ନିର୍ବାହ କରୁଥିଲେ; କିନ୍ତୁ ପରବର୍ତ୍ତୀ ପ୍ରସ୍ତର ଯୁଗରେ ଲୋକମାନେ ନିଜର ସୂକ୍ଷ୍ମ ବୁଦ୍ଧିବୃତ୍ତି ପ୍ରୟୋଗକରି ପ୍ରସ୍ତରରେ

---

(୧) ରେଓ୍ବା, ମିର୍ଜାପୁର, ଆସାମ, ଛୋଟନାଗପୁର ପ୍ରଭୃତି ଅଞ୍ଚଳର କ୍ଷୁଦ୍ର ଶିଳାସ୍ତ୍ର; ଦକ୍ଷିଣଭାରତର କେତେକ ଅଞ୍ଚଳର ଶିଳାସ୍ତ୍ର ନିର୍ମାଣ କାରଖାନାର ଭଗ୍ନାବଶେଷ; ବେଲ୍ଲାରୀ ଜିଲ୍ଲାରେ ସମୂହ ପଶୁହତ୍ୟାର ପ୍ରମାଣ ସ୍ୱରୂପ ଦଗ୍ଧୀଭୂତ ଅଙ୍ଗାରାବଶେଷ; ବିନ୍ଧ୍ୟାଚଳରେ ବିଭିନ୍ନ ଅଙ୍କନ, ଚିତ୍ରଣ ଏବଂ କେତେକ ସ୍ଥାନରେ ପ୍ରସ୍ତର ନିର୍ମିତ ପାନୀୟ ପାତ୍ର ଓ ସମାଧି, ସ୍ତୂପାଦି ନୂତନ ପ୍ରସ୍ତର ଯୁଗୀୟ ଭଗ୍ନାବଶେଷ ଐତିହାସିକମାନଙ୍କଦ୍ୱାରା ଆବିଷ୍କୃତ ହୋଇଅଛି ।

ବିଭିନ୍ନ ପ୍ରକାର ମସୃଣ ଓ ତୀକ୍ଷ୍ଣ ଅସ୍ତ୍ରଶସ୍ତ୍ର ନିର୍ମାଣ କରିବାପାଇଁ ସକ୍ଷମ ହୋଇ ପାରିଥିଲେ । ଅର୍ଥାତ୍, ପ୍ରସ୍ତରର ସାଧାରଣ ବ୍ୟବହାର ଓ ସୂକ୍ଷ୍ମ ବ୍ୟବହାରକୁ ଭିତ୍ତିକରି ଐତିହାସିକମାନେ ପ୍ରସ୍ତର ଯୁଗକୁ 'ପ୍ରାଚୀନ' ଓ 'ନୂତନ' ଦୁଇଭାଗରେ ବିଭକ୍ତ କରିଛନ୍ତି । ତେବେ ଏ ଦୁଇ ଯୁଗ ମଧ୍ୟରେ ବହୁବର୍ଷର ବ୍ୟବଧାନଥିଲା ନା ପ୍ରଥମ ଯୁଗ ପରେ ପରେ ଦ୍ୱିତୀୟ ଯୁଗର ପ୍ରବର୍ତ୍ତନ ଘଟିଲା, ସେ ବିଷୟରେ ଐତିହାସିକମାନଙ୍କ ମଧ୍ୟରେ ମତଭେଦ ଦେଖାଯାଏ ।

ସେ ଯାହାହେଉ, ନୂତନ ପ୍ରସ୍ତର ଯୁଗୀୟ ମାନବଙ୍କର ଜୀବନଯାପନ ପ୍ରଣାଳୀରେ କେତେକ ନୂତନତା ଦେଖିବାକୁ ମିଳେ । ସେମାନେ କୃଷି, ଶସ୍ୟୋତ୍ପାଦନ, ଫଳବୃକ୍ଷ ରୋପଣ, ଛେଳି, ଘୋଡ଼ା, ଗାଈ, ବଳଦାଦି ପଶୁପାଳନ, କାଷ୍ଠଖଣ୍ଡ ଓ ପ୍ରସ୍ତର ଖଣ୍ଡର ଘର୍ଷଣ ବଳରେ ଅଗ୍ନିଉତ୍ପାଦନ ଇତ୍ୟାଦି କେତେକ କ୍ଷେତ୍ରରେ ତାଙ୍କ ପୂର୍ବପୁରୁଷଙ୍କଠାରୁ ଆଗେଇ ଯାଇଥିଲେ । ଏହା ବ୍ୟତୀତ, ନୂତନ ପ୍ରସ୍ତର ଯୁଗୀୟ ଲୋକମାନେ ତାଙ୍କର ଗୁହା ଓ କୁଡିଆଗୁଡିକୁ ଅତି ସୁନ୍ଦର ଭାବେ ସଜାଡି କାନ୍ଥରେ ହିଂସ୍ରଜନ୍ତୁର ଶିକାର, ନୃତ୍ୟରତା ରମଣୀର ଅଙ୍ଗଭଙ୍ଗୀ ପ୍ରଭୃତି ଚିତ୍ର (୨) ଆଙ୍କିବାକୁ ସମର୍ଥ ହୋଇ ପାରିଥିଲେ । ଏପରି କି, ତୁଳା ଭିଣି ବସ୍ତ୍ର ବୁଣିବା ଓ ନାବଧରି ସମୁଦ୍ରକୁ ମାଛମାରିବାକୁ ଯିବା ପାଇଁ ମଧ୍ୟ ସେମାନେ ସକ୍ଷମ ହୋଇ ପାରିଥିଲେ ।

**ଧାତୁଯୁଗ**—ସମଗ୍ର ପୃଥିବୀ ଇତିହାସରେ ପ୍ରସ୍ତର ଯୁଗ ପରେ ଧାତୁ ଯୁଗର ଆବର୍ତ୍ତନ ଦେଖା ଦେଇଛି । ତେବେ ଭାରତରେ ଅନ୍ୟାନ୍ୟ ସ୍ଥାନ ଭଳି କାଂସ୍ୟଯୁଗ (Bronze Age)ର ବିଶେଷ ପ୍ରସାର ପରିଲକ୍ଷିତ ହୁଏ ନାହିଁ । ଅବଶ୍ୟ, ସିନ୍ଧୁଉପତ୍ୟକା ଆଦି କେତେକ ଅଞ୍ଚଳରେ କଂସା ବ୍ୟବହୃତ ହେଉଥିବାର ପ୍ରମାଣ ମିଳିଛି । କିନ୍ତୁ ତାହା ୟୁରୋପୀୟ ସ୍ଥାନମାନଙ୍କ ଭଳି ଏଠାରେ ବିଶେଷ ମାତ୍ରାରେ ବ୍ୟବହୃତ ହେଉ ନଥିଲା । ଏଠାରେ ପ୍ରସ୍ତର ଯୁଗ ପରେ ପରେ ଉତ୍ତରାଞ୍ଚଳରେ ତାମ୍ରର ବ୍ୟବହାର ଓ ଦାକ୍ଷିଣାତ୍ୟରେ ଲୁହାର ବ୍ୟବହାର ଦେଖାଯାଏ । ଏଣୁ ଐତିହାସିକମାନଙ୍କ ମତରେ ନୂତନ ପ୍ରସ୍ତର ଯୁଗ ପରେ ପରେ ଦକ୍ଷିଣ ଭାରତରେ ପ୍ରଥମେ ଲୌହଯୁଗ ଓ ପରେ ତାମ୍ରଯୁଗ ଏବଂ ଉତ୍ତର

---

(୨) ଦକ୍ଷିଣ ଭାରତ ଓ ଉତ୍ତର ଭାରତର କେତେକ ଅଞ୍ଚଳରେ ଏହା ଅବିଷ୍କୃତ ହୋଇଛି ।

ଭାରତରେ ପ୍ରଥମେ ତାମ୍ରଯୁଗ ଓ ପରେ ଲୌହଯୁଗର ପ୍ରବର୍ତ୍ତନ ଘଟିଛି । ଏଠାରେ କାଂସ୍ୟଯୁଗର ପ୍ରାଧାନ୍ୟ ନାହିଁ ।

ତାମ୍ରଯୁଗ ଓ ଲୌହଯୁଗର ପ୍ରବର୍ତ୍ତନ ସଙ୍ଗେ ସଙ୍ଗେ ଭାରତରେ ଐତିହାସିକ ଯୁଗର ଭିତ୍ତିସ୍ଥାପନ ତଥା ମାନବ ସଭ୍ୟତାର ଶୁଭାରମ୍ଭ ହେଲା ବୋଲି ଧରାଯାଏ । ଅବଶ୍ୟ, ଲୌହଯୁଗ ପୂର୍ବରୁ ଋଗ୍‌ବେଦ ରଚିତ ହୋଇ-ଥିଲା ନା ଲୌହଯୁଗରେ କିମ୍ବା ଲୌହଯୁଗ ପରେ ତାହା ରଚିତ ହୋଇଥିଲା ଏ ବିଷୟରେ ମତାନୈକ୍ୟ ଦେଖାଦିଏ । ଋଗ୍‌ବେଦର ରଚନା କାଳ ବିଷୟରେ ଐତିହାସିକମାନେ ଏକମତ ନୁହନ୍ତି । ସେ ଯାହାହେଉ, ଲୌହଯୁଗ ପରେ ପରେ ଯେ ସିନ୍ଧୁ ଉପତ୍ୟକାରେ ସଭ୍ୟତାର ବିକାଶ ଘଟିଥିଲା, ଏଥିରେ ସନ୍ଦେହର ଅବକାଶ ନାହିଁ ।

**ସିନ୍ଧୁ ସଭ୍ୟତା**—ସିନ୍ଧୁ ଉପତ୍ୟକା ଅଞ୍ଚଳରେ ତଥା ପଞ୍ଜାବର ମହେଞ୍ଜୋଦାରୋ ଓ ହରପ୍ପା ଏବଂ ବେଲୁଚିସ୍ଥାନ ପ୍ରଭୃତି ଅଞ୍ଚଳରେ ଉତ୍‌ଖନନ ଫଳରେ ପ୍ରାଚୀନ ଯୁଗୀୟ ସଭ୍ୟତା ସମ୍ପର୍କରେ ନାନା ପ୍ରାମାଣିକ ଉପାଦାନ ସଂଗୃହୀତ ହୋଇଛି ଏବଂ ତାହାଦ୍ୱାରା ପ୍ରମାଣିତ ହୋଇପାରିଛି ଯେ ପ୍ରାଚୀନ ଭାରତର ସିନ୍ଧୁ ସଭ୍ୟତା ମିଶର, ବେବିଲୋନିଆ ଓ ସିରିଆ ସଭ୍ୟତାର ସମ-ସାମୟିକ ଏବଂ ସେହି ଭଳି ସମୃଦ୍ଧ ଓ ଉନ୍ନତ । କିନ୍ତୁ ପରିତାପର ବିଷୟ ଏହି ଯେ, ସିନ୍ଧୁ ଓ ସଭ୍ୟତା ସମ୍ପର୍କରେ କୌଣସି ଲିଖିତ ଉପାଦାନ ନାହିଁ ଏବଂ ସେଥିପାଇଁ ଆମେ ତତ୍‌କାଳୀନ ରାଜନୀତି ଓ ସଂସ୍କୃତି ବିଷୟରେ ସମ୍ପୂର୍ଣ୍ଣ ଅବହିତ ହେବାର ଉପାୟ ନାହିଁ । ଐତିହାସିକଗଣ ବିଭିନ୍ନ ଉତ୍‌ଖନନ ଫଳରେ ଆବିଷ୍କୃତ କେତେକ ଭଗ୍ନାବଶେଷକୁ ଭିତ୍ତି କରି ହିଁ ସେହି ଯୁଗର ସଭ୍ୟତା ଓ ସଂସ୍କୃତି ସମ୍ପର୍କରେ ଅନୁମାନ କରନ୍ତି ।

ଐତିହାସିକ ଗବେଷଣାରୁ ଜଣାଯାଏ, ମହେଞ୍ଜୋଦାରୋରେ ନଗର-ସଭ୍ୟତା ପ୍ରଚଳିତ ଥିଲା । ଗୃହ ନିର୍ମାଣ, କୂପଖନନ, ନର୍ଦ୍ଦମା ନିର୍ଗମନ ପ୍ରଣାଳୀଦ୍ୱାରା ଦୂଷିତ ଜଳନିଷ୍କାସନ ଇତ୍ୟାଦି କ୍ଷେତ୍ରରେ ସେଠାରେ ସେତେ-ବେଳେ ସନ୍ତୋଷଜନକ ଅଗ୍ରଗତି ଘଟିଥିଲା । ଭଗ୍ନାବଶେଷଗୁଡ଼ିକର ଅନୁଧ୍ୟାନରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ତତ୍‌କାଳୀନ ଗୃହଗୁଡ଼ିକ ଖୁବ୍ ପ୍ରଶସ୍ତ ଥିଲା ଏବଂ ଝରକା, କବାଟ, ସିଡ଼ି, ଅଗଣା, ବାରଣ୍ଡା, ସୋପାନଶ୍ରେଣୀ ଇତ୍ୟାଦି ଖୁବ୍ ସୁନ୍ଦର ଓ ସୁଦୃଢ଼ ଥିଲା । ସେଠାରେ ସୁଦୀର୍ଘ ନର୍ଦ୍ଦମା ନିର୍ଗମନ ପ୍ରଣାଳୀ,

ସୁପ୍ରଶସ୍ତ (୩) ସ୍ନାନାଗାର ଓ ସୁସଜ୍ଜିତ ସନ୍ତରଣାଗାର ରହିଥିଲା । ମହେଞ୍ଜୋ-ଦାରୋର ଲୋକମାନେ ଅତି ସୁଖ ଓ ଶାନ୍ତିରେ ସୁସଭ୍ୟ ଜୀବନଯାପନ କରୁଥିବାର ଜଣାଯାଏ । ସେମାନେ ବାର୍ଲି, ଗହମ, ଖର୍ଜୁର, ଡାଲି, ମାଛ, ମାଂସ ଓ ଅଣ୍ଡା ବ୍ୟବହାର କରୁଥିଲେ ଏବଂ କପା ଓ ପଶମ ନିର୍ମିତ ବସ୍ତ୍ର ବ୍ୟବହାର କରୁଥିଲେ । ସେତେବେଳେ ସୁନା, ରୁପା, ତମ୍ବାଦି ଧାତୁନିର୍ମିତ ଗଳାହାର, କଣ୍ଠୀବନ୍ଧ, ମଣିବନ୍ଧ, ନାକଚଣା, କାନବଳା, ମୁଦି, ମଲ୍ଲି, ନୂପୁର ଇତ୍ୟାଦି ନାନାବିଧ ଅଳଙ୍କାର ବ୍ୟବହୃତ ହେଉଥିବାର ମଧ୍ୟ ପ୍ରମାଣ ମିଳେ । ଗୃହୋପକରଣ ତଥା ଆସବାବ ପତ୍ର ମଧ୍ୟରେ ମୃତ୍ତିକା ପାତ୍ର, ତାମ୍ର ପାତ୍ର ଓ ପିତଳର ବାସନକୁସନ ବ୍ୟବହାର କରାଯାଉଥିଲା । ଏହା ବ୍ୟତୀତ, କାଣ୍ଡି, କୁରାଢ଼ି, ଚାକୁଡ଼ି, କ୍ଷୁର, ଛୁଞ୍ଚି, ଛୁଞ୍ଚ, ଦାଆ, ପାନିଆ ଇତ୍ୟାଦି ସରଞ୍ଜାମ ମଧ୍ୟ ବ୍ୟବହୃତ ହେଉଥିଲା ।

ଉତ୍ଖନନ ଫଳରେ ଆବିଷ୍କୃତ ବିଭିନ୍ନ ଅସ୍ଥିକଙ୍କାଳ ପରୀକ୍ଷା କରି ପ୍ରତ୍ନତତ୍ତ୍ୱବିଦ୍ ମାନେ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ ସେତେବେଳେ ଗାଈ, ବଳଦ, ଘୋଡ଼ା, ହାତୀ, ଓଟ ଓ କୁକୁର ପ୍ରଭୃତି ପଶୁ ଗୃହପାଳିତ ପଶୁ ରୂପେ ପାଳିତ ହେଉଥିଲେ । ହିଂସ୍ରଜନ୍ତୁ ଓ ବହିଃଶତ୍ରୁର ଆକ୍ରମଣରୁ ରକ୍ଷା ପାଇବା ଲାଗି ସେମାନେ ବର୍ଚ୍ଛା, କୁରାଢ଼ି, ଧନୁଶର ସାଙ୍ଗକୁ କେତେକ ପ୍ରସ୍ତରନିର୍ମିତ ଅସ୍ତ୍ରଶସ୍ତ୍ର ମଧ୍ୟ ବ୍ୟବହାର କରୁଥିଲେ ।

ସେତେବେଳେ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ଖୁବ୍ ଅଗ୍ରଗତି ଘଟିଥିଲା । ସେମାନଙ୍କର ବ୍ୟବସାୟ କେବଳ ଭାରତ ଭୂଖଣ୍ଡ ଭିତରେ ଆବଦ୍ଧ ନଥିଲା, ତାହା ସମଗ୍ର ଏସିଆ ମଧ୍ୟରେ ବିସ୍ତାରିତ ହୋଇଥିଲା । ସେହି ସମୟରେ ବିନିମୟର ମାଧ୍ୟମ ସ୍ୱରୂପ ମୃଣ୍ମୟ ମୁଦ୍ରା ପ୍ରଚଳିତ ହୋଇଥିବାର ମଧ୍ୟ ପ୍ରମାଣ ମିଳେ । ବାଣିଜ୍ୟ, ବ୍ୟବସାୟ ବ୍ୟତୀତ ଲୋକମାନେ ଅନ୍ୟାନ୍ୟ ବୃତ୍ତି ଅବଲମ୍ବନ କରି ଜୀବିକା ଅର୍ଜନ କରୁଥିବାର ମଧ୍ୟ ଜଣାପଡ଼ୁଛି । ତେବେ

---

(୩) ସ୍ନାନାଗାରର ଦୈର୍ଘ୍ୟ ୧୮୦ ଫୁଟ, ବିସ୍ତୃତି ୧୦୮ ଫୁଟ ଓ ପାଚେରୀ ୮ ଫୁଟ ଥିଲା ଏବଂ ୩୯ ଫୁଟ ଲମ୍ବା, ୨୩ ଫୁଟ ଚଉଡ଼ା ଓ ୮ ଫୁଟ ଗଭୀରର ଦୁଇ ଦିଗରେ ସୋପାନଶ୍ରେଣୀ ସଂଯୋଜିତ ଏକ ଚତୁଷ୍କୋଣ ସନ୍ତରଣାଗାର ରହିଥିଲା ।

ସେତେବେଳର ବିଭିନ୍ନ ବୃତ୍ତି ମଧ୍ୟରେ କୃଷି ପ୍ରଧାନ ସ୍ଥାନ ଲାଭ କରିଥିଲା । ବହୁ ପରିମାଣରେ ଗହମ, ବାର୍ଲି ଓ କପା ଚାଷ କରାଯାଉଥିଲା ।

କୁଟୀରଶିଳ୍ପ ମଧ୍ୟରେ ମୃଣ୍ମୟପାତ୍ର ନିର୍ମାଣ, ବସ୍ତ୍ରବୁଣା, ବିଭିନ୍ନ ଗୃହୋପକରଣ ସଂପାଦନ ଅନ୍ୟତମ । ହାତୀଦାନ୍ତର ବ୍ୟବହାର ଓ ବିଭିନ୍ନ ଅଳଙ୍କାରର ଆକୃତି ଓ ରୂପସଜ୍ଜାରୁ ତଦାନୀନ୍ତନ ଶିଳ୍ପକାରମାନଙ୍କର ସୂକ୍ଷ୍ମ ଦୃଷ୍ଟିକୋଣ ତଥା କଳାନୈପୁଣ୍ୟର ପରିଚୟ ମିଳେ ।

ସେହି ସମୟରେ ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଧର୍ମ ଓ ସଂସ୍କୃତି କ୍ଷେତ୍ରରେ ମଧ୍ୟ ଉନ୍ନତି ଘଟିଥିଲା । ସେତେବେଳେ ଆଦ୍ୟାଶକ୍ତିଙ୍କର ଆରାଧନା ହେଉଥିଲା । ଆଜିଆମ ଗାଁ ଗହଳରେ ଯେଉଁ ଗ୍ରାମଦେବତୀଙ୍କର ପୂଜା ହୁଏ, ତାହା ଋଗ୍‌ବେଦର ଅବହିତ ତଥା ପ୍ରାଗୈତିହାସିକ ଯୁଗୀୟ ଆଦ୍ୟାଶକ୍ତିର ଆରାଧନା ବେଳରୁହିଁ କ୍ରମେ ଗଢି ଆସିଛି ବୋଲି ଧରାଯାଇପାରେ । ଏହାବ୍ୟତୀତ ସେହି ସମୟରେ ପୁରୁଷ ଦେବତା ଶିବଙ୍କର ମଧ୍ୟ ଉପାସନା ହେଉଥିବାର ପ୍ରମାଣ ମିଳେ । ତଦାନୀନ୍ତନ ବିଭିନ୍ନ ମୃଣ୍ମୟମୁଦ୍ରାରେ ତ୍ରିଚକ୍ଷୁ, ତ୍ରିଶୂଳଧାରୀ, ମହାଯୋଗୀ ପଶୁପତି ଶିବଙ୍କର ଛବି ଅଙ୍କିତ ହୋଇଥିବାର ଆବିଷ୍କୃତ ହୋଇଛି । ଅନ୍ୟ କେତେକ ତାତ୍କାଳିକ ମୁଦ୍ରାରେ ଅଙ୍କିତ ହୋଇଥିବା ଚତୁର୍ଦ୍ଧା ମୂର୍ତ୍ତିମାନଙ୍କରୁ ପରବର୍ତ୍ତୀ କାଳରେ ବ୍ରହ୍ମା, ବିଷ୍ଣୁ ପ୍ରମୁଖ ଦେବତା-ମାନଙ୍କର ପରିକଳ୍ପନା କରାଯାଉଥିବା ଅନୁମିତ ହୁଏ । ତଦୁପରି, ସିନ୍ଧୁ-ଉପତ୍ୟକା, ମହେଞ୍ଜୋଦାରୋ, ହରପ୍ପା ଓ ବେଲୁଚିସ୍ଥାନରୁ ଆବିଷ୍କୃତ କେତେକ ପ୍ରସ୍ତର ପ୍ରତିକୃତିରୁ ଜଣାଯାଏ ଯେ ସେତେବେଳେ ଲିଙ୍ଗ ଓ ଯୋନିର ଉପାସନା ମଧ୍ୟ କରାଯାଉଥିଲା ।

ଏହା ବ୍ୟତୀତ, ସେତେବେଳେ ବୃକ୍ଷପୂଜା ଓ ପଶୁପୂଜା କରାଯାଉଥିବାର ମଧ୍ୟ ପ୍ରମାଣ ମିଳେ । ବୃକ୍ଷମାନଙ୍କ ମଧ୍ୟରେ ପିପ୍ପଳ ଓ ପଶୁମାନଙ୍କ ମଧ୍ୟରେ ବ୍ୟାଘ୍ର, ହସ୍ତୀ, ମହିଷ, ବୃଷ ଓ ବାନର ପ୍ରଧାନ । ପରବର୍ତ୍ତୀ କାଳରେ ବୁଦ୍ଧଯୁଗରେ ମଧ୍ୟ ଜ୍ଞାନବୃକ୍ଷର ପରିକଳ୍ପନା କରାଯାଇଛି ଏବଂ ହିନ୍ଦୁମାନେ ବୃଷଭ, ସିଂହ, ମହିଷ ଓ ହସ୍ତୀକୁ ଯଥାକ୍ରମେ ଶିବ, ଦୁର୍ଗା, ଯମ ଓ ଇନ୍ଦ୍ରଙ୍କ ବାହନ ରୂପେ ଏ ଯାବତ୍ ଗ୍ରହଣ କରି ଆସିଛନ୍ତି । ସୁତରାଂ ସିନ୍ଧୁସଭ୍ୟତାକୁ ଆଧୁନିକ ହିନ୍ଦୁଧର୍ମର ଜନ୍ମଦାତା ରୂପେ ଗ୍ରହଣ କରାଯାଇପାରେ ।

କେବଳ ସେତିକି ନୁହେଁ, ତଦାମିନ୍ତନ ସମାଜର ଦୈନନ୍ଦିନ ଜୀବନ ଯାପନ ପ୍ରଣାଳୀରେ ମଧ୍ୟ ହିନ୍ଦୁଧର୍ମ ଓ ସଂସ୍କୃତିର ପ୍ରତିଫଳନ ସ୍ପଷ୍ଟ ଅନୁମେୟ । ଐତିହାସିକ ମହେଞ୍ଜୋଦାରୋ ଓ ହରପ୍ପାର ଲୋକମାନେ ଆତ୍ମଶୁଦ୍ଧି ଓ ପୁଣ୍ୟାର୍ଜନ ଲାଗି ସ୍ନାନ କରୁଥିଲେ ବୋଲି ସହରରେ ନିର୍ମିତ ହୋଇଥିବା ବହୁସଂଖ୍ୟକ ସ୍ନାନାଗାରଗୁଡ଼ିକରୁ ପ୍ରମାଣିତ ହୁଏ ଏବଂ ତାହା ସଙ୍ଗେ ସଙ୍ଗେ ସେତେବେଳେ ବିବାହ ବ୍ରତାଦି କେତେକ ପର୍ବପର୍ବାଣି ତଥା ଅନ୍ତ୍ୟେଷ୍ଟିକ୍ରିୟା ସଂପାଦନାଦି କେତେକ ସାମାଜିକ ରୀତି ପ୍ରଚଳିତ ଥିବାର ଅନୁମାନ କରାଯାଏ । ମହେଞ୍ଜୋଦାରୋ ସଭ୍ୟତାର ଆଦ୍ୟାବସ୍ଥାରେ ମୃତ ଶରୀରକୁ ଶବାଧାର ଭିତରେ ରଖି ସମାଧି ଦିଆଯାଉଥିଲା ଏବଂ ଅନ୍ତିମାବସ୍ଥାରେ ଶବକୁ ଚିତାନଳରେ ସଂସ୍କାର କରାଯାଉଥିଲା ବୋଲି ଐତିହାସିକ ଗବେଷଣାରୁ ଜଣାଯାଏ ।

ଏସବୁ ଦିଗରୁ ବିଚାର କଲେ ସ୍ପଷ୍ଟ ପ୍ରତୀତ ହୁଏ ଯେ, ସିନ୍ଧୁସଭ୍ୟତା ଭାରତୀୟ ସଭ୍ୟତାର ପ୍ରଥମ ଆଲୋକବର୍ତ୍ତିକା ଏବଂ ତାକୁ ଭିତ୍ତି କରି ଆଧୁନିକ ଧର୍ମ, ସଭ୍ୟତା ଓ ସଂସ୍କୃତିର ବିକାଶ ସାଧନ ସମ୍ଭବ ହୋଇ ପାରିଛି । ତେବେ ଏହି ପ୍ରାଗୈତିହାସିକଯୁଗୀୟ ମହାନ୍ ସଭ୍ୟତାର କାଳ ନିରୂପଣ ସଂପର୍କରେ କୌଣସି ପ୍ରାମାଣିକ ଅଭିଲେଖ ନ ଥିବାରୁ ପରବର୍ତ୍ତୀ ଯୁଗର ଐତିହାସିକମାନେ ସିନ୍ଧୁ ସଭ୍ୟତାକୁ କ୍ରୀଟ୍, ମେସୋପୋଟାମିଆ ଓ ସୁମେରୀୟ ପ୍ରଭୃତି ସଭ୍ୟତା ସହିତ ତୁଳନାକରି ବିଭିନ୍ନ ଧ୍ୱଂସାବଶେଷର ଅନୁଧ୍ୟାନ ତଥା ଅଭିଜ୍ଞାନ ବଳରେ ଖ୍ରୀଷ୍ଟପୂର୍ବ ୩୨୫୦ ଓ ୨୭୫୦ ର ମଧ୍ୟବର୍ତ୍ତୀ ବୋଲି ସିଦ୍ଧାନ୍ତ ଗ୍ରହଣ କରିଛନ୍ତି ।

## ସିନ୍ଧୁ-ସଭ୍ୟତାର ବୈଶିଷ୍ଟ୍ୟ

ଅବଶ୍ୟ ଏଠାରେ ସ୍ମରଣ ରଖିବା ଉଚିତ ଯେ, ଭାରତରେ ସିନ୍ଧୁ-ସଭ୍ୟତାର ବିକାଶ ଘଟିବା ପୂର୍ବରୁ ମିଶର, କ୍ରୀଟ, ମେସୋପୋଟାମିଆ, ସିରିଆ ଓ ପେର୍ସିଆ ପ୍ରଭୃତି ସ୍ଥାନରେ ସଭ୍ୟତାର ବିକାଶ ଘଟିଥିଲେ ମଧ୍ୟ ସିନ୍ଧୁ ଉପତ୍ୟକା ଅଞ୍ଚଳରେ ବିକାଶ ଲାଭ କରିଥିବା ଏହି ଆଦ୍ୟ ଭାରତୀୟ ସଭ୍ୟତାର କେତେକ ବୈଶିଷ୍ଟ୍ୟ ଓ ସ୍ୱାତନ୍ତ୍ର୍ୟରହିଛି, ଯଥା—

(୧) ତନ୍ତୁବାୟୀ ବସ୍ତ୍ରର ବ୍ୟବହାର ଆଗାମୀ ଦୁଇ ସହସ୍ର ବର୍ଷ ପର୍ଯ୍ୟନ୍ତ ପାଶ୍ଚାତ୍ୟ ସଭ୍ୟତାରେ ଘଟି ନ ଥିଲା ।



ମହେଞ୍ଜୋଦାର ନଗର ସଭ୍ୟତାର ଭଗ୍ନାବଶେଷ



ମହେଞ୍ଜୋଦାରର ସ୍ନାନାଗାର

[ଧାଣ୍ଡ ପୃ. ୧୭]



ମହେଞ୍ଜୋଦାରୋର ସିଲ୍ ମୋହର



ମହେଞ୍ଜୋଦାରର ଅଳଙ୍କାର

[ପାର୍ଶ୍ୱ ପୃ. ୧୭]

(୨) ନର୍ଦ୍ଦମା ନିର୍ଗମନ ପ୍ରଣାଳୀ, ବିଳାସପୂର୍ଣ୍ଣ ପ୍ରସାଧନ ବ୍ୟବସ୍ଥାଦି ଉନ୍ନତ ସହର ସଭ୍ୟତା ଅନ୍ୟ କୁତ୍ରାପି ଦେଖା ଦେଇ ନ ଥିଲା ।

(୩) ଖୋଦନ ଓ ଅଙ୍କନ ଶିଳ୍ପକଳାର ବିକାଶ ଦୃଷ୍ଟିରୁ ତାହା ଅଦ୍ୱିତୀୟ ଥିଲା ।

(୪) ସର୍ବୋପରି, ଧର୍ମ କ୍ଷେତ୍ରରେ ଆଧୁନିକ ହିନ୍ଦୁଧର୍ମ ସହିତ ତାର ବହୁ ସାମଞ୍ଜସ୍ୟ ରହିଥିବା ଦୃଷ୍ଟିରୁ ଅନ୍ୟ ସଭ୍ୟତାରେ ବିକାଶ ଲାଭ କରିଥିବା ଧର୍ମ ଓ ସଂସ୍କୃତିଠାରୁ ତାହା ଭିନ୍ନ ଥିଲା ।

ହରପ୍ପାର ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ସମ୍ପର୍କରେ ନିକଟରେ ପ୍ରକାଶ ପାଇଥିବା ଏକ ଗ୍ରନ୍ଥରେ ଏଚ୍. ସି. ବେକ୍ ଆଠଟି ଉଦାହରଣ ଦର୍ଶାଇ ପ୍ରମାଣ କରିଛନ୍ତି ଯେ, ପାଶ୍ଚାତ୍ୟ ସଭ୍ୟତା ସହିତ ସିନ୍ଧୁ ସଭ୍ୟତାର ବିଶେଷ ସମ୍ପର୍କ ନ ଥିଲା । ବେକ୍ ସାହେବ ଯଥାର୍ଥରେ ଯୁକ୍ତି ବାଢ଼ିଛନ୍ତି ଯେ,

(୧) ସିନ୍ଧୁ-ସଭ୍ୟତା ମୁଖ୍ୟତଃ ସ୍ୱଫେନାଶ୍ମ (Steatite) ସଭ୍ୟତା । ହରପ୍ପା ଏହାର ଜନ୍ମସ୍ଥଳୀ । ମେସୋପୋଟାମିଆରେ ତାହା କ୍ୱଚିତ ଦେଖାଯାଏ ଏବଂ ମିଶରର ସ୍ୱଫେନାଶ୍ମଗୁଡ଼ିକର ଆକୃତି ହରପ୍ପାରେ ଆବିଷ୍କୃତ ସ୍ୱଫେନାଶ୍ମର ଆକୃତିଠାରୁ ଭିନ୍ନ ।

(୨) ହରପ୍ପାରେ ସ୍ୱଫେନାଶ୍ମର ବ୍ୟବହାର ପ୍ରଣାଳୀ ଅନ୍ୟାନ୍ୟ ସ୍ଥାନଠାରୁ ଭିନ୍ନ ।

(୩) ଉର୍ ପ୍ରଭୃତି ଅଞ୍ଚଳରେ ପ୍ରଚୁର ପରିମାଣରେ ବ୍ୟବହୃତ ହେଉଥିବା ବୈଦୁର୍ଯ୍ୟମଣିର ବ୍ୟବହାର ହରପ୍ପାରେ କ୍ୱଚିତ ପରିମାଣରେ ଦେଖିବାକୁ ମିଳେ ।

(୪) ମଣି, ମୁକ୍ତା, ସ୍ଫଟିକ ଓ ଆଗ୍ନେୟଶିଳା ଇତ୍ୟାଦି ମେସୋପୋଟାମିଆ ଓ ମିଶରରେ ଏକ ସାଧାରଣ ପଦାର୍ଥ ଥିଲାବେଳେ ହରପ୍ପାରେ ତାହା ଦେଖିବାକୁ ସ୍ୱଳ୍ପ ।

(୫) ଉର୍ ଅଞ୍ଚଳରେ ପ୍ରସାର ଲାଭ କରିଥିବା ଲମ୍ବା ଓ ଚେପଟା ବୈଦୁର୍ଯ୍ୟ ମଣି ହରପ୍ପାରେ ଆଦୌ ମିଳୁ ନ ଥିଲା ।

(୬) ମେସୋପୋଟାମିଆରେ ପ୍ରଚୁର ପରିମାଣରେ ମିଳୁଥିବା ଏକ ପ୍ରକାର ଓସାରିଆ ଓ ଚେପଟା କଣ୍ଠି (bead) ହରପ୍ପାରେ ଦେଖିବାକୁ ମିଳୁ ନ ଥିଲା ।

(୭) ଉତ୍ତରରେ ବ୍ୟବହୃତ ହେଉଥିବା କାନବଲା ହରପ୍ପାରେ ପ୍ରଚଳିତ ନ ଥିଲା ।

(୮) ମିଶର ଓ ମେସୋପୋଟାମିଆରେ ବ୍ୟବହୃତ ହେଉଥିବା ଏକ ପ୍ରକାର ନୀଳ ରଙ୍ଗର କଣ୍ଠି ହରପ୍ପାରେ ପ୍ରଚଳିତ ନ ଥିଲା ।

ଏସବୁ ଦିଗରୁ ବିଚାର କଲେ ପ୍ରମାଣିତ ହୁଏ ଯେ, ସିନ୍ଧୁ ସଭ୍ୟତା ଭାରତର ମୌଳିକ ସଭ୍ୟତା । ତାହା ମିଶର ବା ମେସୋପୋଟାମିଆ ସଭ୍ୟତା-ଦ୍ୱାରା ପ୍ରଭାବିତ ନୁହେଁ । ଏହାବ୍ୟତୀତ ଐତିହାସିକମାନେ ପ୍ରମାଣ କରି ସାରିଲେଣି ଯେ, ସିନ୍ଧୁ ସଭ୍ୟତା କେବଳ ଭାରତର ମୌଳିକ ସଭ୍ୟତା ନୁହେଁ; ପୃଥିବୀର ପ୍ରଥମ ସଭ୍ୟତା । ଦକ୍ଷିଣ ଭାରତର ନୀଳଗିରି ଅଞ୍ଚଳରେ ମିଳୁଥିବା ନୀଳରଙ୍ଗର ଏକ ପ୍ରକାର ପଥର ଉତ୍ତର ଅଞ୍ଚଳକୁ ନିଆଯାଇଥିବା ଅନୁମାନ କରାଯାଏ । ପୁଣି କୃଷିର ପ୍ରସାର, ହଳ, ଲଙ୍ଗଳ, ଶଗଡର ବ୍ୟବହାର ଓ ଗୃହପାଳିତ ପଶୁଙ୍କର ପରିପାଳନ ଇତ୍ୟାଦି ଏଠାରେ ପ୍ରଥମେ ଦେଖାଦେଇଥିଲା ବୋଲି ମତ ପ୍ରକାଶ ପାଏ । ବୈଦ ଆଗମନକାଳରେ ମକା କୃଷି ଫଳରେ ଜୀବପ୍ରାଣ 'ଖ'ର ଅଭାବରେ ପେଲାଗ୍ରା ରୋଗ ବ୍ୟାପିଥିଲା ବେଳେ ଭାରତରେ ଯବ, ବାଲି ଓ ଗହମ ଆହାର କରି ଲୋକମାନେ ସୁସ୍ଥ ସବଳ ରହିଥିଲେ । ସର୍ବୋପରି, ସିନ୍ଧୁ-ସଭ୍ୟତାର ପରଂପରା କେତେକାଂଶରେ ଅଦ୍ୟାବଧି ସୁରକ୍ଷିତ ହୋଇ ରହିଛି ଏବଂ ଯୁଗାବର୍ତ୍ତନର ତାଳେ ତାଳେ ପାଦ ମିଳାଇ ସେହି ଐତିହ୍ୟ ଏଯାବତ୍ ଜୀବନ୍ତ ରହି ପାରିଛି; କିନ୍ତୁ, ଅନ୍ୟ ପକ୍ଷରେ, ଆଧୁନିକଯୁଗର ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କର ଗବେଷଣା ପୂର୍ବରୁ ଗ୍ରୀକ୍, ମିଶର ବା ମେସୋପୋଟାମିଆବାସୀ ସେମାନଙ୍କ ପୂର୍ବପୁରୁଷଙ୍କର ସଭ୍ୟତା ଓ ସଂସ୍କୃତି ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲେ । ସେସବୁ ସଭ୍ୟତା ସେହି କାଳରେହିଁ ବିକାଶ ଲାଭ କରି ବିଲୁପ୍ତ ପ୍ରାପ୍ତ ହୋଇଥିଲା । ଆଧୁନିକ ଗବେଷଣା ବ୍ୟତୀତ ତାର ଅସ୍ତିତ୍ୱର ସନ୍ଧି ମିଳିଥାନ୍ତା । ଅନ୍ୟ ଭାଷାରେ ପ୍ରକାଶ କଲେ, ଆଦ୍ୟ ଭାରତୀୟ ସଭ୍ୟତା ଅତି ପ୍ରାଚୀନ, ଚିର ପ୍ରବାହମାନ; ଗ୍ରୀକ, ମିଶର ଓ ମେସୋପୋଟାମିଆ ସଭ୍ୟତା ଆଧୁନିକ ଯୁଗର ଗୋଟିଏ ଗୋଟିଏ ଆବିଷ୍କାର ମାତ୍ର । ସୁତରାଂ ଏସବୁ କାରଣରୁ ଭାରତର ପଞ୍ଜାବଠାରେ ପ୍ରକୃତ ପୃଥିବୀ-ସଭ୍ୟତାର ଶୁଭାରମ୍ଭ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ଜାତି ଓ ଉପଜାତି

ତେବେ ପ୍ରାଗୈତିହାସିକ ସଭ୍ୟତା ସହିତ ସଂସ୍କୃତିର ଯୋଗାଯୋଗ କରିବାକୁ ଗଲେ ଆମ୍ଭେ ତଦାନୀନ୍ତନ ଜନସମାଜର ଏକ ରୂପରେଖ ଅଙ୍କନ କରିବାକୁ ପଡ଼ିବ, କାରଣ ପ୍ରତ୍ନତତ୍ତ୍ୱ ଓ ନୃତତ୍ତ୍ୱ – ଉଭୟର ବିକାଶଦ୍ୱାରା ହିଁ ସଭ୍ୟତା ଓ ସଂସ୍କୃତିର ବିକାଶ ସାଧିତ ହୋଇଥାଏ । ଐତିହାସିକମାନେ ସିଆଲ୍‌କୋଟ, ଆଗ୍ରା, ବେଲୁଚିସ୍ଥାନ, ମହେଞ୍ଜୋଦାରୋ ପ୍ରଭୃତି ଅଞ୍ଚଳର ଖପୁରୀମାନ ଅନୁଧ୍ୟାନ କରି (୪) ସିନ୍ଧୁ ଉପକୂଳ ଅଞ୍ଚଳରେ ବିଭିନ୍ନ ପ୍ରକାର ଲୋକ ବାସକରୁଥିଲେ ବୋଲି ମତ ବ୍ୟକ୍ତ କରିଛନ୍ତି । ସେମାନଙ୍କ ମତରେ ନିଗ୍ରୋମାନେ ପ୍ରଥମେ ଭାରତରେ ଅବସ୍ଥାନ କରୁଥିଲେ । ଅଣ୍ଡାମାନ ଅଞ୍ଚଳରେ ବର୍ତ୍ତମାନ ସୁଦ୍ଧା ସେମାନଙ୍କର ବଂଶଧରମାନେ ଅଛନ୍ତି । ସେମାନେ ଧନୁଶରର ଉଦ୍‌ଭାବନ କରିଥିଲେ ।

ନିଗ୍ରୋମାନଙ୍କ ପରେ ପରେ କୃଷ୍ଣବର୍ଣ୍ଣ, ସୁଦୀର୍ଘମସ୍ତକ ଅଷ୍ଟ୍ରେଲଏଡ୍‌ମାନେ ଭାରତକୁ ଆସିବାର ଜଣାଯାଏ । ତେବେ ସେମାନଙ୍କ ଉତ୍ପତ୍ତି ଅଷ୍ଟ୍ରେଲିଆରୁ ନ ହୋଇ ପାଲେଷ୍ଟାଇନରୁ ହୋଇଥିବା ତଥ୍ୟ ପରେ ପ୍ରକାଶ ପାଇଛି । ଭାରତର ବିଭିନ୍ନ ଅଞ୍ଚଳରେ ବାସକରୁଥିବା କୃଷ୍ଣବର୍ଣ୍ଣ ଜାତି ଓ ଉପଜାତି-ଗୁଡ଼ିକ ଏମାନଙ୍କର ଦାୟାଦ ବୋଲି ଅନୁମାନ କରାଯାଏ । ଏମାନଙ୍କଦ୍ୱାରା ନୂତନ ପ୍ରସ୍ତର ଯୁଗୀୟ ସଂସ୍କୃତି ପ୍ରବର୍ତ୍ତିତ ହୋଇଥିଲା । ତାଙ୍କର କଥିତ ଭାଷା 'ମୁଣ୍ଡା' ନାମରେ ପରିଚିତ ଏବଂ ତାହା ହିଁ ଭାରତର ପ୍ରଥମ ଭାଷା ରୂପେ ଗୃହୀତ । ମୁଣ୍ଡା ଭାଷାଭାଷୀ କୋହ୍ଲ, ସାନ୍ତାଳ, କୁରୁମ୍ବ, ଭିଲ, କରଓ୍ୱା, କର୍କୁ ପ୍ରଭୃତି ଉପଜାତି ଏବେ ମଧ୍ୟ ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଓ ଓଡ଼ିଶାର କେତେକ ଅଞ୍ଚଳରେ ଦେଖିବାକୁ ମିଳନ୍ତି ।

ଏହାପରେ ମେଲାନେଶିଆର (୫) ଲୋକମାନେ ଭାରତରେ ପଦାର୍ପଣ କରିଥିବା ଜଣାଯାଏ । ପାଲେଷ୍ଟାଇନରୁ ଆସିଥିବା ଅଷ୍ଟ୍ରେଲଏଡ୍ ଜାତି ଓ ନିଗ୍ରୋ ଉଭୟଙ୍କର ଲକ୍ଷଣ ଏମାନଙ୍କଠାରେ ରହିଥିଲା । ଏମାନେ ଆସାମ, ମାଲ୍‌ବାର, ନିକୋବର ଅଞ୍ଚଳରେ ରହୁଥିବାର ଜଣାଯାଏ । ଏମାନେ ଶବସଂସ୍କାର ଓ

---

(୪) ଖପୁରିର ଆକାର ଓ ଆୟତନ ତଥା ନାସାର ଆକାର ଓ ଆୟତନ ମାପକରି ଐତିହାସିକମାନେ ସିଦ୍ଧାନ୍ତରେ ଉପନୀତ ହୋଇଥାନ୍ତି ।

(୫) ମେଲାନେଶିଆ ଅଷ୍ଟ୍ରେଲିଆର ଏକ ଦ୍ୱୀପ ।

ନୌକାବ୍ୟବହାର ଦିଗରେ ନୂତନ ପଦକ୍ଷେପ ନେଇଥିଲେ । ଏମାନଙ୍କ ବ୍ୟତୀତ, ଆସାମର ଖାସୀ ପାହାଡ଼, ନିକୋବର ଦ୍ୱୀପ ଓ ବର୍ମାର କେତେକ ପାହାଡ଼ିଆ ଅଞ୍ଚଳରେ ମଙ୍ଗୋଲୀୟମାନେ ବାସ କରୁଥିଲେ । ସେମାନେ ଚୀନ ଓ ତିବ୍ବତରୁ ଆସି ଯଥାକ୍ରମେ ବ୍ରହ୍ମଦେଶ ଓ ବ୍ରହ୍ମପୁତ୍ର ଉପତ୍ୟକାରେ ପ୍ରବେଶ କରିଥିଲେ । 'ମଙ୍ଖେର' ନାମକ ଏକ ଭାଷା ଥିଲା ତାଙ୍କର କଥିତ ଭାଷା ।

କାଳକ୍ରମେ ଏମାନଙ୍କ ପରେ ଖ୍ରୀ: ପୂ: ୪୦୦୦ ବେଳକୁ ଭୂମଧ୍ୟ ସାଗର ଅଞ୍ଚଳରୁ ଦଳ ଦଳ ହୋଇ ବହୁଲୋକ ଭାରତରେ ପ୍ରବେଶ କରିଥିବାର ଜଣାଯାଏ । ପ୍ରଥମେ ସେମାନେ ଗଙ୍ଗାନଦୀ ଉପକୂଳରେ ବସତି ସ୍ଥାପନ କରିଥିଲେ ଏବଂ ତାଙ୍କ ପୂର୍ବରୁ ଏଠାକୁ ଆସିଥିବା ଅଷ୍ଟ୍ରେଲୀୟମାନଙ୍କ ସଂସ୍ପର୍ଶରେ ଆସି ଭାରତରେ ସୁମେର, ଆର୍ମେନୀୟ ଓ ମେସୋପୋଟେମୀୟ ସଂସ୍କୃତିର ପ୍ରସାର ଘଟାଇଥିଲେ । ପ୍ରାଗୈତିହାସିକ ଯୁଗୀୟ ସଭ୍ୟତାର ନିର୍ମାତା ରୂପେ ସେମାନଙ୍କର ଯଥେଷ୍ଟ ଅବଦାନ ରହିଅଛି । ସେମାନେ ପ୍ରଥମେ ଏଠାରେ ସ୍ୱାସ୍ଥ୍ୟରକ୍ଷା, କଳାର ବିକାଶ ଓ ସୁଖମୟ ଜୀବନଯାପନ ଧାରଣାର ଭିତ୍ତି-ସ୍ଥାପନ କରିଥିଲେ । ସେମାନେ ଦ୍ରାବିଡ଼ ଭାଷାଭାଷୀ ଥିଲେ ।

ସୁତରାଂ ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ମେସୋପୋଟାମିଆ ଓ ଆର୍ମେନିଆ ଅଞ୍ଚଳର ଦ୍ରାବିଡ଼ ଭାଷାଭାଷୀମାନଙ୍କ ସହିତ ସିନ୍ଧୁ ସଭ୍ୟତାର ସଂପର୍କ ରହିଥିଲା । ସେତେବେଳେ ଆର୍ମେନିଆ ଓ ଭୂମଧ୍ୟ ସାଗର ଅଞ୍ଚଳରୁ ଆସିଥିବା ଲୋକମାନଙ୍କଦ୍ୱାରା ଭାରତରେ ଯେଉଁ ପ୍ରାଚ୍ୟ ସଭ୍ୟତା ଓ ସଂସ୍କୃତିର ପ୍ରସାର ଘଟିଥିଲା, ତାକୁ ଅନେକାଂଶରେ ପ୍ରାକ୍ ବୈଦିକ ଯୁଗୀୟ ହିନ୍ଦୁ ସଭ୍ୟତା ଓ ସଂସ୍କୃତି ବୋଲି କୁହାଯାଇପାରେ, କାରଣ ପରବର୍ତ୍ତୀ ବୈଦିକ ଯୁଗୀୟ ହିନ୍ଦୁଧର୍ମ, ସଭ୍ୟତା ଓ ସଂସ୍କୃତି ସହିତ ତାର ବହୁତ ସାମଞ୍ଜସ୍ୟ ରହିଅଛି । ଏଣୁ ଖ୍ରୀ: ପୂ: ୨୦୦୦ରେ ଆର୍ଯ୍ୟମାନଙ୍କ ଆଗମନ ପୂର୍ବରୁ ଭାରତରେ ସଭ୍ୟତାର ବିକାଶ ଘଟି ନଥିଲା ବୋଲି କହିବା ଅଯାଥାର୍ଥ ହେବ । ଆର୍ଯ୍ୟମାନଙ୍କ ଆଗମନ ପୂର୍ବରୁ ଭାରତର ସିନ୍ଧୁ ଉପତ୍ୟକାରେ ଏପରିକି ଗଙ୍ଗା ଉପତ୍ୟକାରେ ମଧ୍ୟ, ଯେଉଁ ସଭ୍ୟତାର ବିକାଶ ଘଟିଥିଲା, ତାହା ମେସୋପୋଟାମିଆ ଓ ମିଶରୀୟ ସଭ୍ୟତା ସହିତ ତୁଳନୀୟ । କେବଳ ସେତିକି ନୁହେଁ, କେତେକ ଦୃଷ୍ଟିରୁ ପ୍ରାଚୀନ ଭାରତୀୟ ସଭ୍ୟତା ଗ୍ରୀକ ଓ ମିଶରୀୟ ସଭ୍ୟତାଠାରୁ ଅଧିକ ଶ୍ରେଷ୍ଠ ଓ ଉନ୍ନତତର ମଧ୍ୟ ।

ପ୍ରାଚୀନ ଭାରତୀୟ ସଭ୍ୟତାର ମାନବିକତା ଓ ମହାମନ୍ୟତା ପୃଥିବୀର ଅନ୍ୟ କୌଣସି ପ୍ରଚୀନ ସଭ୍ୟତାରେ ବିରଳ । ପ୍ରାଚୀନ କାଳରେ ଗ୍ରୀସ୍, ମିଶର ଓ ସିରିଆରେ ଦମନ, ଅତ୍ୟାଚାର ଓ ଦାସତ୍ୱର ବିଭୀଷିକା ବ୍ୟାପିଥିଲା ବେଳେ, ତଦାନୀନ୍ତନ ଭାରତରେ ସୁଖ, ଶାନ୍ତି, ଆତ୍ମସନ୍ତୋଷ ଓ ଧର୍ମଭୀରୁତା ବିରାଜୁଥିଲା । ଏଥିପାଇଁ ଜନୈକ ପାଶ୍ଚାତ୍ୟ ଦାର୍ଶନିକ * 'ପ୍ରାଚୀନ ଭାରତ ତ୍ୟାଗମୟ ଜୀବନର ଏକ ପୀଠସ୍ଥଳ ଥିଲା' ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି ।

ତେବେ ଆର୍ଯ୍ୟମାନଙ୍କ ଆଗମନ ପରେ ଭାରତରେ ବୈଦିକ ସଭ୍ୟତାର ବିକାଶ ସାଧିତ ହୋଇଛି ଏବଂ ତାହା ବିଧିବଦ୍ଧ ଭାବେ ଭାରତୀୟ ଇତିହାସରେ ଲିପିବଦ୍ଧ ହୋଇ ରହିଛି ।

---

* Dr. Albert Schweitzer "Indian Thought and its Development"

# ଦ୍ୱିତୀୟ ପର୍ଯ୍ୟାୟ
# ବୈଦିକ ଯୁଗ (କ)

## ପୂର୍ବକାଳ

ଭାରତୀୟ ଇତିହାସକୁ ସାଧାରଣତଃ ଆର୍ଯ୍ୟମାନଙ୍କର ଇତିହାସ ରୂପେ ଗ୍ରହଣ କରାଯାଇଥାଏ, କାରଣ ଭାରତର ଇତିହାସରେ ଗୃତସହସ୍ର ବର୍ଷ କାଳରେ ଆର୍ଯ୍ୟ, ବୌଦ୍ଧ, ମୁସଲମାନ ଓ ଖୀରସ୍ତାନ ବା ବ୍ରିଟିଶ ଗୃଟେଷ୍ଟି ଜାତିର ଆବର୍ଭାବ ଘଟିବା ଫଳରେ ତାର ସାମାଜକ, ସାଂସ୍କୃତିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା ସେମାନଙ୍କ ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇଛି ଏବଂ ଏସବୁ ପ୍ରଭାବଶାଳୀ ଐତିହାସିକ ନମବକାଶ ମୂଳରେ ଆର୍ଯ୍ୟମାନଙ୍କର ଆଦ୍ୟ ଅବଦାନ ରହିଛି । ଆର୍ଯ୍ୟମାନଙ୍କର ଭାଷା, ଧର୍ମ ଓ ସଭ୍ୟତା ସଂପର୍କରେ ଋଗ୍‌ବେଦରୁ ପର୍ଯ୍ୟାପ୍ତ ପରିଚୟ ମିଳେ । ଭାଷାତତ୍ତ୍ୱବିଦ୍‌ମାନେ ପ୍ରମାଣ କରିସାରିଛନ୍ତି ଯେ ଋଗ୍‌ବେଦର ଭାଷା ସହିତ ପାର୍ଶି, ଗ୍ରୀକ୍, ଲାଟିନ୍ ଓ ଇଂରାଜୀ ଭାଷାର ସାମଞ୍ଜସ୍ୟ ରହିଛି, ସତେ ଯେପରି ଏ ସମସ୍ତ ଭାଷାଭାଷୀ ବ୍ୟକ୍ତି ଏକ ବିରାଟ ବଂଶବୃକ୍ଷର ଦାୟାଦ ।

**ଆର୍ଯ୍ୟମାନଙ୍କର ବସତିସ୍ଥାପନ—**

ଡକ୍ଟର୍ ଗିଲ୍‌ସ ବିଭିନ୍ନ ଐତିହାସିକ ତଥ୍ୟର ଆଶ୍ରୟରେ ଆର୍ଯ୍ୟମାନଙ୍କର ମୂଳ ବାସସ୍ଥାନ ନିରୂପଣ କରିବାକୁ ଯାଇ ନିମ୍ନଲିଖିତ କେତୋଟି ସ୍ଥାନ ବିଷୟରେ ସୂଚନା ଦେଇଛନ୍ତି, ଯଥା—(୧) ଭାରତ (୨) ପାମିର (୩) ୟୁରୋପର ଉତ୍ତରାଞ୍ଚଳ (୪) ରୁଷିଆର ଦକ୍ଷିଣାଞ୍ଚଳ ଓ (୫) ସୁମେରୁ-ମଣ୍ଡଳୀୟ ଅଞ୍ଚଳ ତଥା ଅଷ୍ଟ୍ରିଆ, ବୋହେମିଆ ଓ ହଙ୍ଗେରୀ ପ୍ରଭୃତି । ଭାରତଭିନ୍ନ ଅନ୍ୟାନ୍ୟ ସମସ୍ତ ସ୍ଥାନରୁ ଭାରତକୁ ଆସିଥିବା ଆର୍ଯ୍ୟମାନେ ପ୍ରଥମେ ଡାନ୍ୟୁବ୍ ନଦୀ ଦେଇ ଓ୍ୱାଲାଚିଆ ଆସି ସେଠାରୁ ଦକ୍ଷିଣାଭିମୁଖେ ଯାତ୍ରାକରି ବସ୍‌ଫରାସ ଓ ଡାର୍ଡାନେଲ୍‌ସ କେନାଲ ପାର ହୋଇ ଏସିଆ ମାଇ-ନରରେ ପଦାର୍ପଣ କରିଥିବେ ଏବଂ ତାହା ପରେ ୟୁଫ୍ରେଟିସ୍ ଓ ଟାଇଗ୍ରିସ୍ ଉପକୂଳ ସ୍ପର୍ଶକରି ପେର୍ଶିଆରେ ପହଞ୍ଚିଥିବେ ବୋଲି ଅନୁମାନ କରାଯାଏ । ସେହି ପେର୍ଶିଆଠାରେ ବାସ କରୁଥିବା ଆର୍ଯ୍ୟମାନେ ଇରାନ୍ ଓ ଭାରତ-ବାସୀଙ୍କର ପ୍ରକୃତ ପୂର୍ବପୁରୁଷ ବୋଲି ଐତିହାସିକମାନେ ସିଦ୍ଧାନ୍ତରେ ଉପନୀତ

ହୋଇ ସାରିଲେଣି, କାରଣ ଗ୍ରୀକ୍, ଲାଟିନ୍ ଓ ଅନ୍ୟାନ୍ୟ ପ୍ରାଚୀନ ଗ୍ରନ୍ଥ ଅପେକ୍ଷା ଇରାଣୀ ଧର୍ମଗ୍ରନ୍ଥ ଅବେସ୍ତା (Avesta) ଓ ଋଗ୍‌ବେଦର ଭାଷା ଓ ଭାବରେ ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ପୁଣି ଋଗ୍‌ବେଦ ଖ୍ରୀଷ୍ଟପୂର୍ବ ପ୍ରାୟ ଅଢ଼େଇ ହଜାର ବର୍ଷର ରଚନା ବୋଲି ମଧ୍ୟ ପ୍ରମାଣିତ ହୋଇଗଲାଣି । ଏଣୁ ଋଗ୍‌ବେଦ କେବଳ ଭାରତବାସୀ ଆର୍ଯ୍ୟମାନଙ୍କର ସଭ୍ୟତା ଓ ସଂସ୍କୃତିର ପ୍ରାମାଣିକ ଗ୍ରନ୍ଥ ନୁହେଁ, ସମଗ୍ର ଆର୍ଯ୍ୟଜାତିର ସାଂସ୍କୃତିକ, ସାମାଜିକ ଓ ରାଜନୀତିକ ଜୀବନର ଏକ ଜ୍ୱଳନ୍ତ ଆଖ୍ୟାନ । ଆର୍ଯ୍ୟମାନଙ୍କର ଭାରତ ଆଗମନ କାଳ ସମ୍ପର୍କରେ ଋଗ୍‌ବେଦରେ କୌଣସି ସୂଚନା ନଥିଲେ ମଧ୍ୟ ଏସିଆ ମାଇନରଠାରେ ଆବିଷ୍କୃତ ଖ୍ରୀଷ୍ଟପୂର୍ବ ୧୪୦୦ ସମୟର କେତୋଟି ଶିଳା ଲେଖରୁ ପ୍ରମାଣିତ ହୁଏ ଯେ ଉକ୍ତ ସମୟର ବହୁ ପୂର୍ବରୁ ଭାରତରେ ଆର୍ଯ୍ୟମାନଙ୍କର ବସତି ସ୍ଥାପିତ ହୋଇ ସାରିଥିଲା ଏବଂ ସେତେବେଳେ ଋଗ୍‌ବେଦୀୟ ସଭ୍ୟତା ଭାରତୀୟ ଜନଜୀବନକୁ ପ୍ରତ୍ୟେକ କ୍ଷେତ୍ରରେ ଖୁବ୍ ଉନ୍ନତ ଓ ସମୃଦ୍ଧ କରି ତୋଳିଥିଲା ।

ଆଦ୍ୟଯୁଗୀୟ ବୈଦିକ ଭାରତର ବିଶାଳ ଆୟତନ କାବୁଲ, ଗୋମତୀ, ସିନ୍ଧୁ, ସରସ୍ୱତୀ, ଝେଲମ୍, ଶତଦ୍ରୁ, ଗଙ୍ଗା, ଯମୁନା ପ୍ରଭୃତିର ଉପକୂଳ ଅଞ୍ଚଳ ତଥା ପୂର୍ବ ଆଫଗାନିସ୍ଥାନଠାରୁ ଗଙ୍ଗା ଉପତ୍ୟକା ପର୍ଯ୍ୟନ୍ତ ବିସ୍ତୃତ ଥିବା ଜଣାଯାଏ । ତେବେ ଏ ବିଶାଳ ଭୂଖଣ୍ଡରେ କେବଳ ଆର୍ଯ୍ୟମାନେ ହିଁ ବାସକରୁଥିଲେ ବୋଲି ଭାବିବା ଠିକ୍ ନୁହେଁ, ସେଠାରେ ବହୁ ଅନାର୍ଯ୍ୟମାନେ ମଧ୍ୟ ବାସକରୁଥିଲେ ।

## ଆର୍ଯ୍ୟ ଅନାର୍ଯ୍ୟ ଭେଦଭାବ—

ସେତେବେଳେ ଏହି ଆର୍ଯ୍ୟ ଓ ଅନାର୍ଯ୍ୟମାନଙ୍କ ମଧ୍ୟରେ ନାନା ମତଭେଦ ରହିଥିବା ଓ ସଂଘର୍ଷ ଘଟୁଥିବା ବିଷୟରେ ଋଗ୍‌ବେଦରେ ବିସ୍ତୃତ ଭାବରେ ବର୍ଣ୍ଣିତ ହୋଇଅଛି । ଅନାର୍ଯ୍ୟମାନେ ଦାସ, ଦସ୍ୟୁ ବା ଅସୁର ନାମରେ ଅଭିହିତ ହେଉଥିଲେ ଏବଂ ଆର୍ଯ୍ୟମାନେ ସେମାନଙ୍କୁ ବଣ ଜଙ୍ଗଲକୁ ତଡ଼ି ଦେଉଥିଲେ କିମ୍ବା ତାଙ୍କର ଦାସ, ଦାସୀ ରୂପେ ନିଯୁକ୍ତ କରୁଥିଲେ ।

ଆର୍ଯ୍ୟ ଓ ଅନାର୍ଯ୍ୟମାନଙ୍କ ମଧ୍ୟରେ ଥିବା ଭେଦଭାବର କାରଣ ଉଭୟ ସାଂସ୍କୃତିକ ଓ ଶାରୀରିକ । ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ ସାଧାରଣତଃ ଅନାସା, ପ୍ରଶସ୍ତନାସା, ଅଦେବାୟୁ, ଅବ୍ରାହ୍ମଣ, ଅକର୍ମଣ୍ୟ, ଅଜ୍ଞାନ, ଅବ୍ରତ, ଅନାବ୍ରତ ଓ ଶିଷ୍ଣଦେବା ବା ଲିଙ୍ଗପୂଜକ ବୋଲି ଘୃଣା କରୁଥିଲେ । ତଥାପି

ଅନାର୍ଯ୍ୟମାନେ ଆର୍ଯ୍ୟମାନଙ୍କ ଘରେ ଦାସଦାସୀ ରୂପେ ରହିବା ଫଳରେ ସ୍ଥଳ ବିଶେଷରେ ଉଭୟ ଜାତିମଧ୍ୟରେ କେତେକ ପରିମାଣରେ ମତଭେଦ ଦୂର ହେଉଥିଲା ଏବଂ କ୍ରମେ କ୍ରମେ କ୍ୱଚିତ୍ ଭାବରେ ସେମାନଙ୍କ ମଧ୍ୟରେ ଅନ୍ତର୍ବିବାହ ମଧ୍ୟ ଦେଖାଦେଇ ଥିଲା । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ ଘୃଣା କରିବା ମୂଳରେ ତାଙ୍କର କ୍ଷମତା ବିସ୍ତାର ଲାଳସା ବ୍ୟତୀତ ଅନ୍ୟ କିଛି କାରଣ ନ ଥିଲା । ଏଣୁ ଯେଉଁମାନେ ତାଙ୍କୁ ମାନି ତାଙ୍କ ଅଧୀନରେ ରହୁଥିଲେ, ସେମାନଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରିବା ପର୍ଯ୍ୟନ୍ତ ସେ ଭୁଲି ଯାଉଥିଲେ । ଡକ୍ଟର ରାଧାକୁମୁଦ ମୁଖାର୍ଜୀ ଯଥାର୍ଥରେ ମତବ୍ୟକ୍ତ କରିଛନ୍ତି ଯେ, ଭାରତରେ ଆର୍ଯ୍ୟମାନଙ୍କର ଲକ୍ଷ୍ୟ ଥିଲା ତ୍ରିବିଧ— ବିଜୟ, କ୍ଷମତାବିସ୍ତାର ଓ ସଭ୍ୟତାପ୍ରସାର ।

**କ୍ଷମତା ସଂଘର୍ଷ—**

ଋଗ୍‌ବେଦୀୟ ଭାରତରେ ରାଜନୈତିକ ଏକୀକରଣ ନିମନ୍ତେ ଭାରତ-ସମ୍ରାଟ ସୁଦାସଙ୍କ ବିରୋଧରେ 'ଦଶରାଜ୍ଞ'ଙ୍କର ସମର ବିଶେଷ ଉଲ୍ଲେଖଯୋଗ୍ୟ । ବ୍ରହ୍ମାବର୍ତ୍ତର ଦଶଜଣ ରାଜା ଉତ୍ତର-ପଶ୍ଚିମାଞ୍ଚଳର ଅଧିବାସୀମାନଙ୍କର ରାଜା ସୁଦାସଙ୍କୁ ପରାଭୂତ କରିବା ଉଦ୍ଦେଶ୍ୟରେ ସେହି ଐତିହାସିକ ମହାସମର ସଙ୍ଗଠନ କରିଥିଲେ । ସେହି ମହାସମରରେ ଆଧୁନିକ କାଫିରସ୍ଥାନ, ଆଫ-ଗାନିସ୍ଥାନ, ପାକିସ୍ଥାନ ପ୍ରଭୃତି ଅଞ୍ଚଳର ଉଭୟ ଆର୍ଯ୍ୟ ଓ ଅନାର୍ଯ୍ୟମାନେ ଯୋଗ ଦେଇଥିବାର ଜଣାଯାଏ । ସେତେବେଳେ ମୁନି, ଋଷିମାନେ ମଧ୍ୟ ପୁରୋହିତ ବା ପୁରୋଧା ଭାବେ ଯୁଦ୍ଧରେ ଅଂଶଗ୍ରହଣ କରୁଥିଲେ । ଏହି 'ଦଶରାଜ୍ଞ' ସମରରେ ସୁଦାସଙ୍କ ପକ୍ଷରେ ରହିଥିଲେ ବଶିଷ୍ଠ ଏବଂ ଅନ୍ୟ-ମାନଙ୍କର ଉପଦେଷ୍ଟା ଥିଲେ ବିଶ୍ୱାମିତ୍ର । ଏ ମହାଯୁଦ୍ଧରେ ସୁଦାସ ବିଜୟୀ ହୋଇଥିଲେ ଏବଂ କିଛିକାଳ ସମଗ୍ର ଋଗ୍‌ବେଦୀୟ ଭାରତରେ ଅଖଣ୍ଡ ରାଜତ୍ୱ ବିସ୍ତାର କରିଥିଲେ ।

ଏହାପରେ ଅନାର୍ଯ୍ୟମାନଙ୍କ ଉପରେ ଆର୍ଯ୍ୟମାନଙ୍କର ପ୍ରତିପତ୍ତି ବିସ୍ତାର ଘଟିବା ସଙ୍ଗେ ସଙ୍ଗେ ଆର୍ଯ୍ୟମାନଙ୍କ ମଧ୍ୟରେ ବି କ୍ଷମତା-ସଂଘର୍ଷ ଲାଗିଥିଲା ଏବଂ କାଳକ୍ରମେ ବୈଦିକ ଭାରତରେ ରାଜନୈତିକ ଏକୀକରଣ ତଥା ସାର୍ବଭୌମ ଶାସନର ଭିତ୍ତି ସ୍ଥାପନ ସମ୍ଭବ ହୋଇଥିଲା ।

## ଆର୍ଯ୍ୟ ସଭ୍ୟତା

ବୈଦିକ ଯୁଗର ପ୍ରଥମାବସ୍ଥାରେ ଋଗ୍‌ବେଦୀୟ ଭାରତର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଜୀବନ ଖୁବ୍ ଉନ୍ନତ ସ୍ତରରେ ପହଞ୍ଚିଥିଲା ଏବଂ ନ୍ୟାୟ, ଧର୍ମ, ଶିଳ୍ପ, ବାଣିଜ୍ୟ, କଳା, ସ୍ଥାପତ୍ୟ, ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ସନ୍ତୋଷଜନକ ଅଗ୍ରଗତି ଘଟିଥିଲା ।

## ସାମାଜିକ ଜୀବନ

ବୈଦିକ ସାମାଜିକ ଜୀବନ ଅତି ସୁନ୍ଦର, ସଂଯତ ଓ ସୁସଂଗଠିତ ଥିଲା । ବୈଦିକ ପରିବାର ଥିଲା ଏକାନ୍ନବର୍ତ୍ତୀ ପରିବାର ଏବଂ ସମାଜର ମୂଳ ପୀଠ । ତଦାନୀନ୍ତନ ପରିବାରରେ ବୟୋଜ୍ୟେଷ୍ଠ ବ୍ୟକ୍ତି ଥିଲେ ଗୃହପତି ବା ଗୃହକର୍ତ୍ତା ଏବଂ ଗୃହକର୍ତ୍ତାର ପତ୍ନୀ ଗୃହକର୍ତ୍ତ୍ରୀ ରୂପେ ପରିଚିତା ଥିଲା । ଅର୍ଥାତ୍ ବୟୋଜ୍ୟେଷ୍ଠ ଦମ୍ପତି ଥିଲେ ପରିବାରର ସର୍ବେସର୍ବା । ଗୃହକର୍ତ୍ତାମାନେ ଅନ୍ୟମାନଙ୍କୁ ଦୟା, କ୍ଷମା, ସ୍ନେହ ଓ ଆଦରର ସହିତ ଲାଳନପାଳନ କରିବା ସଙ୍ଗେ ସଙ୍ଗେ ଆବଶ୍ୟକୀୟ ସ୍ଥଳେ କଠୋର ଶାସନ ମଧ୍ୟ କରୁଥିଲେ ।

ପରିବାର ପୈତୃକ ପୁରୁଷାନୁକ୍ରମିକ ଥିବାରୁ ସାଧାରଣତଃ ପୁତ୍ର ସନ୍ତାନର ଆଗମନକୁ ସ୍ୱାଗତ କରାଯାଉଥିଲା ଏବଂ ଯେଉଁ ଦମ୍ପତି ଯେତେ ଅଧିକ ସଂଖ୍ୟକ ପୁତ୍ରର ପିତାମାତା ହୋଇପାରୁଥିଲେ ସେତେ ଅଧିକ ଆନନ୍ଦ ଲାଭ କରୁଥିଲେ । ଅବଶ୍ୟ କନ୍ୟା ଜନ୍ମକୁ ଘୃଣା ବା ହତାଦର କରାଯାଉ ନ ଥିଲା । ସେମାନେ ବିବାହ କରି ଶ୍ୱଶୁରାଳୟକୁ ଚାଲିଯିବା ପର୍ଯ୍ୟନ୍ତ ଖୁବ୍ ସ୍ନେହ ଆଦରର ସହିତ ଲାଳିତାପାଳିତା ହେଉଥିଲେ । କନ୍ୟାମାନେ ସାଧାରଣତଃ ସ୍ୱାଧୀନା ନ ଥିଲେ । ସେମାନେ ଜୀବନ ସାରା ପିତା, ଭ୍ରାତା, ସ୍ୱାମୀ ଓ ସନ୍ତାନଙ୍କ ଉପରେ ନିର୍ଭର କରୁଥିଲେ । କିନ୍ତୁ ସେହି ସମାଜରେ ବାଲ୍ୟାବସ୍ଥାରେ ସନ୍ତାନ ସନ୍ତତିମାନଙ୍କୁ ଅବାଧ ସ୍ୱାଧୀନତା ମିଳୁଥିଲା ଏବଂ 'ବେଇଲ କଲେ ପିଲାକୁ ଖେଳ' (spare the rod and spoil the child) ମତ ପ୍ରଚଳିତ ନଥିଲା । ପରିବାରଜନ ଶିଶୁମାନଙ୍କୁ ଅତି ସ୍ନେହ ଓ ଆଦରର ସହ ପାଳନ କରୁଥିଲେ । ଜନୈକ ବିଶିଷ୍ଟ ସମାଲୋଚକଙ୍କ ଭାଷାରେ, "ପ୍ରାଚୀନ ଭାରତର ଶ୍ରେଷ୍ଠ ଶିଶୁମାନେ ଯେଉଁଭଳି ସ୍ନେହ ସୌହାର୍ଦ୍ଦର ସହ ପାଳିତ

ହେଉଥିଲେ ଏବଂ ତାଙ୍କୁ ଯେଉଁ ପରିମାଣରେ ସ୍ୱାଧୀନତା ଉପଭୋଗ କରିବାକୁ ଦିଆଯାଉଥିଲା, ତାହା ଆଧୁନିକ ଯୁଗରେ ମଧ୍ୟ ଖୁବ୍ କ୍ୱଚିତ ପିଲା ଉପଭୋଗ କରୁଛନ୍ତି ।" *

ବୈଦିକ ସମାଜରେ ଗୃହକର୍ତ୍ତାମାନେ କନ୍ୟା ପ୍ରାପ୍ତବୟସ୍କା ହେବା ସଙ୍ଗେ ସଙ୍ଗେ ଉପଯୁକ୍ତ ପାତ୍ର ଠିକ୍ କରି ତାର ବିବାହ କରାଇ ଦେଉଥିଲେ । ତେବେ ବିବାହ ପୂର୍ବରୁ କନ୍ୟାର ମତାମତ ନିଆ ଯାଉଥିଲା । ସାଧାରଣତଃ ସେତେବେଳେ ବାଲ୍ୟବିବାହ କିମ୍ବା ବିଧବାବିବାହ ପ୍ରଚଳିତ ନ ଥିଲା । ତେବେ ଖୁବ କଦବା ବିଧବା ବିବାହ ହେଉଥିବାର ଋଗ୍‌ବେଦରେ ଉଲ୍ଲେଖ ଅଛି । ସେତେବେଳେ ସ୍ୱଗୋତ୍ରୀ ବିବାହ ବିଶେଷ ମାତ୍ରାରେ ପ୍ରଚଳିତ ନଥିଲା । ଯଦି କୌଣସି ପୁରୁଷ ସ୍ୱଗୋତ୍ରର ସ୍ତ୍ରୀ ବିବାହ କରୁଥିଲା, ତାକୁ ପୂର୍ବ ଏକମାସ କାଳ ସ୍ତ୍ରୀକୁ ଭଗିନୀ ରୂପେ ଗ୍ରହଣ କରି 'ଚାନ୍ଦ୍ରାୟଣ ବ୍ରତ' ପାଳନ କରିବାକୁ ପଡୁଥିଲା ।

ସେହି ସମାଜରେ ସାଧାରଣ ଜୀବନର ନୈତିକ ମାନଦଣ୍ଡ ଖୁବ୍ ଉଚ୍ଚରେ ଥିଲା । ସାଧାରଣତଃ କେହି ଅବିବାହିତ ରହୁ ନ ଥିଲେ କିମ୍ବା ଏକାଧିକ ପତ୍ନୀ ବିବାହ କରୁ ନ ଥିଲେ । ତେବେ ଏକପତ୍ନୀ ସୁରକ୍ଷିତା ନୀତି ସବୁ କ୍ଷେତ୍ରରେ ପ୍ରଯୁଜ୍ୟ ନ ଥିଲା; କେହି କେହି ପୁରୁଷ ଏକାଧିକବାର ବିବାହ କରିବାର ମଧ୍ୟ ପ୍ରମାଣ ମିଳେ । କିନ୍ତୁ ବହୁପତି ବିବାହ ପ୍ରଥା ଆଦୌ ପ୍ରଚଳିତ ନ ଥିଲା ।

ସାଧାରଣତଃ କନ୍ୟାଗୃହରେ ବିବାହ କାର୍ଯ୍ୟ ସମ୍ପାଦନ ହେଉଥିଲା ଏବଂ ବିବାହପରେ ସ୍ତ୍ରୀ ପିତା ଗୃହରୁ ସ୍ୱାମୀଗୃହକୁ ଚାଲିଯାଉଥିଲା । ସେତେବେଳେ ଯୌତୁକ ପ୍ରଥା ପ୍ରଚଳିତ ଥିଲେ ମଧ୍ୟ ଯୌତୁକର ପରିମାଣ ଲାଗି ସ୍ୱାମୀ ଦାବୀ କରୁ ନ ଥିଲା । ସ୍ତ୍ରୀ ଥିଲା ସ୍ୱାମୀର ଅର୍ଦ୍ଧାଙ୍ଗିନୀ, ଗୃହର ରାଣୀ ଏବଂ ଧର୍ମକର୍ମାଦିରେ ସ୍ୱାମୀର ସହଯାତ୍ରିଣୀ । ପ୍ରାୟ ପ୍ରତ୍ୟେକ ପରିବାରରେ ସ୍ତ୍ରୀମାନଙ୍କ ସକାଶେ ଏକାନ୍ତତା ନିମିତ୍ତ ଏକ ସ୍ୱତନ୍ତ୍ର କକ୍ଷ ରହିଥିଲା ।

* Prof. A. L. Basham 'The wonder that was India,' 1971, P. 162.

ବେଶଭୂଷା ଓ ପୋଷାକ ପତ୍ର ପ୍ରତି ମଧ୍ୟ ସେତେବେଳେ ବିଶେଷ ଦୃଷ୍ଟି ଦିଆଯାଉଥିଲା । ବାସ, ବସ୍ତ୍ର ବା ପରିଧାନ ସାଧାରଣତଃ ତିନି ଭାଗରେ ବିଭକ୍ତ ଥିଲା—ଅନ୍ତର୍ବାସ ବା ନୀବୀବାସ ବା ପରିଧାନ ଏବଂ ଅଧିବାସ ବା ଓଢ଼ଣା । ଏ ସମସ୍ତ ବାସ ବା ପରିଧାନ ମୁଖ୍ୟତଃ କାର୍ପାସ, ଚର୍ମ ଓ ପଶମରେ ନିର୍ମିତ ହେଉଥିଲା । ଊର୍ଣ୍ଣବାସ, ଅଜିନବାସ ଓ ହିରଣ୍ୟଖଚିତ ଅଧିବାସ ପ୍ରଭୃତିର ବ୍ୟବହାର ସମ୍ପର୍କରେ ଋଗ୍‌ବେଦରେ ଉଲ୍ଲେଖ ଅଛି । ଏହା ବ୍ୟତୀତ, ଗ୍ରୀବାହାର, କର୍ଣ୍ଣଶୋଭନ, କଟିମେଖଳା, ନୂପୁରାଦି ଅଳଙ୍କାର ଆଭରଣ ବ୍ୟବହାର ହେଉଥିବାର ମଧ୍ୟ ଜଣାଯାଇଛି । ସେହି ସମାଜରେ ନାରୀମାନଙ୍କର କେଶପ୍ରସାଧନ, ଶ୍ମଶ୍ରୁଧାରୀ ପୁରୁଷଙ୍କର ଆଦର ଓ ପ୍ରସ୍ତର ନିର୍ମିତ କ୍ଷୌରର ବ୍ୟବହାର ହେଉଥିବା ସମ୍ପର୍କରେ ମଧ୍ୟ ଋଗ୍‌ବେଦ ନୀରବ ନୁହେଁ ।

ବୈଦିକ ସମାଜରେ ଦୁଗ୍‌ଧ ଥିଲା ପ୍ରଧାନ ଖାଦ୍ୟ । ଦହି, ଛେନା, ଲହୁଣୀ, ଘୃତାଦି ଦୁଗ୍‌ଧଜାତ ପଦାର୍ଥର ବ୍ୟବହାର ମଧ୍ୟ ପ୍ରଚୁର ପରିମାଣରେ ହେଉଥିଲା । ଏହା ବ୍ୟତୀତ, ଯବ, ତଣ୍ଡୁଳ ଓ ବାର୍ଲି ସାଧାରଣ ଖାଦ୍ୟ ଓ ପିଷ୍ଟକ ରୂପେ ଭୋଜନ ସାମଗ୍ରୀର ଅନ୍ତର୍ଗତ ଥିଲା । ସେହି ସମାଜରେ ଗୋହତ୍ୟା ନିଷିଦ୍ଧ ହୋଇଥିଲା ଏବଂ ଛାଗ, ମେଷ ଓ ମୃଗାଦି ଯେଉଁ ପଶୁମାନଙ୍କୁ ବଳି ଦିଆଯାଉଥିଲା ସାଧାରଣତଃ ସେହି ମାଂସ ଆହାରୋପଯୋଗୀ ବୋଲି ଧରି-ଯାଉଥିଲା । ସୁରା, ସମିତି ବ୍ୟତୀତ ଅନ୍ୟତ୍ର ସୁରାପାନକୁ ନିରୁତ୍ସାହିତ କରାଯାଉ-ଥିଲା ଏବଂ ବିଭିନ୍ନ ଧର୍ମକାର୍ଯ୍ୟରେ ସୋମରସ ବ୍ୟବହୃତ ହେଉଥିଲା ।

ତତ୍କାଳୀନ ଆମୋଦପ୍ରମୋଦ ମଧ୍ୟରେ ଘୋଡ଼ାଦୌଡ଼, ଶିକାର, ପଶାଖେଳ, ନୃତ୍ୟ ଓ ସଙ୍ଗୀତ ପ୍ରଧାନ ଥିଲା । ସେତେବେଳେ ବ୍ୟାଘ୍ର, ବରାହ, ସିଂହ, ମହିଷ, ମୃଗାଦି ପଶୁ ଓ କେତେକ ପକ୍ଷୀ ଶିକାର କରାଯାଉଥିଲା । ପଶାଖେଳରେ ବହୁ ପରିବାର ସର୍ବସ୍ୱାନ୍ତ ହେଉଥିଲେ । ଏପରିକି ଗୋଟିଏ ଜୁଆଡ଼ି ପୁତ୍ରକୁ ତାର ପିତା ଚକ୍ଷୁ ଖୋଳିତ କରି ଅନ୍ଧ କରି ଦେବାର ଦୃଷ୍ଟାନ୍ତ ରହିଛି । ଶକଟ ଦୌଡ଼ ଘୋଡାଦୌଡ଼ ଭଳି ଅତି ଲୋକପ୍ରିୟ ଥିଲା । ଉଭୟ ସ୍ତ୍ରୀ ଓ ପୁରୁଷମାନେ ନୃତ୍ୟରେ ଅଂଶଗ୍ରହଣ କରୁଥିଲେ । ଦୁନ୍ଦୁଭି, ବଂଶୀ, ବୀଣା ଓ ସାରଙ୍ଗୀ ପ୍ରଭୃତି ସଙ୍ଗୀତରେ ବ୍ୟବହୃତ ହେଉଥିଲା । ସେହି ସମୟରେ ସଙ୍ଗୀତଜ୍ଞ ଓ ଗାୟକମାନେ ପରମ ସୁଖବାସୀ ଥିଲେ ଏବଂ ସଙ୍ଗୀତ ଓ ଗୀତକୁ ଜୀବନ ମଣୁଥିଲେ ।

ବୈଦିକ କୁଳ ବା ପରିବାରଗୁଡ଼ିକ କ୍ରମେ କ୍ରମେ ବର୍ଣ୍ଣଭେଦ ମାଧ୍ୟମରେ ବିଭିନ୍ନ ଗୋଷ୍ଠୀରେ ପରିଣତ ହୋଇଥିଲା । ପ୍ରଥମେ ଶ୍ୱେତାଙ୍ଗ ଆର୍ଯ୍ୟ ଓ କୃଷ୍ଣବର୍ଣ୍ଣା ଦାସ, ଦସ୍ୟୁ ବା ଶୂଦ୍ରଙ୍କ ମଧ୍ୟରେ ଭେଦଭାବ ବଢ଼ିବାକୁ ଲାଗିଲା । କାଳକ୍ରମେ ଆର୍ଯ୍ୟମାନଙ୍କ ମଧ୍ୟରେ ରାଜବଂଶଜାତ ବ୍ୟକ୍ତି ଓ ପୁରୋହିତମାନଙ୍କର ଉତ୍ତରାଧିକାରୀମାନେ ସାଧାରଣ ମନୁଷ୍ୟଙ୍କଠାରୁ ଉଚ୍ଚ ବୋଲି ଭାବିବା ଆରମ୍ଭ କଲେ । ଏପରିଭାବେ ସମାଜରେ କ୍ଷତ୍ରିୟ, ବ୍ରାହ୍ମଣ, ବୈଶ୍ୟ ଓ ଶୂଦ୍ର ଗୃହଜାତି ଗଢ଼ିଉଠିଲା । ତଥାପି ବୈଦିକ ଯୁଗର ଆଦ୍ୟାବସ୍ଥାରେ ଏହି ଭେଦଭାବ ଉତ୍କଟ ଧରଣର ନଥିଲା । ସେମାନଙ୍କ ମଧ୍ୟରେ ଅନ୍ତର୍ବିବାହ ପ୍ରଚଳିତ ଥିଲା ଏବଂ ଅସ୍ପୃଶ୍ୟତାର ପ୍ରଶ୍ନ ଆଦୌ ଉଠି ନଥିଲା ।

## ରାଜନୈତିକ ସଂଗଠନ

ଆଦ୍ୟକାଳୀନ ବୈଦିକଯୁଗରେ ପରିବାର କେବଳ ସାମାଜିକ ଜୀବନର ମୂଳପୀଠ ନଥିଲା, ରାଜନୈତିକ କ୍ଷେତ୍ରରେ ମଧ୍ୟ ମୂଳ ଏକକ ଥିଲା । କେତେକ ଏକାନ୍ନବର୍ତ୍ତୀ ବୃହତ୍ ପରିବାରକୁ ନେଇ ଗଢ଼ିଉଠିଥିଲା ଗ୍ରାମ । ପରିବାର ଓ ଗ୍ରାମ ପରେ ଅନ୍ୟାନ୍ୟ ରାଜନୈତିକ ସଂଗଠନ ହେଲା ସଂପ୍ରଦାୟ, ଜନ ଓ ରାଷ୍ଟ୍ର । ଯେଉଁଭଳି ଜଣେ ବୟୋଜ୍ୟେଷ୍ଠ ପୁରୁଷ ଥିଲେ ପରିବାରର କର୍ତ୍ତା, ସେହିପରି ପ୍ରତ୍ୟେକ ଗ୍ରାମରେ ଜଣେ ଗ୍ରାମମୁଖ୍ୟ ବା ଗ୍ରାମଣୀ ରହୁଥିଲେ । ସଂପ୍ରଦାୟର ପ୍ରକୃତ ରୂପ କ'ଣ ଥିଲା, ସେ ସଂପର୍କରେ ଋଗ୍‌ବେଦରେ କୌଣସି ସୂଚନା ନାହିଁ । ତଥାପି ତାହା ଯେ କେତେକ ଗ୍ରାମର ସମ୍ମିଶ୍ରଣରେ ଗଢ଼ିଉଠିଥିବା ଏକ ବୃହତ୍ତର ରାଜନୈତିକ ଏକକ, ଏହା ସହଜରେ ଅନୁମେୟ । ସଂପ୍ରଦାୟ ମଠର ଜନ । ଆଦ୍ୟକାଳୀନ ବୈଦିକ ଭାରତରେ ଯାଦବଜନ, ଭାରତଜନ ଇତ୍ୟାଦି ପଞ୍ଚଜନ ଥିବାର ଜଣାଯାଏ । ରାଜାଥିଲେ ପ୍ରଧାନ ଜନରକ୍ଷକ ଏବଂ ରାଜ୍ୟ ରାଷ୍ଟ୍ର ନାମରେ ଅଭିହିତ ହେଉଥିଲା ।

ସେହି ସମୟରେ ରାଜାମାନେ ସାଧାରଣତଃ ପୁରୁଷାନୁକ୍ରମିକ ରାଜ-ସିଂହାସନ ଆରୋହଣ କରୁଥିଲେ । କିନ୍ତୁ ଅନେକ ସମୟରେ ସେମାନେ ଶତ୍ରୁ-ମାନଙ୍କୁ ପରାଭୂତ ବା ବଶୀଭୂତ କରି ନିଜକୁ ଏକଛତ୍ରପତି ଶାସକରୂପେ ପ୍ରତିଷ୍ଠା କରୁଥିଲେ । ତେଣୁ ବେଳେବେଳେ ସିଂହାସନାରୋହଣ ପୂର୍ବରୁ ଯୁଦ୍ଧ ଅବଶ୍ୟମ୍ଭାବୀ ହୋଇପଡ଼ୁଥିଲା । ସେତେବେଳେ ଯୁଦ୍ଧରେ ପଦାତିକ, ଅଶ୍ୱାରୋହୀ, ରଥାରୋହୀ ପ୍ରଭୃତି ସୈନ୍ୟ ନିଯୁକ୍ତ ହୋଉଥିଲେ ଏବଂ ଯୁଦ୍ଧରେ ଧନୁ ଶର, ଭାଲ, ଖଡ୍ଗ ଓ

ଶିରସ୍ତ୍ରାଣାଦି ବ୍ୟବହୃତ ହେଉଥିଲା । ସାଧାରଣତଃ ରାଜାମାନେ ଥିଲେ ଶକ୍ତିଶାଳୀ, ପରାକ୍ରମୀ ଓ ଅପରାଜେୟ । ରାଜପ୍ରାସାଦ, ରାଜପୋଷାକ ଓ ବହୁସଂଖ୍ୟକ ରାଜକର୍ମଚାରୀଙ୍କ ଚହଳରେ ରାଜା ଅତି ବିଳାସ ବ୍ୟସନରେ ରହୁଥିଲେ । ତଥାପି ସେମାନେ ଥିଲେ ପ୍ରଜାରକ୍ଷକ । ତାଙ୍କ ହସ୍ତରେ ଥିଲା ନ୍ୟାୟଦଣ୍ଡ । ଗୁପ୍ତଚରଙ୍କ ମାଧ୍ୟମରେ ସେ ବିଭିନ୍ନ ସମ୍ବାଦ ସଂଗ୍ରହ କରୁଥିଲେ । କୌଣସି ବିଶିଷ୍ଟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପୂର୍ବରୁ ରାଜା ପୁରୋହିତ, ଗ୍ରାମଣୀ ଓ ସେନାନୀଙ୍କ ସହିତ ପରାମର୍ଶ କରୁଥିଲେ । ଏହା ବ୍ୟତୀତ, ସଭା ଓ ସମିତିରେ ମଧ୍ୟ କେତେକ ନୀତି, ପଦ୍ଧତି ଓ ସାମାଜିକ ଚଳଣି ସମ୍ପର୍କରେ ଆଲୋଚନା ହେଉଥିଲା । ସୁଜାତ, ସୁଜ୍ଞାନୀ, ବିଭବଶୀଳ ଓ ସମ୍ଭ୍ରମଶାଳୀ ବ୍ୟକ୍ତିମାନେ ସଭା ଓ ସମିତିର ସଭ୍ୟ ହୋଉଥିଲେ ।

## ଅର୍ଥନୈତିକ ଅବସ୍ଥା

ବୈଦିକ ସଭ୍ୟତା ମୁଖ୍ୟତଃ ଗ୍ରାମ୍ୟ ସଭ୍ୟତା ଥିଲା । ଋଗ୍‌ବେଦରେ 'ନଗର' ଶବ୍ଦ ବ୍ୟବହୃତ ନ ହୋଇ 'ପୁର' ଶବ୍ଦର ପ୍ରୟୋଗ ଦେଖିବାକୁ ମିଳୁଥିବାରୁ ସେତେବେଳେ ଲୋକମାନେ ଗ୍ରାମ୍ୟ ଜୀବନଯାପନ କରୁଥିବା ଅନୁମାନ କରାଯାଏ । କୃଷି ଥିଲା ଗ୍ରାମବାସୀଙ୍କର ପ୍ରଧାନ ବୃତ୍ତି ବା ଜୀବିକା । କୃଷି କାର୍ଯ୍ୟରେ ବଳଦ ଓ ଲଙ୍ଗଳ ବ୍ୟବହୃତ ହେଉଥିଲା । ଶସ୍ୟ ପକ୍ୱାବସ୍ଥାକୁ ଆସିଗଲେ ତାହା କଟାହୋଇ ଖଳାରେ ଝାଙ୍ଗର ଭୂଇଁରେ ପିଟାଯାଇ ଅମଳ ହେଉଥିଲା । ଉର୍ଦର ନାମକ ଏକ ପାତ୍ର ମାପିବା ପାଇଁ ବ୍ୟବହୃତ ହେଉଥିଲା । ସେତେବେଳେ କୃଷି ଉପଯୋଗୀ କ୍ଷେତ୍ରରେ କରିଷା ନାମକ ଖାର ବ୍ୟବହୃତ ହୋଉଥିବାର ମଧ୍ୟ ଜଣାଯାଏ । ଯବ ଓ ଧାନ୍ୟ ଥିଲା ପ୍ରଧାନ ଶସ୍ୟ । ସେତେବେଳେ ମଧ୍ୟ ଦୁର୍ଭିକ୍ଷ, ବନ୍ୟା ଓ ପଙ୍ଗପାଳଦ୍ୱାରା ଶସ୍ୟହାନୀ ଆଶଙ୍କା ରହୁଥିଲା ।

ତଦାନୀନ୍ତନ ସମାଜର ଅର୍ଥନୈତିକ ଜୀବନ ମୁଖ୍ୟତଃ ପଶୁମାନଙ୍କୁ କେନ୍ଦ୍ରକରି ଗଢ଼ିଉଠିଥିଲା । ଗାଈ, ବଳଦ, ଘୋଡ଼ା, ଛେଳି, ମେଣ୍ଢା, ଗଧ ଓ କୁକୁର ପ୍ରଭୃତି ପଶୁ ଗୃହରେ ପାଳିତ ହେଉଥିଲେ । ଗୋପାଳ ଗୋଚର ଭୂମିରେ ଗୋଷ୍ଠ ଜଗୁଥିଲା । ଗୋରୁ କାଳେ କୌଣସି ଖାତରେ ପଡ଼ିଯିବ, ଖଣ୍ଡିଆ-ଖାବରା ହୋଇଯିବ କିମ୍ବା ହଜିଯିବ, ସେଥିପାଇଁ ତାକୁ ଗୋପାଳ ଦାୟିତ୍ୱରେ ଛଡ଼ାଯାଉଥିଲା । ଗାଈ ଚିହ୍ନିବା ଲାଗି ସୁବିଧା ହେବ ବୋଲି ତାର କାନରେ ଚିହ୍ନକରି ଦିଆଯାଉଥିଲା । ଯମୁନା ଉପତ୍ୟକା ଏକ ବିଶିଷ୍ଟ ଗୋଚର ଭୂମି

ଥିଲା । କୁକୁର ଶିକାର କାର୍ଯ୍ୟରେ ସାହାଯ୍ୟ କରୁଥିଲା, ଗୋରୁଗାଈ ହଳଗଲେ ପଦାଙ୍କ ଅନୁସରଣ କରି ଖୋଜୁଥିଲା ଏବଂ ରାତିରେ ଗୃହ ଓ ଶସ୍ୟଭଣ୍ଡାରାଦି ଜଗୁଥିଲା । ବଳଦ କୃଷିକାର୍ଯ୍ୟରେ ଓ ଶଗଡ଼ ଟାଣିବାରେ ସାହାଯ୍ୟ କରୁଥିଲା । ଘୋଡ଼ା ଦୌଡ଼ ପ୍ରତିଯୋଗିତାରେ ଓ ରଥ ଟାଣିବାରେ ବ୍ୟବହୃତ ହେଉଥିଲା ।

କୃଷି ଓ ପଶୁପାଳନ ସାଙ୍ଗକୁ ଶିକାର ଥିଲା ଆର୍ଯ୍ୟମାନଙ୍କର ଅନ୍ୟତମ ଜୀବିକା । ଶିକାରଦ୍ୱାରା ଖାଦ୍ୟ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଗୃହପାଳିତ ପଶୁମାନଙ୍କୁ ହିଂସ୍ରଜନ୍ତୁଙ୍କ ଆକ୍ରମଣରୁ ରକ୍ଷା କରାଯାଇ ପାରୁଥିଲା ଏବଂ ତାହା ଲୋକମାନଙ୍କର ଏକ ଅଭିରୁଚି ବା ଆମୋଦରେ ପରିଣତ ହୋଇଯାଇଥିଲା । ଶିକାରରେ ନାନା ପ୍ରକାର ଉପାୟ ଅବଲମ୍ବନ କରାଯାଉଥିଲା । ଶିକାରୀମାନେ କେତେବେଳେ ଧନୁଶର ସାହାଯ୍ୟରେ ପଶୁପକ୍ଷୀ ମାରୁଥିଲେ ତ କେତେବେଳେ ଖାତ ଖୋଳି ମଞ୍ଚ ଉପରେ ଜଗୁଥିଲେ । ପୁଣି କେତେବେଳେ ଦଳେ ଲୋକ କୁକୁର ସାହାଯ୍ୟରେ ଜନ୍ତୁକୁ ଏକ ଦିଗରୁ ତଡ଼ିଦେଇ ଅନ୍ୟଦିଗରେ ଛକି ରହି ଶିକାର କରୁଥିଲେ ତ କେତେବେଳେ ଫାଶ ପକାଇ ତାକୁ ଧରୁଥିଲେ । ଏପରିକି, ପୋଷାହାତୀ ସାହାଯ୍ୟରେ ବଣୁଆ ହାତୀକୁ ଆୟତ୍ତ କରିବା ଉପାୟ ମଧ୍ୟ ତାଙ୍କୁ ଜଣା ଥିଲା ।

ଏତଦ୍ଭିନ୍ନ ସେତେବେଳେ ବ୍ୟବସାୟ ଓ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ସନ୍ତୋଷଜନକ ଅଗ୍ରଗତି ଘଟିଥିଲା । ବିନିମୟ ବାଣିଜ୍ୟ ପ୍ରଥା ( Barter System ) ପ୍ରଚଳିତ ଥିଲା ଏବଂ ବ୍ୟବସାୟୀମାନେ ବଣିକ ନାମରେ ପରିଚିତ ଥିଲେ । ବସ୍ତ୍ର, ଚମଡ଼ା, ଅସ୍ତ୍ରଶସ୍ତ୍ରାଦି ବାଣିଜ୍ୟର ପ୍ରଧାନ ପଦାର୍ଥ ଥିଲା ଏବଂ ଗାଈ ବିନିମୟର ମାଧ୍ୟମ ଥିଲା । ଇନ୍ଦ୍ରଙ୍କର ଗୋଟିଏ ପ୍ରତିକୃତିର ମୂଲ୍ୟ ଦଶଟି ଗାଈ ନିର୍ଦ୍ଧାରିତ ହୋଇଥିବା କଥା ଋଗ୍‌ବେଦରେ ଉଲ୍ଲେଖ ଅଛି । ଗାଈ ବ୍ୟତୀତ ସ୍ୱର୍ଣ୍ଣହାର ମଧ୍ୟ ସ୍ଥଳ ବିଶେଷରେ ବିନିମୟର ମାଧ୍ୟମ ରୂପେ ବ୍ୟବହୃତ ହେଉଥିଲା ।

ଏହା ବ୍ୟତୀତ, ସେତେବେଳେ ନୌବାଣିଜ୍ୟ ମଧ୍ୟ ପ୍ରଚଳିତ ଥିବା ଜଣାଯାଏ । ସମୁଦ୍ର ଗର୍ଭରୁ ମୋତି ସଂଗ୍ରହ କରିବା ବୋଧହୁଏ ତାତ୍କାଳିକ ବଣିକମାନଙ୍କର ଉଦ୍ଦେଶ୍ୟଥିଲା । ତେବେ ସେତେବେଳେ ବେବିଲୋନିଆ ପ୍ରଭୃତି କେତେକ ଦେଶ ସହିତ ବୈଦିକ ଭାରତର ବାଣିଜ୍ୟ ସମ୍ପର୍କ ରହିଥିଲା ବୋଲି କେତେକ ଐତିହାସିକ ମତ ବ୍ୟକ୍ତ କରନ୍ତି ।

ଆଦ୍ୟକାଳୀନ ବୈଦିକ ଭାରତରେ ଶିଳ୍ପର ମଧ୍ୟ ବିକାଶ ଘଟିଥିଲା । କାଠ, ଚମଡ଼ା ଓ ସ୍ୱର୍ଣ୍ଣାଦି ଧାତୁକୁ କେନ୍ଦ୍ରକରି ସେତେବେଳେ ବହୁ ହସ୍ତଶିଳ୍ପ ଗଢ଼ିଉଠିଥିଲା । ବଢ଼େଇମାନେ କେବଳ ରଥ ବା ନୌକା ନିର୍ମାଣ କରୁ ନଥିଲେ; ସେମାନେ ଖୁବ୍ କମନୀୟ ପାତ୍ର ମଧ୍ୟ ନିର୍ମାଣ କରୁଥିଲେ । କମାରମାନେ ବିଭିନ୍ନ ପାତ୍ର, ଲଙ୍ଗଳମୂନ ଓ ଅସ୍ତ୍ରଶସ୍ତ୍ରାଦି ତିଆର କରୁଥିଲେ ଏବଂ ସ୍ୱର୍ଣ୍ଣକାରମାନେ ନୂପୁର, କଣ୍ଠିବନ୍ଧ, ଗଳାହାର ଆଦି ନାନା ପ୍ରକାର ଅଳଙ୍କାର ନିର୍ମାଣରେ ସେମାନଙ୍କର ଶିଳ୍ପନୈପୁଣ୍ୟର ପରିଚୟ ଦେଉଥିଲେ । ଚମଡ଼ା ଥଳି, ଧନୁର ଗୁଣ, ଗୃଦ୍ଧିକ, ଲଗାମ୍ ପ୍ରଭୃତି ତିଆର କରି ଚର୍ମରଞ୍ଜନ ବ୍ୟବସାୟୀମାନେ କୃତିତ୍ୱ ଅର୍ଜନ କରୁଥିଲେ । ନାରୀମାନେ ସାଧାରଣତଃ ସୀବନ ଓ ବୟନ ବିଦ୍ୟାରେ ପାରଙ୍ଗମା ଥିଲେ ।

ଶିଳ୍ପ ସାଙ୍ଗକୁ ପରିବହନ କ୍ଷେତ୍ରରେ ମଧ୍ୟ ସେତେବେଳେ ଖୁବ୍ ସୁବିଧା ଥିଲା । ରଥ ଓ ଶକଟ ସ୍ଥଳଯାନ ରୂପେ ପରିବହନ ନିମିତ୍ତ ବ୍ୟବହୃତ ହେଉଥିଲା ଏବଂ ନଦୀ ଓ ସାଗରରେ ଯାତାୟାତ ଲାଗି ନୌକା ବ୍ୟବହାର କରାଯାଉଥିଲା ।

## ଶିକ୍ଷା ଓ ସଂସ୍କୃତି

ଋଗ୍‌ବେଦୀୟ ସଭ୍ୟତାର ବିକାଶ ମୂଳରେ 'ସରଳ ଜୀବନ ଓ ଉଚ୍ଚଚିନ୍ତା' ଆଦର୍ଶ ନିହିତ । ମିଶରୀୟ ଓ ଏସିରୀୟ ସଭ୍ୟତା ଭଳି ଆଦ୍ୟକାଳୀନ ବୈଦିକ ସଭ୍ୟତା ବସ୍ତୁତାନ୍ତ୍ରିକ ନ ହୋଇଥିଲେ ସୁଦ୍ଧା ତାର ଗୁଣାତ୍ମକ ବିକାଶ ଓ ଆଧ୍ୟାତ୍ମିକ ଉତ୍କର୍ଷର ପଟାନ୍ତର ନାହିଁ । ତତ୍କାଳୀନ ସଂସ୍କୃତିର ଇତିହାସହିଁ ଋଗ୍‌ବେଦର ଇତିହାସ । ଋଗ୍‌ବେଦରେ ପୁରାତନ ଓ ପରବର୍ତ୍ତୀ ରଚନା ଓ ଋଷିଙ୍କ ସମ୍ପର୍କରେ ସୂଚନା ଦିଆଯାଇଥିବାରୁ ତଦାନୀନ୍ତନ ଉନ୍ନତ ସଂସ୍କୃତି ଓ ପରମ୍ପରା ସମ୍ପର୍କରେ ଧାରଣା ହୁଏ । ଋଗ୍‌ବେଦର ସହସ୍ରାଧିକ ମନ୍ତ୍ର ରଚନା ହେବା ମଧ୍ୟରେ ଶତ ଶତ ବର୍ଷ ଅତିବାହିତ ହୋଇଯାଇଥିବ, ଏହା ନିଃସନ୍ଦେହରେ କୁହାଯାଇ ପାରେ । ସୁତରାଂ ଋଗ୍‌ବେଦକୁ ବିକାଶଶୀଳ ବୈଦିକଯୁଗର ପ୍ରଥମ ଓ ଚରମ ନିଦର୍ଶନ ରୂପେ ଗ୍ରହଣ କରାଯାଇପାରେ । ଋଗ୍‌ବେଦର ଭାଷା ଓ ଦର୍ଶନ ଅଦ୍ୟାବଧି ଅପରିବର୍ତ୍ତିତ । ଏଣୁ ବୁନ୍‌ସେନ୍ ‡ ଯଥାର୍ଥରେ କହିଛନ୍ତି, "ଏହି ଆଦ୍ୟକାଳୀନ ବୈଦିକ କବିତାର ନମୁନା ମଧ୍ୟ ମାନବ ଜାତିର ଆଧୁନିକ ଇତିହାସର ଅନ୍ତର୍ଗତ ।"

‡ Dr. R. K. Mookerjee : Hindu Civilization (Part—1) 4th. Ed, P. 85.

କେବଳ ଏତିକି ନୁହେଁ, ଋଗ୍‌ବେଦ ସଂହିତାର ସଂପୂର୍ଣ୍ଣ ସୁରକ୍ଷା ଉଦ୍ଦେଶ୍ୟରେ ଅନ୍ୟ କେତେକ ଆନୁଷଙ୍ଗିକ ଗ୍ରନ୍ଥ ପ୍ରଣୟନ କରାଯିବାଦ୍ୱାରା ଭବିଷ୍ୟତରେ ସଂହିତାର କୌଣସି ପରିବର୍ତ୍ତନ ବା ବିକୃତି ସମ୍ଭବ ହୋଇ ପାରି ନଥିଲା । ଏହି ଆନୁଷଙ୍ଗିକ ଗ୍ରନ୍ଥମାନଙ୍କ ମଧ୍ୟରେ 'ପଦପାଠ', 'କ୍ରମପାଠ', 'ପ୍ରାତିଶାଖ୍ୟ', 'ଅନୁକ୍ରମଣୀ' ଇତ୍ୟାଦି ଉଲ୍ଲେଖଯୋଗ୍ୟ । ସଂସ୍କୃତି ସୁରକ୍ଷାର ଏହି କୌଶଳ ଆର୍ଯ୍ୟ ଭାରତର ଏକ ଅନୁପମ ଅବଦାନ । ମେକ୍‌ଡୋନେଲଙ୍କ ଭାଷାରେ "ଏହି କୌଶଳ ଅନ୍ୟ କୌଣସି ପ୍ରାଚୀନ ସାହିତ୍ୟରେ ଅଦ୍ୱିତୀୟ ପରଂପରାର ବିଶ୍ୱସ୍ତତାକୁ ସୁରକ୍ଷିତ କରିଛି ।"

ଏଥିରୁ ତଦାନୀନ୍ତନ ଶିକ୍ଷା ପଦ୍ଧତି ସଂପର୍କରେ ସହଜରେ ଅନୁମାନ କରାଯାଇ ପାରିବ । ସେତେବେଳେ କୌଣସି ନିର୍ଦ୍ଦିଷ୍ଟ ଶିକ୍ଷାନୁଷ୍ଠାନରେ ଶିକ୍ଷା ବିତରଣ କରାଯାଉ ନଥିଲା । ବିଜ୍ଞ ପଣ୍ଡିତମାନଙ୍କର ଗୃହ ହିଁ ଥିଲା ପବିତ୍ର ବିଦ୍ୟାପୀଠ । ସେଠାରେ ଗୁରୁଗୃହବାସୀମାନଙ୍କୁ ତଥା ନିଜର ସନ୍ତାନ ସନ୍ତତିମାନଙ୍କୁ ବୈଦିକ ମନ୍ତ୍ରାଦି ଶିକ୍ଷା ଦିଆ ଯାଉଥିଲା । ପ୍ରଥମାବସ୍ଥାରେ ମୌଖିକ ଶିକ୍ଷା ବା ଶ୍ରୁତି-ପଦ୍ଧତି ପ୍ରଚଳିତ ଥିଲା । ଗୁରୁ ଶିକ୍ଷକଙ୍କଠାରୁ ସବୁ ବିଷୟ ଶୁଣି ମନେ ରଖୁଥିଲା । ସେହି ସମୟରେ ସ୍ପଷ୍ଟ ଉଚ୍ଚାରଣ ଓ ଆବୃତ୍ତି ଉପରେ ଗୁରୁତ୍ୱ ଦିଆଯାଉଥିଲା । ଆବୃତ୍ତି କରିବାରେ ବିଶ୍ୱାମିତ୍ରଙ୍କ ସ୍ପଷ୍ଟତା ପ୍ରସଙ୍ଗ ଋଗ୍‌ବେଦରେ ଲିପିବଦ୍ଧ ହୋଇ ରହିଛି । ତେବେ ଆତ୍ମାବବୋଧ ଲାଗି ଯୋଗ ବା ତପସ୍ୟା ଥିଲା ତଦାନୀନ୍ତନ ଶିକ୍ଷା ପଦ୍ଧତିର ମୌଳିକ ଓ ମୁଖ୍ୟ କାର୍ଯ୍ୟକ୍ରମ । ତାହାଦ୍ୱାରା ଉକ୍ତ ସମାଜ ମୁନି, ଋଷି, ବିପ୍ର ଓ ମନୀଷୀମାନଙ୍କୁ ଜନ୍ମ ଦେଉଥିଲା ।

## କଳା, ବିଜ୍ଞାନ ଓ ଧର୍ମ

ଆଦ୍ୟକାଳୀନ ବୈଦିକ ଯୁଗରେ ସ୍ଥାପତ୍ୟ କଳାର ବିକାଶ ଘଟିଥିବା ବିଷୟରେ ଋଗ୍‌ବେଦରୁ ସୂଚନା ମିଳେ । ସେତେବେଳେ ସହସ୍ରଦ୍ୱାର ଓ ସହସ୍ର ସ୍ତମ୍ଭ ସଂଯୋଜିତ ରାଜପ୍ରାସାଦର ନିର୍ମାଣ ସମ୍ଭବ ହୋଇଥିଲା ଏବଂ ଶତପ୍ରାଚୀର ବିଶିଷ୍ଟ ପ୍ରସ୍ତର ଦୁର୍ଗମାନ ମଧ୍ୟ ନିର୍ମିତ ହୋଇପାରିଥିଲା । ପୂର୍ବଲିଖିତ ମୂଲ୍ୟବାନ ଇନ୍ଦ୍ର ପ୍ରତିକୃତି ପ୍ରଭୃତି ଦୃଷ୍ଟାନ୍ତରୁ ସେତେବେଳେ ସ୍ଥାପତ୍ୟ କଳାର ବିକାଶ ଘଟିଥିବା ସ୍ପଷ୍ଟ ଅନୁମେୟ ।

ଭେଷଜ ବିଜ୍ଞାନରେ ବୈଦିକ ଭାରତ ବିଶେଷ ଅଗ୍ରଗତି କରିଥିଲା । ସେତେବେଳେ ବୈଦ୍ୟମାନେ ପ୍ରକୃତ ରୋଗ ନିରୂପଣପୂର୍ବକ ଚିକିତ୍ସା କରି

ଲୋକମାନଙ୍କୁ ସୁଖ, ଶାନ୍ତି ଓ ସ୍ୱାସ୍ଥ୍ୟ ପ୍ରଦାନ କରୁଥିଲେ । ଶାରୀରିକ ଓ ମାନସିକ ଚିକିତ୍ସା ସଙ୍ଗେ ସଙ୍ଗେ ଅସ୍ତ୍ରଚିକିତ୍ସା ବା ଶଲ୍ୟ ଚିକିତ୍ସା ମଧ୍ୟ ପ୍ରଚଳିତ ଥିବାର ଜଣାଯାଏ । ଋଗ୍‌ବେଦରେ ପାଦହୀନ ବ୍ୟକ୍ତି ଲୌହପାଦ ବ୍ୟବହାର କରିବା ଦୃଷ୍ଟାନ୍ତ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ସେଥିପାଇଁ ବୈଦ୍ୟ ବୈଦିକ ସମାଜରେ ବିଶେଷ ସମ୍ମାନିତ ହେଉଥିଲେ ଏବଂ ଲୋକମାନେ ବୈଦ୍ୟଙ୍କୁ ସମସ୍ତଙ୍କର ଧାରଣ ପୋଷଣକର୍ତ୍ତା ପରମେଶ୍ୱରଙ୍କର ସ୍ୱରୂପ ରୂପେ ମାନି ନେଇଥିଲେ । ଏହାବ୍ୟତୀତ, ଜ୍ୟୋତିଷ ବିଜ୍ଞାନରେ ମଧ୍ୟ ସେତେବେଳେ ସନ୍ତୋଷଜନକ ଗବେଷଣା ହୋଇ-ଥିଲା ଏବଂ କେତେକ ଗ୍ରହ, ନକ୍ଷତ୍ର ନିରୂପିତ ହୋଇପାରିଥିଲା ।

ଆଦିମ ବୈଦିକ ଯୁଗରେ ଧର୍ମପ୍ରଣାଳୀ ଅନୁଧ୍ୟାନ କଲେ ଜଣାଯାଏ ଯେ, ସେତେବେଳେ ସମାଜରେ ବହୁ ଦେବଦେବୀଙ୍କୁ ଉପାସନା କରାଯାଉଥିଲା ଏବଂ ବ୍ୟକ୍ତି ବିଶେଷ ନିଜର କାମନା ଅନୁସାରେ ଯେତେବେଳେ ଯେଉଁ ଦେବତାଙ୍କୁ ଉପାସନା କରିବା ଉଚିତ ମନେ କରୁଥିଲେ, ସେତେବେଳେ ସେହି ନିର୍ଦ୍ଦିଷ୍ଟ ଦେବତାଙ୍କୁ ପୂଜା, ଆରାଧନା କରୁଥିଲେ ।

ତତ୍କାଳୀନ ସମାଜରେ ପୂଜା ପାଉଥିବା ବିଭିନ୍ନ ଦେବଦେବୀଙ୍କୁ ମୁଖ୍ୟତଃ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ପ୍ରଥମତଃ, କେତେକ ଦେବଦେବୀ ପ୍ରାକୃତିକ ପ୍ରକ୍ରିୟା ବା ଅଲୌକିକତାର ପ୍ରତୀକ ରୂପେ ପୂଜା ପାଉଥିଲେ । ଏମାନଙ୍କ ମଧ୍ୟରେ ଦ୍ୟୁ (ଆକାଶ), ପୃଥିବୀ, ବରୁଣ, ଇନ୍ଦ୍ର, ସୂର୍ଯ୍ୟ,ରୁଦ୍ର, ଅଶ୍ୱିନୀ,ମରୁତ, ବାତ, ବାୟୁ, ପର୍ଜନ୍ୟ (ମେଘ) ଓ ଉଷା ପ୍ରଧାନ । ଦ୍ୱିତୀୟତଃ, କେତେକ ଦେବଦେବୀ ଯଜ୍ଞରୁ ଦେବତାରୂପେ ପୂଜା ପାଉଥିଲେ । ସେମାନଙ୍କ ମଧ୍ୟରୁ ଅଗ୍ନି ଓ ସୋମ ଅନ୍ୟତମ । ତୃତୀୟତଃ, ଶ୍ରଦ୍ଧା, ମନ୍ୟୁ ଆଦି କେତେକ କଳ୍ପିତ ଦେବତାଙ୍କୁ ମଧ୍ୟ ଉପାସନା କରାଯାଉଥିଲା । ଏହାବ୍ୟତୀତ, ଅପ୍ସରା, ଗନ୍ଧର୍ବ ଆଦି କେତେକ ଗୌଣ ଦେବଦେବୀଙ୍କୁ ମଧ୍ୟ ଆରାଧନା କରାଯାଉଥିଲା ।

ଉପର୍ଯ୍ୟୁକ୍ତ ବିଭିନ୍ନ ଦେବଦେବୀଙ୍କର କାର୍ଯ୍ୟକ୍ରମ ଓ କର୍ମକ୍ଷେତ୍ର ମଧ୍ୟ ନିର୍ଣ୍ଣିତ ହୋଇଥିଲା; ଯଥା—ଇନ୍ଦ୍ର ଥିଲେ ଊର୍ଦ୍ଧ୍ୱଲୋକର ଦେବତା, ବଜ୍ରଧର । ବୃଷ୍ଟି ନିୟନ୍ତ୍ରଣ ତାଙ୍କ କାର୍ଯ୍ୟକ୍ରମର ଅନ୍ତର୍ଗତ । ଊର୍ଦ୍ଧ୍ୱଲୋକର ଅନ୍ୟାନ୍ୟ ଦେବତାମାନଙ୍କ ମଧ୍ୟରେ ଆକାଶର ଦେବତା ବରୁଣ ଓ ସୂର୍ଯ୍ୟ ପ୍ରଧାନ । ସୂର୍ଯ୍ୟ ସାଧାରଣତଃ ସାବିତ୍ରୀ, ମିତ୍ର, ପୁଷନ୍ ଓ ବିଷ୍ଣୁ ଆଦି ପଞ୍ଚରୂପରେ ପୂଜା

ପାଉଥିଲେ । ଶୂନ୍ୟ ମଣ୍ଡଳର ଅଧିଷ୍ଠାତାମାନଙ୍କ ମଧ୍ୟରେ ବାତ୍ୟା, ଝଡ଼ ଓ ଝଞ୍ଜାର ଦେବତା ରୁଦ୍ର, ରୁଦ୍ରଙ୍କ ସାହାଯ୍ୟକାରୀ ମରୁତ, ପବନର ଦେବତା ବାୟୁ ଓ ବାତ, ନଦୀ, ଜଳ ଓ ବୃଷ୍ଟି ବିଭାଗୀୟ ଦେବତା ପର୍ଜନ୍ୟ ଏବଂ ପ୍ରଭାତର ଦେବୀ ଉଷା ଅନ୍ୟତମ । ଗୃହ ଦେବଦେବୀଙ୍କ ମଧ୍ୟରେ ଅଗ୍ନି ଥିଲେ ପ୍ରଧାନ ଏବଂ ତାଙ୍କୁ ପ୍ରଥମେ ଆହୁତି ପ୍ରଦାନ କରାଯାଉଥିଲା । ଦୁଗ୍ଧ, ଶସ୍ୟ, ଘୃତ, ମାଂସ ଓ ସୋମରସ ଯଜ୍ଞବଳି ପଦାର୍ଥର ଅନ୍ତର୍ଗତ ଥିଲା । ଏତଦ୍‌ବ୍ୟତୀତ, ନଦୀଦେବୀ ସରସ୍ୱତୀଙ୍କୁ ବିଦ୍ୟାଦାତ୍ରୀ ରୂପେ ଆରାଧନା କରାଯାଉଥିଲା । ଏହା ସତ୍ତ୍ୱେ ଜଣେ ଦେବତା ସୃଷ୍ଟିକର୍ତ୍ତାରୂପେ ପରିଗଣିତ ହେଉଥିଲେ ଏବଂ ସେ ବିଶ୍ୱକର୍ମା, ହିରଣ୍ୟଗର୍ଭ, ପ୍ରଜାପତି, ଅଦିତି ଆଦି ବିଭିନ୍ନ ନାମରେ ପରିଚିତ ଥିଲେ ।

ସେ ଯାହାହେଉ, ବୈଦିକ ଯୁଗରେ ଦେବୀମାନଙ୍କ ଅପେକ୍ଷା ଦେବତା-ମାନଙ୍କୁ ଅପେକ୍ଷାକୃତ ଅଧିକ ଭକ୍ତି ପ୍ରଦର୍ଶନ କରାଯାଉଥିଲା ଏବଂ ଏହା ଥିଲା ଆର୍ଯ୍ୟମାନଙ୍କ ପକ୍ଷେ ଏକ ବ୍ୟତିକ୍ରମ; କାରଣ ସିନ୍ଧୁ ସଭ୍ୟତାରେ ଦେବ ଦେବୀଙ୍କ ମଧ୍ୟରେ ଥିବା ଲିଙ୍ଗଗତ ପ୍ରଭେଦକୁ ଆଦୌ ପ୍ରାଧାନ୍ୟ ଦିଆଯାଉ ନଥିଲା । ଅବଶ୍ୟ କାଳକ୍ରମେ ବୈଦିକ ସଭ୍ୟତା ପ୍ରଗତି ପଥରେ ଅଗ୍ରଗତି କଲା ପରେ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ଜୀବନରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିବା ସଙ୍ଗେ ସଙ୍ଗେ ଆର୍ଯ୍ୟମାନଙ୍କର ଧର୍ମଧାରଣା ମଧ୍ୟ ଅଧିକ ଯୁକ୍ତିସମ୍ମତ ଓ ସୁସଙ୍ଗତ ହୋଇଥିଲା ।

---

## ତୃତୀୟ ପର୍ଯ୍ୟାୟ

# ବୈଦିକ ଯୁଗ-(ଖ)

(ଉତ୍ତରକାଳ)

ଋଗ୍‌ବେଦୀୟ ଭାରତର ସାମାଜିକ ଜୀବନ ତଥା ଧର୍ମ, ସଂସ୍କୃତି ଓ ସଭ୍ୟତା ପରବର୍ତ୍ତୀ କାଳରେ ପୂର୍ଣ୍ଣ-ମାତ୍ରାରେ ପରିବର୍ତ୍ତିତ ହୋଇଯାଇଥିଲା । ଏପରିକି ଆଦ୍ୟକାଳୀନ ବୈଦିକ ଭାରତର ରାଜନୈତିକ ଜୀବନ ତଥା ପ୍ରଶାସନିକ କ୍ଷେତ୍ରରେ ମଧ୍ୟ ପରବର୍ତ୍ତୀକାଳୀନ ବୈଦିକ ଯୁଗରେ ପରିବର୍ତ୍ତନ ଦେଖାଦେଇଥିଲା । ସାମ-ବେଦ, ଯଜୁର୍ବେଦ, ଅଥର୍ବ ବେଦ, ସଂହିତା, ଆରଣ୍ୟକ, ଉପନିଷଦ ପ୍ରଭୃତି ପରବର୍ତ୍ତୀକାଳୀନ ବୈଦିକଯୁଗର ଜୀବନଯାପନ ପ୍ରଣାଳୀ ତଥା ଧର୍ମ, ସଂସ୍କୃତି ସଭ୍ୟତା, ରାଜନୀତି, ଅର୍ଥନୀତି ଇତ୍ୟାଦି ବିଷୟରେ ପର୍ଯ୍ୟାପ୍ତ ପ୍ରମାଣ ଦିଏ ।

## ଆର୍ଯ୍ୟମାନଙ୍କର ରାଜ୍ୟବିସ୍ତାର

ଆଦ୍ୟକାଳୀନ ବୈଦିକ ଯୁଗରେ ଆର୍ଯ୍ୟମାନେ କାବୁଲ ଠାରୁ ଗଙ୍ଗା ଉପତ୍ୟକା ପର୍ଯ୍ୟନ୍ତ କ୍ଷମତା ବିସ୍ତାର କରିଥିଲେ ଏବଂ ବିଭିନ୍ନ କ୍ଷୁଦ୍ର ରାଜ୍ୟ ଗଠନ କରି ଅନାର୍ଯ୍ୟମାନଂକ ଉପରେ କର୍ତ୍ତୃତ୍ୱ ଚଳାଇ ଆସିଥିଲେ । କିନ୍ତୁ କାଳକ୍ରମେ ସେମାନେ ଭାରତର ପୂର୍ବ ଓ ଦକ୍ଷିଣ ଅଞ୍ଚଳକୁ ମାଡ଼ି ଆସିଲେ ଏବଂ କ୍ରମଶଃ କୁରୁକ୍ଷେତ୍ର, କୋଶଳ, କାଶୀ, ବିଦେହ ପ୍ରଭୃତି ରାଜ୍ୟରେ ପ୍ରଭୁତ୍ୱ ବିସ୍ତାର କଲେ । ତତ୍କାଳୀନ କାଳର ବିଭିନ୍ନ ଆର୍ଯ୍ୟଜାତିଙ୍କ ମଧ୍ୟରେ କୁରୁ ଓ ପାଞ୍ଚାଳମାନଂକ ନାମ ଉଲ୍ଲେଖ ଯୋଗ୍ୟ । କୁରୁମାନେ ସରସ୍ୱତୀ ଓ ଦୃଷଦ୍ୱତୀର ମଧ୍ୟବର୍ତ୍ତୀ ଭୂଖଣ୍ଡ କୁରୁକ୍ଷେତ୍ର ଅଧିକାର କଲେ ଏବଂ ଆଧୁନିକ ଦିଲ୍ଲୀ ଓ ମିରଟ ଜିଲ୍ଲାରେ ମଧ୍ୟ ସେତେବେଳେ ଆଧିପତ୍ୟ ବିସ୍ତାର କରିଥିଲେ । ପାଞ୍ଚାଳମାନେ ଯୁକ୍ତ- ପ୍ରଦେଶ ତଥା ଆଧୁନିକ ଉତ୍ତର ପ୍ରଦେଶର ବେରେଲି, ବାଦାଉନ୍, ଫରୁଖାବାଦ ପ୍ରଭୃତି ଅଞ୍ଚଳରେ କ୍ଷମତା ବିସ୍ତାର କରିଥିଲେ । ସେତେବେଳେ ଋଗ୍‌ବେଦୀୟ ଯୁଗର

ଅନୁ, ଦ୍ରୁହ୍ୟ, ତୁର୍ବାଶା, ଶିବି, ପୂରୁ, ଭାରତ ପ୍ରଭୃତି ଜାତିର ନାମ କ୍ରମେ କ୍ରମେ ଲୋପ ପାଇଗଲା ଏବଂ କୁରୁ ଓ ପାଞ୍ଚାଳ ଜାତି ମୁଣ୍ଡ ଟେକିଲା । ପୂରୁ ଓ ଭାରତମାନଙ୍କର ସମ୍ମିଶ୍ରଣରେ କୁରୁଜାତି ଏବଂ ଶିବି, ତୁର୍ବାଶା ଏବଂ କ୍ରିଞ୍ଜିୟାଦି ଜାତିର ସଂଯୋଗରେ ପାଞ୍ଚାଳ ଜାତିର ଅଭ୍ୟୁଦୟ ଘଟିଥିବା ଅନୁମାନ କରାଯାଏ । ବିଶ୍ୱଜନୀନ ରାଜା ପରୀକ୍ଷିତ ଓ ତାଙ୍କର ପୁତ୍ର ଓ ଉତ୍ତରାଧିକାରୀ ଜନ୍ମେଜୟଙ୍କ ଅମଳରେ କୁରୁମାନେ ସୁଖ ଓ ସମୃଦ୍ଧିରେ ଜୀବନ ଯାପନ କରୁ ଥିବାର ଅଥର୍ବବେଦରୁ ପ୍ରମାଣିତ ହୁଏ । ପରବର୍ତ୍ତୀ କାଳରେ କୁରୁମାନଙ୍କର କେତେକ ବଂଶଧର ପ୍ରୟାଗ (ଆଲ୍ଲାହାବାଦ) ନିକଟସ୍ଥ କୌଶାମ୍ବି ଠାରେ ଏକ ଶକ୍ତିଶାଳୀ ରାଜ୍ୟ ପ୍ରତିଷ୍ଠା କରି ବୌଦ୍ଧଧର୍ମର ଅଭ୍ୟୁଦୟ ପର୍ଯ୍ୟନ୍ତ ସେଠାରେ କ୍ଷମତା ବିସ୍ତାର କରି ରହିଥିଲେ ବୋଲି ଜଣାଯାଏ । ପାଞ୍ଚାଳମାନଙ୍କ ଭିତରେ ମଧ୍ୟ ଅନେକ ସ୍ୱନାମଧନ୍ୟ ରାଜା, ବ୍ରାହ୍ମଣ ଓ ଦାର୍ଶନିକ ରହିଥିଲେ । ସେମାନେ କେତେବେଳେ କୁରୁମାନଙ୍କ ସହିତ ଯୁଦ୍ଧରତ ରହୁଥିଲେ ତ କେତେବେଳେ ଉଭୟ ଜାତି ସନ୍ଧିସ୍ଥାପନପୂର୍ବକ ସୁଚାରୁରୂପେ ରାଜ୍ୟ ଶାସନ କାର୍ଯ୍ୟ ନିର୍ବାହ କରୁଥିଲେ ।

କାଳକ୍ରମେ ବୈଦିକ ସଂସ୍କୃତିର ମୂଳପୀଠରୂପେ କାଶୀ, କୋଶଳ ଓ ବିଦେହର ଅଭ୍ୟୁଦୟ ଘଟିଲା । କାଶୀର ରାଜା ଅଜାତଶତ୍ରୁ ଓ ବିଦେହର ସମ୍ରାଟ ଜନକ ଦାର୍ଶନିକ ସୁଶାସକ ରୂପେ ଇତିହାସପ୍ରସିଦ୍ଧ । ସେତେବେଳେ ବ୍ରାହ୍ମଣ ପଣ୍ଡିତ ଜଳ ଜାତୁକର୍ଣ୍ଣ୍ୟ, ଯାଜ୍ଞବଲ୍କ୍ୟ, ଅରୁଣୀ ଓ ଶ୍ୱେତକେତୁ କୋଶଳ, କାଶୀ ଓ ବିଦେହ ତଥା ସମଗ୍ର ବୈଦିକ ଭାରତର ଶିକ୍ଷାନାୟକ ରୂପେ ପରିଚିତ ଥିଲେ । ସେମାନେ ବୈଦିକ ଭାରତର ସୀମା ବାହାରେ ଥିବା ମଗଧ ଓ ଅଙ୍ଗର ଅଧିବାସୀମାନଙ୍କୁ ଘୃଣା କରୁଥିଲେ ; କିନ୍ତୁ ସେତେବେଳେ ଅଙ୍ଗ ଓ ଓ ମଗଧରେ ଅନାର୍ଯ୍ୟମାନେ ବାସ କରୁଥିବାରୁ ଆର୍ଯ୍ୟମାନେ ସେମାନଙ୍କୁ ଘୃଣା କରୁଥିଲେ ବୋଲି କୁହାଯାଇ ନପାରେ, କାରଣ କାଶୀ, କୋଶଳ ଓ ବିଦେହରେ ଆର୍ଯ୍ୟମାନେ ପ୍ରଭୁତ୍ୱ ବଜାୟ ରଖିଥିଲେ । ସେଠାରୁ ମଗଧ ବିଶେଷ ଦୂରବର୍ତ୍ତୀ ନ ଥିଲା ଏବଂ ପରବର୍ତ୍ତୀ ବୌଦ୍ଧଯୁଗରେ ମଧ୍ୟ ମଗଧ, ଅଙ୍ଗ, ବଙ୍ଗ ଓ କଳିଙ୍ଗରେ ଆର୍ଯ୍ୟ ହିନ୍ଦୁମାନଙ୍କର ପ୍ରତିପତ୍ତି ପରିଲକ୍ଷିତ ହୋଇ ଥିଲା । ତେଣୁ ବୈଦିକ ଭାରତର ସୀମା ବାହାରେ ରହୁଥିବା ଅଧିବାସୀମାନେ ଆର୍ଯ୍ୟ ହୋଇଲେ ହେଁ

ବ୍ରାହ୍ମ-ସଂସ୍କୃତିର ଉପାସକ ନ ଥିବାରୁ ସେମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା ହୋଇ ପାରି ନ ଥିଲା ବୋଲି କୁହାଯାଇପାରେ ।

ପରବର୍ତ୍ତୀ ବୈଦିକ ଯୁଗରେ ବିଭିନ୍ନ ଦଳ ଓ ଜାତିର ସମ୍ମିଶ୍ରଣ ଏବଂ ଆଞ୍ଚଳିକ ସଂପ୍ରସାରଣ ଘଟିବା ଫଳରେ କ୍ରମେ କ୍ରମେ ରାଜ୍ୟ ବିସ୍ତାର ବଢ଼ି ଚାଲିଲା, ରାଜାମାନଙ୍କର ସଂଖ୍ୟା ବଢ଼ିବାକୁ ଲାଗିଲା ଏବଂ ସେମାନଙ୍କର କ୍ଷମତା ବୃଦ୍ଧି ପାଇଲା । 'ଐତରେୟ ବ୍ରାହ୍ମଣ'ରେ ଗୋଟିଏ କିମ୍ବଦନ୍ତୀ ଉଲ୍ଲେଖ ଅଛି ଯେ, ଥରେ ଦେବାସୁର ଯୁଦ୍ଧରେ ଦେବତାମାନେ ପରାଜିତ ହୋଇଯିବାରୁ, ସେମାନେ ଜଣେ ରାଜା ନ ଥିବା ଯୋଗୁଁ ହିଁ ପରାଜୟ ଘଟିଲା ବୋଲି ଭାବି ଜଣେ ରାଜାଙ୍କୁ ମନୋନୀତ କଲେ । ସେହିଦିନୁ ଇତିହାସରେ ରାଜାମାନେ ଶାସନ କର୍ତ୍ତାରୂପେ ଆବିର୍ଭୂତ ହେଲେ ବୋଲି କୁହାଯାଇପାରେ । ଉପର୍ଯ୍ୟୁକ୍ତ ଦେବାସୁର ଯୁଦ୍ଧ ତଦାନୀନ୍ତନ ଆର୍ଯ୍ୟ ଅନାର୍ଯ୍ୟ ଯୁଦ୍ଧକୁ ବୁଝାଉଥିବା ସ୍ପଷ୍ଟ ଅନୁମେୟ । ସେତେବେଳେ ହିଁ ରାଜାମାନଙ୍କର (ରାଜା, ମହାରାଜା ବା ମହାରାଜ, ଅଧିରାଜ, ରାଜାଧିରାଜ, ସମ୍ରାଟ, ଏକରାଟ ପ୍ରମୁଖ ସାର୍ବଭୌମ କ୍ଷମତା ସଂପନ୍ନ ରାଜତାନ୍ତ୍ରିକ ଶାସକଙ୍କର ମଧ୍ୟ) ଆବିର୍ଭାବ ଘଟିଥିବା ଜଣାଯାଏ ।

## ଶାସନ ପ୍ରଣାଳୀ

ତଦାନୀନ୍ତନ ଭାରତର ଶାସକମାନେ ମଧ୍ୟାଞ୍ଚଳରେ 'ରାଜା', ପୂର୍ବାଞ୍ଚଳରେ 'ସମ୍ରାଟ', ଉତ୍ତରାଞ୍ଚଳରେ 'ବିରାଟ', ପଶ୍ଚିମାଞ୍ଚଳରେ 'ସ୍ୱରାଟ' ଓ ଦକ୍ଷିଣାଞ୍ଚଳରେ 'ଭୋଜ' ନାମରେ ବିଦିତ ହେଉଥିଲେ । ବିଶ୍ୱଜନୀନ ରାଜା ତଥା ଏକରାଟ ବା ସାର୍ବଭୌମ କ୍ଷମତାସଂପନ୍ନ ସମ୍ରାଟମାନେ ବାଜପେୟ, ରାଜସୂୟ ଓ ଅଶ୍ୱମେଧ ଯଜ୍ଞାଦି ମାଧ୍ୟମରେ ନିଜର ଶକ୍ତି ପରୀକ୍ଷା କରୁଥିଲେ ।

ସେତେବେଳେ ରାଜତାନ୍ତ୍ରିକ ଶାସନ ସୁଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ତାହା ନିତାନ୍ତ ସ୍ୱେଚ୍ଛାଚାରୀ ଶାସନ ନ ଥିଲା । ସେହି ଶାସନ ପ୍ରଣାଳୀ ଅନେକାଂଶରେ ଗଣତାନ୍ତ୍ରିକ ଥିଲା । ତଦାନୀନ୍ତନ ଶାସନାନ୍ତର୍ଗତ ଗଣତାନ୍ତ୍ରିକ ଉପାଦାନଗୁଡିକ ମଧ୍ୟରେ (୧) ରାଜା ମନୋନୟନ ବେଳେ ଜନତାର ଅଭିମତ ; (୨) ଅଭିଷେକ ବେଳର ନିର୍ଦ୍ଦେଶାବଳୀ ; (୩) ମନ୍ତ୍ରୀ ଓ ଅମାତ୍ୟମାନଙ୍କର ଉପଦେଶାବଳୀ ଓ (୪) ସଭାସମିତି ମାଧ୍ୟମରେ ସର୍ବସାଧାରଣଙ୍କ ଦ୍ୱାରା ରାଜ- କାର୍ଯ୍ୟର ବିଚାରଆଲୋଚନା ଅନ୍ୟତମ ।

ରାଜାମାନେ ଅଭିଷିକ୍ତ ହୋଇ ସିଂହାସନ ଆରୋହଣ କରିବା ପୂର୍ବରୁ ଦୃଢ଼ ଜନସମର୍ଥନ ଗ୍ରହଣ କରୁଥିଲେ ଏବଂ ବେଳେବେଳେ ଶତ୍ରୁ ତଥା ଜ୍ଞାତିବର୍ଗଙ୍କ ବିରୋଧରେ ଶକ୍ତିପରୀକ୍ଷାର ସମ୍ମୁଖୀନ ହେଉଥିଲେ । ଅଭିଷେକ ବେଳେ ରାଜାମାନେ ପୃଥିବୀ ମାତାକୁ ବନ୍ଦନା କରୁଥିଲେ ଏବଂ ବିଭିନ୍ନ ଦେବତା ଓ ଦିଗପାଳଙ୍କୁ ଆବାହନ କରି ଘୃତାହୁତି ଅର୍ପଣ କରୁଥିଲେ । ସେତେବେଳେ ଗୃହପତି ଅଗ୍ନି, ବନସ୍ପତି ସୋମ, ପଶୁପତି ରୁଦ୍ର, ଧର୍ମପତି ବରୁଣ, ବାକ୍‌ପତି ବୃହସ୍ପତି, ସତ୍ୟସନ୍ଧ ମିତ୍ର ଓ ସୁରଶ୍ରେଷ୍ଠ ଇନ୍ଦ୍ରାଦି ଦେବତାଙ୍କୁ ମଧ୍ୟ ପୂଜା କରିଯାଉଥିଲା । ତାପରେ ରାଜପଦାଭିଳାଷୀ ବ୍ୟକ୍ତି ପବିତ୍ରଜଳରେ ସ୍ନାନ ପ୍ରୋକ୍ଷଣାଦି କାର୍ଯ୍ୟ ସମାପନପୂର୍ବକ ଶପଥ ଗ୍ରହଣ କରୁଥିଲେ ଯେ, ଯଦି ସେ କୌଣସି ମନ୍ଦ କାର୍ଯ୍ୟରେ ପ୍ରବୃତ୍ତ ହୁଅନ୍ତି, ତେବେ ତାଙ୍କର ସମସ୍ତ ଦାନ ପୁଣ୍ୟ ଫଳ, ଧନ, ଜୀବନ ଓ ସିଂହାସନର ସୁନାମ ନଷ୍ଟ ହୋଇଯିବ ଏବଂ ବଂଶ ଲୋପ ହୋଇଯିବ । ଏପରିକି, ବିତାଡ଼ିତ ରାଜାମାନେ ପୁନର୍ବାର ରାଜଗାଦି ଅଧିକାର କରିବା ପାଇଁ ଯଜ୍ଞାଦି ଆନୁଷ୍ଠାନିକ କାର୍ଯ୍ୟକ୍ରମ ମଧ୍ୟ କରୁଥିଲେ ।

ରାଜାମାନଙ୍କର କ୍ଷମତା ଓ କାର୍ଯ୍ୟକଳାପ ବୃଦ୍ଧି ଘଟିବା ସଙ୍ଗେ ସଙ୍ଗେ ରାଜକର୍ମଚାରୀମାନଙ୍କର ମଧ୍ୟ ସଂଖ୍ୟା ବୃଦ୍ଧି ଘଟିଥିଲା । ସେତେବେଳେ ବ୍ରାହ୍ମଣ (ପୁରୋହିତ), ରାଜନ୍ୟ, ମହିଷୀ (ମହାରାଣୀ), ବାବାତା (ପ୍ରିୟ ରାଣୀ), ପରିବୃକ୍ତି (ପରିତ୍ୟକ୍ତା ପତ୍ନୀ), ସୂତ (ସାରଥି), ସେନାନୀ, ଗ୍ରାମଣୀ, କ୍ଷତ୍ତୀ, ସଂଗ୍ରହୀତା, ଭାଗଦୁଘ (ଶୁଳ୍କ ସଂଗ୍ରାହକ), ଅକ୍ଷବାପ (ପଶାକ୍ରୀଡ଼ାବଧାୟକ)—ଏହିପରି ବାର ଜଣ ରାଜକର୍ତ୍ତା ରହିଥିବା ଜଣାଯାଏ । ଏହାବ୍ୟତୀତ, ନଗରସୀମାର ବହିର୍ଦେଶରେ ଥିବା କେତେକ ଅଞ୍ଚଳର ଶାସନ ଦାୟିତ୍ୱରେ ଜଣେ 'ସ୍ଥାପତି' ରହିଥିଲେ ଏବଂ ରାଜାମାନେ ଜଣେ ଜଣେ 'ଶତପତି'ଙ୍କ ଉପରେ ଏକଶତ ଗ୍ରାମର ଶାସନଭାର ନ୍ୟସ୍ତ କରୁଥିଲେ ।

ସର୍ବୋପରି, ଆଜିକାଲିର ବିଧାନସଭା ସଦୃଶ ସେତେବେଳେ ସଭା ଓ ସମିତି ମାଧ୍ୟମରେ ବିଭିନ୍ନ ଜନକାର୍ଯ୍ୟ ସମାହିତ ହେଉଥିଲା ଏବଂ ସମସ୍ତ ପ୍ରକାର ଅଭିଯୋଗର ବିଚାର ଲାଗି ତାହା ଆଧୁନିକ ନ୍ୟାୟାଳୟ ସଦୃଶ ଥିଲା । ସଭା ଓ ସମିତିର ସହଯୋଗ ଓ ସମର୍ଥନରେ ହିଁ ରାଜାମାନେ ଶକ୍ତିଶାଳୀ ହୋଇପାରୁଥିଲେ ଏବଂ ଶତ୍ରୁଦମନ କରିବା ପାଇଁ ସମର୍ଥ ହେଉ-ଥିଲେ । ଏହି ସଭା ଓ ସମିତି ମାଧ୍ୟମରେ ଜନସାଧାରଣ ଅତ୍ୟାଗ୍ରହୀ ରାଜା

ତଥା ଅକର୍ମଣ୍ୟ ଓ ଅଯୋଗ୍ୟ ରାଜକର୍ମଚାରୀମାନଙ୍କୁ କ୍ଷମତାଚ୍ୟୁତ କରି ପାରୁଥିଲେ । ଅଥର୍ବ ବେଦରେ ଏହି ସଭା ଓ ସମିତିକୁ ସୃଷ୍ଟିକର୍ତ୍ତା ପ୍ରଜାପତିଙ୍କର ଯମଜ କନ୍ୟାରୂପେ ବର୍ଣ୍ଣନା କରାଯାଇଛି । ସଭା ଓ ସମିତି ଭାରତୀୟ ଇତିହାସର ପ୍ରାଚୀନତମ ଓ ସର୍ବପ୍ରଥମ ଗଣତାନ୍ତ୍ରିକ ଅନୁଷ୍ଠାନ ।

**ସାମାଜିକ ଜୀବନ**—ଉତ୍ତରକାଳୀନ ବୈଦିକ ସମାଜରେ ଗୃହନିର୍ମାଣ, ପୋଷାକ ପରିଚ୍ଛଦ, ବେଶଭୂଷା ଇତ୍ୟାଦିରେ ବିଶେଷ ପରିବର୍ତ୍ତନ ଘଟି ନଥିଲା । ତେବେ ଖାଦ୍ୟସାମଗ୍ରୀ ମଧ୍ୟରେ ମାଂସାହାର ପ୍ରତି ଆଗ୍ରହାଧିକ୍ୟ ପ୍ରକାଶ ପାଇଥିଲା । ସେହି ସମାଜରେ ନୂତନ ଧରଣର ଆମୋଦପ୍ରମୋଦ ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଥିଲା । ଶୈଳୁଷ (ନର୍ତ୍ତକ), ଗାଥାଗାୟକ ଓ ବୀଣାବାଦକମାନଙ୍କର ଆବିର୍ଭାବ ଘଟିଥିଲା । ଋଗବେଦୀୟ ସମାଜରେ ନାରୀମାନଙ୍କର ଅବସ୍ଥା ଯାହା ଥିଲା ପରବର୍ତ୍ତୀ ବୈଦିକ ସମାଜରେ ସେ କ୍ଷେତ୍ରରେ ବିଶେଷ ଉନ୍ନତି ଦେଖା ଦେଇ ନଥିଲା । ସେମାନେ ଉତ୍ତରାଧିକାରିଣୀ ହୋଇ କୌଣସି ସମ୍ପତ୍ତି ଲାଭ କରିପାରୁ ନଥିଲେ କିମ୍ବା ସଭା ସମିତିର ସଭ୍ୟା ହୋଇ ପାରୁ ନଥିଲେ । ରାଜପ୍ରାସାଦର ପଟ୍ଟମହିଷୀ ଓ ପ୍ରିୟତମା ରାଣୀମାନେ ସ୍ନେହ ଆଦର ପାଉଥିଲେ ସିନା ଅନ୍ୟ ପତ୍ନୀ ଓ ରକ୍ଷିତାଗଣ ଅନେକ ସମୟରେ ଲାଞ୍ଛିତା ହେଉଥିଲେ । ସେହି ସମାଜରେ ବହୁଦାର ଗ୍ରହଣ ପ୍ରଥା ପ୍ରଚଳିତ ଥିଲା ଏବଂ କାଳକ୍ରମେ ବାଲ୍ୟ ବିବାହ ପ୍ରଥା ଦୃଢ଼ୀଭୂତ ହୋଇଥିଲା । କନ୍ୟା ପ୍ରାପ୍ତବୟସ୍କା ହେବା ପୂର୍ବରୁ ବିବାହ କରି ନଗଲେ ପିତା ଘରେ ତାର ଯେତେଥର ମାସିକ ଋତୁସ୍ରାବ ଘଟିବ, ପିତାମାତାଙ୍କୁ ସେତୋଟି ଭ୍ରୂଣହତ୍ୟାର ପାପ ଲାଗିବ ବୋଲି ଏକ ପ୍ରବଳ ଅନ୍ଧବିଶ୍ୱାସ ଦେଖାଦେଇଥିଲା । ସେତେବେଳେ ଅଷ୍ଟବିଧ ବିବାହ ପ୍ରଥା ପ୍ରଚଳିତ ଥିବାର ବିଭିନ୍ନ ପ୍ରାଚୀନ ଶାସ୍ତ୍ରରୁ ଜଣାଯାଏ । ତାହା ହେଉଛି :— ୧ । ବ୍ରାହ୍ମ ବିବାହ (ବୈଦିକ ରୀତିରେ ସ୍ୱଜାତି ମଧ୍ୟରେ ବିବାହ ) । ୨ । ଦୈବ ବିବାହ (ଗୃହକର୍ତ୍ତା ପୁରୋହିତଙ୍କୁ ଯଜ୍ଞ ଦକ୍ଷିଣା ରୂପେ କନ୍ୟାଦାନ ) । ୩ । ଆର୍ଷ ବିବାହ ( ଗାଈଗୋରୁ ଆଦି ଯୌତୁକ ଦେବାକୁ ପଡୁଥିବା ବିବାହ ) । ୪ । ପ୍ରଜାପତ୍ୟ ବିବାହ ( କୌଣସି ଯୌତୁକ ଦିଆଯାଉ ନଥିବା ବା ଦାବୀ କରାଯାଉ ନଥିବା ବିବାହ ) । ୫ । ଗାନ୍ଧର୍ବ ବିବାହ (ଯୁବକ ଓ ଯୁବତୀ ଉଭୟଙ୍କର ସ୍ୱେଚ୍ଛାକୃତ ବିବାହ ଏବଂ ଏ ପ୍ରକାର ବିବାହକୁ ତଦାନୀନ୍ତନ ସମାଜ ସ୍ୱାଗତ କରୁଥିଲା ) । ୬ । ଆସୁର ବିବାହ ( କନ୍ୟା କ୍ରୟ ପୂର୍ବକ ବିବାହ ) । ୭ । ରାକ୍ଷସ ବିବାହ ( କନ୍ୟା

ଅପହରଣ ପୂର୍ବକ ବିବାହ )। ୮। ପୈଶାଚ ବିବାହ ( ନିଦ୍ରାଭିଭୂତା ବା ନିଶାସକ୍ତା ରମଣୀର ସତୀତ୍ୱ ଲୁଣ୍ଠନ ପୂର୍ବକ ପତ୍ନୀରୂପେ ପରିଣତ କରିବା )। ତେବେ, ତାତ୍କାଳୀକ ସମାଜରେ ଶେଷୋକ୍ତ ତିନୋଟି ବିବାହ ପ୍ରଥା କ୍ୱଚିତ ପ୍ରଚଳିତ ଥିଲା ଏବଂ ବିଶେଷ ଭାବରେ ନିନ୍ଦିତ ହେଉଥିଲା।

କିନ୍ତୁ ପରବର୍ତ୍ତୀକାଳୀନ ବୈଦିକ ସମାଜର ଏକ ସ୍ୱାତନ୍ତ୍ୟ ଏହି ଯେ, ସେତେବେଳେ ଜାତିଭେଦ ପ୍ରଥା ଅଧିକ ଦୃଢ଼ୀଭୂତ ହୋଇଥିଲା। ପୂର୍ବକାଳୀନ ବୈଦିକ ସମାଜରେ କେବଳ ଚାରୋଟି ଜାତି ଥିଲା । ପରବର୍ତ୍ତୀକାଳରେ ଜନସଂଖ୍ୟା ବୃଦ୍ଧି ଘଟିବାରୁ ଏବଂ କାର୍ଯ୍ୟକ୍ଷେତ୍ରର ପରିସର ବିସ୍ତୃତ ହୋଇଯିବାରୁ ସେହି ସମାଜରେ ବଢ଼ାଇ,ମୋଚି, ଧୀବର, ବଣିଆ, ଗଉଡ଼ ଇତ୍ୟାଦି ବହୁ ଜାତି ଗଢ଼ି ଉଠିଲା। ଋଗ୍‌ବେଦୀୟ ସମାଜରେ ଜାତିପରିବର୍ତ୍ତନ ଯେତେ ସହଜ ଥିଲା, ତାହା ଆଉ ସେତେ ସହଜ ହେଲାନାହିଁ। ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ମଧ୍ୟରେ ସଦ୍ଭାବ ରହିଲା, ମାତ୍ର ଶୂଦ୍ର ଓ ବୈଶ୍ୟମାନେ ନିର୍ଯ୍ୟାତିତ ହେଲେ । ବ୍ରାହ୍ମଣ ଓ କ୍ଷତ୍ରିୟଙ୍କ ମଧ୍ୟରେ ସ୍ଥଳବିଶେଷରେ ଅନ୍ତର୍ବିବାହ ପ୍ରଚଳିତ ହେଉଥିଲେ ମଧ୍ୟ ଶୂଦ୍ରମାନଙ୍କ ସହିତ ବ୍ରାହ୍ମଣମାନଙ୍କର ସମ୍ପର୍କର ପ୍ରଶ୍ନ ଉଠିଲା ନାହିଁ।

ଏହା ବ୍ୟତୀତ, ସେତେବେଳେ ସୁସଂଗଠିତ ଜାତିପ୍ରଥାର ପରିସର ବାହାରେ ଦୁଇ ପ୍ରକାର ମାନବଗୋଷ୍ଠୀ ବାସ କରୁଥିଲେ। ସେମାନେ ବ୍ରାତ୍ୟ ଓ ନିଷାଦ ନାମରେ ପରିଚିତ ଥିଲେ। ନିଷାଦମାନେ ଅନାର୍ଯ୍ୟ ଥିଲେ ଏବଂ ଆଧୁନିକ ଭିଲ୍ ଜାତିର ପୂର୍ବପୁରୁଷ ରୂପେ ପରିଗଣ୍ୟ। ବ୍ରାତ୍ୟମାନେ ବୋଧହୁଏ ଆର୍ଯ୍ୟ ଥିଲେ; କିନ୍ତୁ ବ୍ରହ୍ମବାଦୀ ନଥିଲେ କିମ୍ବା ବ୍ରାହ୍ମଣମାନଙ୍କ ନୀତିନିୟମ ପାଳନ କରୁ ନଥିଲେ। ପରବର୍ତ୍ତୀକାଳରେ ମଗଧରେ ଯେଉଁ ଶୈବ ସମ୍ପ୍ରଦାୟ ଗଢ଼ି ଉଠିଥିଲା, ତା ସହିତ ଏମାନଙ୍କର ସମ୍ପର୍କ ରହିଥିବା ଅନୁମେୟ।

## ଅର୍ଥନୈତିକ ଅବସ୍ଥା।

ଉତ୍ତରକାଳୀନ ବୈଦିକ ଯୁଗରେ ଅର୍ଥନୈତିକ ଅବସ୍ଥାରେ ବିଶେଷ ଉନ୍ନତି ଘଟିଥିବା ପରିଲକ୍ଷିତ ହୁଏ। ସେତେବେଳେ ଗ୍ରାମ୍ୟଜୀବନର ଉଲ୍ଲେଖ-ଯୋଗ୍ୟ ପରିବର୍ତ୍ତନ ଘଟି ନଥିଲେ ସୁଦ୍ଧା ଗ୍ରାମବାସୀମାନେ ନଗରଜୀବନର ସୁଖସୁବିଧା ବିଷୟରେ ଅବହିତ ହୋଇ ପାରିଥିଲେ। କୃଷି ଗ୍ରାମବାସୀମାନଙ୍କର ପ୍ରଧାନ ଜୀବିକା ଥିଲା ଏବଂ ସେ କ୍ଷେତ୍ରରେ ସନ୍ତୋଷଜନକ ଅଗ୍ରଗତି ଦେଖାଦେଇ-ଥିଲା। ସେହି ସମୟରେ କୃଷିକାର୍ଯ୍ୟରେ ଉନ୍ନତ ଧରଣର ଲଙ୍ଗଳ ବ୍ୟବହାର

କରାଯାଉଥିଲା । କରିଷା (ଗୋବର) ସାର ସ୍ୱରୂପ ବ୍ୟବହୃତ ହେଉଥିଲା । ଧାନ, ଯବ, ବାର୍ଲି, ମୁଗ, ମସୁର, ବିରି, ଡିଳ ପ୍ରଭୃତି ଫସଲ ଆମଦାନୀ ହେଉଥିଲା । ଏତଦ୍‌ବ୍ୟତୀତ ପଶୁପାଳନ କ୍ଷେତ୍ରରେ ହସ୍ତୀପାଳନ ଏ ଯୁଗର ଏକ ବୈଶିଷ୍ଟ୍ୟ । ଯେଉଁମାନେ ହସ୍ତୀ ପାଳନ କରୁଥିଲେ ତାଙ୍କୁ 'ହସ୍ତିପା' କୁହାଯାଉଥିଲା ।

ସେତେବେଳେ ଲୋକମାନେ କୃଷି ଓ ପଶୁପାଳନ ବ୍ୟତୀତ ଅନ୍ୟାନ୍ୟ ବୃତ୍ତି ଅବଲମ୍ବନ କରୁଥିବାର ମଧ୍ୟ ଜଣାଯାଏ । ତତ୍କାଳୀନ ସମାଜରେ ଧୋବା, ଧୀବର, କୁମ୍ଭାର, ସ୍ୱର୍ଣ୍ଣକାର, ବଢ଼େଇ, କଂସେଇ, ଭଣ୍ଡାରୀ ଇତ୍ୟାଦି ପେଶା ଅବଲମ୍ବନ କରି ଲୋକେ ଜୀବିକା ନିର୍ବାହ କରୁଥିଲେ । ଏହା ବ୍ୟତୀତ, ସେହି ସମାଜରେ ପେଶାଦାର ଚିତ୍ରକର, ନର୍ତ୍ତକ ଓ ବାଦକମାନେ ମଧ୍ୟ ରହିଥିଲେ । ବିଶେଷତଃ ନାରୀମାନେ କାରୁକାର୍ଯ୍ୟନିପୁଣା ଥିଲେ । ସେମାନେ ସୀବନଶିଳ୍ପ ଓ ରଞ୍ଜନ ବିଦ୍ୟାରେ ପାରଦର୍ଶିତା ଅର୍ଜନ କରିପାରିଥିଲେ ବୋଲି 'ପେଶାକାରୀ' ନାମରେ ପରିଚିତା ଥିଲେ ।

ଉକ୍ତ ସମୟରେ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ଉଲ୍ଲେଖଯୋଗ୍ୟ ବିକାଶ ଘଟିଥିଲା । ପାହାଡ଼ ପର୍ବତରେ ରହୁଥିବା କିରାତମାନଙ୍କ ସହିତ ସମ୍ପର୍କ ସ୍ଥାପିତ ହୋଇଥିଲା । ବେବିଲୋନ ପ୍ରଭୃତି ଦେଶ ସହିତ ତତ୍କାଳୀନ ଭାରତର ବହିର୍ଦ୍ଦେଶୀୟ ବାଣିଜ୍ୟ ସଂପର୍କ ମଧ୍ୟ ରହିଥିଲା । ସେତେବେଳେ ନୌ-ବାଣିଜ୍ୟ ମଧ୍ୟ ବେଶ୍ ଉନ୍ନତସ୍ତରରେ ପହଞ୍ଚିଥିବାର ଜଣାଯାଏ । ବାଣିଜ୍ୟରେ ବିନିମୟର ମାଧ୍ୟମ ରୂପେ ସୁନା ବ୍ୟବହୃତ ହେଉଥିଲା । ତତ୍କାଳୀନ ସମାଜର ଶ୍ରେଷ୍ଠ ବ୍ୟବସାୟୀ 'ଶ୍ରେଷ୍ଠୀ' ନାମରେ ସୁପରିଚିତ ଥିଲେ ।

ସର୍ବୋପରି ବୈଦିକ ଯୁଗରେ ହିଁ ଖ୍ରୀଷ୍ଟପୂର୍ବ ବିଭିନ୍ନ ଧାତୁର ବହୁଳ ବ୍ୟବହାର ପାଇଁ ପ୍ରସିଦ୍ଧ । ସେତେବେଳେ ସୁନା, ରୁପା, କଂସା, ଲୁହା, ତମ୍ବା, ସୀସାପ୍ରଭୃତି ଧାତୁରୁ ବିଭିନ୍ନ ଆସବାବ ପତ୍ର, ଅଳଙ୍କାର ଆଭରଣ, ମୁଦ୍ରା ଓ ବିଂଶକବିଦ ତିଆରି କରାଯାଉଥିଲା ।

## ଶିକ୍ଷା ପ୍ରସାର

ଭାରତୀୟ ଇତିହାସର ଏହି ପର୍ଯ୍ୟାୟରେ ଶିକ୍ଷାକ୍ଷେତ୍ରରେ ଉଲ୍ଲେଖ-ଯୋଗ୍ୟ ବିକାଶ ଘଟିଥିଲା । ବେଦ, ଉପନିଷଦ, ଆରଣ୍ୟକ ଓ ବ୍ରାହ୍ମଣାଦି ଶାସ୍ତ୍ରର ସୃଷ୍ଟି ସମ୍ଭବ ହୋଇଥିଲା ଏବଂ ପ୍ରତ୍ୟେକ ସ୍ତରରେ ସାହିତ୍ୟ ଉନ୍ନତ ଓ

ସମୃଦ୍ଧ ହୋଇଥିଲା । ଏତଦ୍ଵ୍ୟତୀତ ତତ୍କାଳୀନ ଶିକ୍ଷାପଦ୍ଧତି ଓ ପାଠ୍ୟକ୍ରମ ମଧ୍ୟ ଖୁବ୍ ଉଚ୍ଚକୋଟୀର ଥିଲା । ଧର୍ମ, ନ୍ୟାୟ, ଆଦର୍ଶ ଓ ଆଧ୍ୟାତ୍ମ କଥା ଉପରେ ଗୁରୁତ୍ଵ ଦିଆଯାଉଥିଲା । ଗୁରୁ ଓ ଶିଷ୍ୟଙ୍କ ମଧ୍ୟରେ ଅତି ନିବିଡ଼ ମଧୁର ସମ୍ପର୍କ ରହିଥିଲା ।

ତଦାନୀନ୍ତନ ଆର୍ଯ୍ୟ ସମାଜରେ ଉପନୟନ ଥିଲା ଶିକ୍ଷାର ପ୍ରାଥମିକ ପଦକ୍ଷେପ । ଉପନୟନ ଉତ୍ସବରେ ଆଚାର୍ଯ୍ୟ ଶିଷ୍ୟକୁ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଦେଉଥିଲେ, ତଦ୍ଦ୍ୱାରା ସେ ଦ୍ଵିଜ ହେଉଥିଲା ବା ପୁନର୍ଜନ୍ମ ଲାଭ କରୁଥିଲା । ତାପରେ ସେ ଯାଇ ଗୁରୁଙ୍କ ଆଶ୍ରମରେ ରହି ଜ୍ଞାନ ଆହରଣ କରୁଥିଲା । ଏଥିପାଇଁ ବୈଦିକ ଭାରତର ବିଦ୍ୟାର୍ଥୀମାନଙ୍କୁ 'ଅନ୍ତେବାସୀ' ବା 'ଆଚାର୍ଯ୍ୟ କୁଳବାସୀ' ବୋଲି କୁହାଯାଉଥିଲା । ସେହି ଯୁଗର ବିଦ୍ୟାର୍ଥୀ ତପ, ମନ୍ତ୍ର ଓ ଭିକ୍ଷା କରିବାଦ୍ଵାରା ଆତ୍ମଶୁଦ୍ଧି ଓ ବିନମ୍ରତା ଶିକ୍ଷା କରୁଥିଲା; ଗୋମୟ ଲେପନ କରି ଗୁରୁଗୃହକୁ ପରିଷ୍କୃତ ପରିଚ୍ଛନ୍ନ ରଖୁଥିଲା ଏବଂ ଗୋଚାରଣ ଭୂମିରେ ଗୋରୁ ଚରାଇବାଦ୍ଵାରା ସେ ବ୍ୟାୟାମ ଓ ନିର୍ମଳ ବାୟୁ ସେବନ କରିପାରୁଥିଲା । ତା ପକ୍ଷେ ବିଳାସିତା ନିଷିଦ୍ଧ ଥିବାରୁ ସେ ଆଳସ୍ୟ ପରାୟଣ ନ ହୋଇ କର୍ମତତ୍ପର ରହୁଥିଲା ।

ବୈଦିକ ଯୁଗୀୟ ଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଶ୍ରଦ୍ଧା, ମେଧା, ପ୍ରଜ୍ଞା, ଧନ, ଆୟୁ ଓ ଅମୃତତ୍ଵ ଆହରଣ । ତଦାନୀନ୍ତନ ଉଚ୍ଚ ଶିକ୍ଷାର ଲକ୍ଷ୍ୟ ଥିଲା ଐତିହାସିକ, ଆତ୍ମିକ, ଆଧ୍ୟାତ୍ମିକ, ଅଧିଯାଜ୍ଞିକ, ପ୍ରାକୃତିକ ଓ ବ୍ରହ୍ମଜ୍ଞାନ ଅର୍ଜନ । ସେତେବେଳେ ବିଦ୍ୟାର୍ଥୀମାନେ ସାଧାରଣତଃ ୧୨ ବର୍ଷଠାରୁ ୨୪ ବର୍ଷ ପର୍ଯ୍ୟନ୍ତ ୧୨ବର୍ଷ କାଳ ବିଦ୍ୟାର୍ଜନରେ ମନୋନିବେଶ କରୁଥିଲେ । ଏତଦ୍ଵ୍ୟତୀତ ୩୨ ବର୍ଷ, ଏପରିକି ଆଜୀବନ ବିଦ୍ୟାଧ୍ୟୟନ କରିବାର ଦୃଷ୍ଟାନ୍ତ ମଧ୍ୟ ତଦାନୀନ୍ତନ ସମାଜରେ ବିରଳ ନ ଥିଲା ।

ଗୁରୁଗୃହରେ ରହି ବିଦ୍ୟାର୍ଜନ କରିବା ବ୍ୟତୀତ ଅନ୍ୟାନ୍ୟ ଉପାୟରେ ମଧ୍ୟ ଶିକ୍ଷାପ୍ରସାର ଘଟୁଥିଲା । ଚରକମାନେ ଗୃହ ଗୃହ ଓ ଗ୍ରାମଗ୍ରାମ ବୁଲି ଶିକ୍ଷା ବିତରଣ କରୁଥିଲେ । ଏହା ବ୍ୟତୀତ, ଉଚ୍ଚଶିକ୍ଷାର ଅଭିବୃଦ୍ଧି ସାଧନ ନିମନ୍ତେ ପରିଷଦ ଗଠିତ ହୋଇଥିଲା ଏବଂ ଶିକ୍ଷା ସମ୍ମେଳନ ଆହୂତ ହେଉଥିଲା । ପାଞ୍ଚାଳ ପରିଷଦ ଏକ ସୁସଂଗଠିତ ଶିକ୍ଷାକେନ୍ଦ୍ର ଥିଲା । ବିଦେହର ରାଜା ଏକାଧିକ ଶିକ୍ଷା ସମ୍ମିଳନୀ ଡକାଇ ଦର୍ଶନତତ୍ତ୍ଵ ଓ ଆଧ୍ୟାତ୍ମ୍ୟଶାସ୍ତ୍ର ଆଲୋଚନାକୁ

ସ୍ୱୀକୃତ କରିଥିଲେ । ସେହି ଯୁଗର ଶ୍ରେଷ୍ଠ ପଣ୍ଡିତ ଓ ଦାର୍ଶନିକମାନଙ୍କ ମଧ୍ୟରେ, ଅରୁଣୀ, ଅଶ୍ୱଲ, ଆର୍ତ୍ତଭାଗ, ଉଦ୍ଦାଳକ, ଉଷସ୍ତ, ଭୁଜ୍ୟୁ, ଗାର୍ଗୀ, ଜନକାଭୁକର୍ଣ୍ୟ; ଯାଜ୍ଞବଲ୍କ୍ୟ, ଶାକଲ୍ୟ, ଶ୍ୱେତକେତୁ ପ୍ରମୁଖଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ ।

ଉତ୍ତରକାଳୀନ ବୈଦିକ ଯୁଗରେ ଶିକ୍ଷାର ପରିସର ଖୁବ୍ ବିସ୍ତୃତ ଥିଲା । ସେତେବେଳେ ବେଦ, ଧନୁର୍ବେଦ, ଗନ୍ଧର୍ବବେଦାଦି ଉପବେଦ; ଉପନିଷଦ, ଇତିହାସ, ପୁରାଣ, ରାଶି (ଗଣିତ), ଦୈବ (ଲକ୍ଷଣ ବିଦ୍ୟା), ନିଧି (ଖଣିଜ ବିଦ୍ୟା), ଏକାୟନ (ବା ନୀତିଶାସ୍ତ୍ର), ତର୍କଶାସ୍ତ୍ର, ଦେବବିଦ୍ୟା (ପୂଜାବିଧି), ବ୍ରହ୍ମବିଦ୍ୟା (ଶିକ୍ଷା, କଳ୍ପ, ବ୍ୟାକରଣ, ଛନ୍ଦାଦି ଷଡ଼ ବେଦାଙ୍ଗ ବିଦ୍ୟା), ଭୂତବିଦ୍ୟା (ପ୍ରାଣୀବିଜ୍ଞାନ), କ୍ଷେତ୍ରବିଦ୍ୟା (ସାମରିକ ବିଜ୍ଞାନ), ନକ୍ଷତ୍ର ବିଦ୍ୟା (ଜ୍ୟୋତିଷ), ସର୍ପବିଦ୍ୟା (ବା ଗାରୁଡ଼ବିଦ୍ୟା), ଦେବ ଜ୍ଞାନ ବିଦ୍ୟା (ନାଚ, ଗୀତ, ସଙ୍ଗୀତ ପ୍ରଭୃତି) ଇତ୍ୟାଦି ବିଭିନ୍ନ ବିଷୟରେ ଶିକ୍ଷା ଦିଆଯାଉଥିଲା । ପୁଣି ବିଷୟବସ୍ତୁର ସାରମର୍ମ ହୃଦୟଙ୍ଗମ ନ କରି କେବଳ ଆବୃତ୍ତି କରିବା ଘୋର ନିନ୍ଦନୀୟ ହେଉଥିଲା । ସେ ପ୍ରକାର ଛାତ୍ରଙ୍କୁ 'ସ୍ଥାଣୁ' ବୋଲି କୁହାଯାଉଥିଲା । ପ୍ରଶ୍ନିନ (ପ୍ରଶ୍ନକର୍ତ୍ତା), ଅଭିପ୍ରଶ୍ନିନ (ପ୍ରତିପ୍ରଶ୍ନକର୍ତ୍ତା) ଓ ପ୍ରଶ୍ନବିବାକ ବା ପ୍ରାବାଚକ (ଉତ୍ତରଦାତା)ଙ୍କ ମଧ୍ୟରେ ତର୍କ ଓ ଆଲୋଚନାଦ୍ୱାରା ବିଭିନ୍ନ ଶାସ୍ତ୍ରର ବ୍ୟାଖ୍ୟା ଓ ବିଶ୍ଳେଷଣ କରାଯାଉଥିଲା ।

ବୈଦିକଯୁଗୀୟ ଶିକ୍ଷାପଦ୍ଧତିର ଏକ ବିଶେଷତ୍ୱ ଏହି ଯେ, ସେତେବେଳେ ନାରୀ ଓ କ୍ଷତ୍ରିୟମାନେ ମଧ୍ୟ ଉଚ୍ଚ ଶିକ୍ଷା ଲାଭର ସୁଯୋଗ ପାଉଥିଲେ । ଗାର୍ଗୀ ଓ ମୈତ୍ରେୟୀଙ୍କ ଭଳି ନାରୀମାନେ ଉକ୍ତ ସମାଜର ନମସ୍ୟା ଥିଲେ ଏବଂ ଜନକ, ଅଶ୍ୱପତି, ବୃହଦ୍ରଥ, ଅଜାତଶତ୍ରୁ ପ୍ରଭୃତି ରାଜାମାନେ ଜଣେ ଜଣେ ଶିକ୍ଷାବିତ୍ ଥିଲେ ଓ ଉଚ୍ଚଶିକ୍ଷାର ପ୍ରସାର ଲାଗି ପ୍ରଶଂସନୀୟ ଉଦ୍ୟମ କରିଥିଲେ ।

## ଧାର୍ମିକ ବିକାଶ

ବୈଦିକ ଯୁଗର ଅନ୍ତିମ ପର୍ଯ୍ୟାୟରେ ଧର୍ମକ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ପରିଲକ୍ଷିତ ହୋଇଥିଲା । ପୁରାତନ ଦେବତାମାନଙ୍କ ପ୍ରତି ଭକ୍ତିଭାବ ହ୍ରାସ ପାଇଲା ଏବଂ ବହୁ ଦେବଦେବୀଙ୍କର ଉପାସନା ପରିବର୍ତ୍ତେ ଏକେଶ୍ୱର-

ବାଦ ପ୍ରବର୍ତ୍ତିତ ହେବାକୁ ଲାଗିଲା । ସେହି ସମାଜରେ ବିଷ୍ଣୁ ଓ ରୁଦ୍ର ଦେବଙ୍କର ଆବିର୍ଭାବ ଘଟିଲା ଏବଂ ପ୍ରଜାପତି ପ୍ରଭୃତି ପୁରାତନକାଳୀନ ଦେବ-ଦେବୀଙ୍କର ପ୍ରାଧାନ୍ୟ କମିଗଲା । ସେତେବେଳେ ବିଭିନ୍ନ ଧାର୍ମିକ କ୍ରିୟା ଓ ଆଚାର ବିଧି ପ୍ରବର୍ତ୍ତିତ ହୋଇଥିଲା ଏବଂ ପୁରୋହିତ ସମାଜର ଅଭ୍ୟୁଦୟ ଘଟିବା ସଙ୍ଗେ ସଙ୍ଗେ ବିଧିବଦ୍ଧ ଭାବେ ବିଭିନ୍ନ ହୋମ, ଯଜ୍ଞ ଓ କର୍ମକାଣ୍ଡ ପ୍ରଚଳିତ ହୋଇଥିଲା । ଏହା ବ୍ୟତୀତ, ତତ୍କାଳୀନ ସମାଜରେ ଭୂତ, ପ୍ରେତ, ଗାରଡ଼ି, ଯାଦୁବିଦ୍ୟା ଓ ନାନାପ୍ରକାର ଅନ୍ଧବିଶ୍ୱାସ ମଧ୍ୟ ଦେଖାଦେଇଥିଲା ।

ଅନ୍ୟପକ୍ଷରେ, ସେହି ସମୟରେ ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦର ପ୍ରଭାବରେ ଆତ୍ମା, ବ୍ରହ୍ମ, କର୍ମ, ମାୟା, ମୁକ୍ତି ଓ ନିର୍ବାଣାଦି ହିନ୍ଦୁଧର୍ମର ମୂଳମନ୍ତ୍ରଗୁଡ଼ିକ ମଧ୍ୟ ପ୍ରସ୍ଫୁରିତ ହୋଇଥିଲା । ଏଣୁ ମେକ୍‌ଡୋନେଲ ତାଙ୍କର 'Inda's Past' ପୁସ୍ତକରେ ଯଥାର୍ଥରେ ମତ ବ୍ୟକ୍ତ କରିଛନ୍ତି, "ମାନବିକ ଚିନ୍ତାଧାରାର ଇତିହାସରେ 'ବ୍ରହ୍ମ' ଧାରଣା ସର୍ବପ୍ରଥମେ 'ବୃହଦାରଣ୍ୟକ ଉପନିଷଦ'ରେ ସ୍ପଷ୍ଟ ଭାବେ ପ୍ରକାଶପାଇଛି ।"

## ଭାରତୀୟ ଇତିହାସକୁ ଆର୍ଯ୍ୟମାନଙ୍କର ଦାନ

ପୂର୍ବବର୍ତ୍ତୀ ଦୁଇଟି ପରିଚ୍ଛେଦରେ ଯାହା ଆଲୋଚିତ ହେଲା ସେଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ଭାରତୀୟ ଇତିହାସକୁ ଉନ୍ନତ ଓ ଗତିଶୀଳ କରିବା କ୍ଷେତ୍ରରେ ଆର୍ଯ୍ୟମାନଙ୍କର ଅବଦାନ ଅନୁପମ । ସେମାନେ ସାମାଜିକ ଜୀବନର ପ୍ରତ୍ୟେକ ସ୍ତରରେ ପରିବର୍ତ୍ତନ ଆଣିଥିଲେ ଏବଂ ମାନବଜୀବନକୁ ସାମଗ୍ରିକ ଭାବେ ସମୃଦ୍ଧ କରିବାରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ବିଶିଷ୍ଟ ଐତିହାସିକ ଯଦୁନାଥ ସରକାରଙ୍କର ଅଭିମତ ଉଦ୍ଧାରପୂର୍ବକ ସଂକ୍ଷେପରେ ପ୍ରକାଶ କଲେ ଭାରତୀୟ ଇତିହାସକୁ ଆର୍ଯ୍ୟମାନଙ୍କର ଷଡ଼ବିଧ ଦାନ * ରହିଅଛି । ତାହା ହେଉଛି—

(୧) ଉନ୍ନତ ଆଧ୍ୟାତ୍ମିକତା, ଯାହାକି ଅନାର୍ଯ୍ୟମାନଙ୍କୁ ମଧ୍ୟ ଆର୍ଯ୍ୟଧର୍ମ ପ୍ରତି ଆକୃଷ୍ଟ କରି ହିନ୍ଦୁବାଦର ପ୍ରସାର ଘଟାଇଥିଲା ।

---

* ସାର୍ ଯଦୁନାଥ ସରକାରଙ୍କର "India Through The Ages" ପୁସ୍ତକର ପୃ ୯ ଦ୍ରଷ୍ଟବ୍ୟ ।

(୨) ଚତୁରାଶ୍ରମର ପ୍ରତ୍ୟେକ ସ୍ତରକୁ ସୂକ୍ଷ୍ମ ବିଶ୍ଳେଷଣପୂର୍ବକ ଶାନ୍ତିସମ୍ମତ ବା ସୁନିୟନ୍ତ୍ରିତ କରିବାର ଉଦ୍ଦୀପନା ।

(୩) ସାହିତ୍ୟ ଓ କଳା ସୃଷ୍ଟି କ୍ଷେତ୍ରରେ ଅନ୍ତରଞ୍ଜନ, ଭାବପ୍ରବଣତା ଓ ଅସମ୍ଭାବ୍ୟତା ପରିବର୍ତ୍ତେ ସଂଯତ ଓ ସୁଶୃଙ୍ଖଳ ପରିକଳ୍ପନା ।

(୪) କାର୍ଯ୍ୟକଳାପ ଓ ପରଂପରାର ଭିତ୍ତି ଉପରେ ପାରସ୍ପରିକ ବହିଷ୍କରଣକ୍ଷମ ଜାତିଗତ ଶ୍ରେଣୀବିଭାଗ ।

(୫) ମାତୃ-ପରଂପରା (Matriarchy) ଓ ବହୁପତି ଗ୍ରହଣ ପ୍ରଥା ନିଷିଦ୍ଧ ହେବା ସଙ୍ଗେ ସଙ୍ଗେ ନାରୀ ଜାତି ପ୍ରତି ସମ୍ମାନ ପ୍ରଦର୍ଶନ ।

(୬) ଖ୍ରୀଷ୍ଟୀୟ ୟୁରୋପର ନଗର ବିଶ୍ୱବିଦ୍ୟାଳୟ ଓ ଶିକ୍ଷାବିହାର ସମକକ୍ଷ ଆଶ୍ରମପୀଠ ।

ଏହି ଆର୍ଯ୍ୟ ସଂସ୍କୃତି ହିଁ କାଳକ୍ରମେ ରୂପାନ୍ତରିତ ହୋଇ ଆଜି ଭାରତୀୟ ଜୀବନର ବିଭିନ୍ନତା ମଧ୍ୟରେ ଐକ୍ୟ-ମନ୍ତ୍ର ପ୍ରଚାର କରି ଆମ ସାମାଜିକ ଜୀବନକୁ ନିୟନ୍ତ୍ରିତ କରୁଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

---

## ଚତୁର୍ଥ ପର୍ଯ୍ୟାୟ

# ମାଗଧ ଯୁଗ

ବୈଦିକ ଯୁଗରେ ହିଁ ସାର୍ବଭୌମ ସମ୍ରାଟ ପରମ୍ପରାର ଭିତ୍ତି ସ୍ଥାପିତ ହୋଇଥିଲା । ଆର୍ଯ୍ୟ ସମାଜ ଦକ୍ଷିଣରେ ମାନ୍ଦ୍ରାଜଠାରୁ ଉତ୍ତରକୁ ହିମାଳୟ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କିନ୍ତୁ ବୈଦିକ ଯୁଗର ଅନ୍ତିମାବସ୍ଥାରେ ପ୍ରାୟ ଖ୍ରୀ. ପୂ. ଷଷ୍ଠଶତାବ୍ଦୀ ବେଳକୁ ଭାରତୀୟ ରାଜମଣ୍ଡଳରେ ଏକ ନବୀନ ଯୁଗର ପ୍ରବର୍ତ୍ତିତ ଘଟିଲା । ସେହି ସମୟରେ ଅଧିକ କ୍ଷମତାଶାଳୀ ଶାସକମାନଙ୍କର ଅଭ୍ୟୁଦୟ ଘଟିଲା ଏବଂ ବହୁ ପ୍ରଭୁତ୍ୱସମ୍ପନ୍ନ ସାମ୍ରାଜ୍ୟମାନ ମୁଣ୍ଡ ଟେକିଲା । ଅନ୍ତିମକାଳୀନ ବୈଦିକ ଯୁଗର ବାହ୍ମ-ସାହିତ୍ୟ ଓ ମାଗଧ ଯୁଗୀୟ ବୌଦ୍ଧତତ୍ତ୍ୱସମ୍ବଳିତ ରଚନାବଳୀରେ କଳିଙ୍ଗ, ଅବନ୍ତୀ, ସୁରାଷ୍ଟ୍ର ଆଦି ବହୁ ନୂତନ ସାମ୍ରାଜ୍ୟର ନାମ ଲିପିବଦ୍ଧ ହୋଇଛି । ବୌଦ୍ଧ ଧର୍ମର ବିକାଶ ପୂର୍ବରୁ କାବୁଲଠାରୁ ଗୋଦାବରୀ ମଧ୍ୟରେ ଅଙ୍ଗ (ପୂର୍ବବିହାର), ମଗଧ (ଦକ୍ଷିଣ ବିହାର), ବ୍ରିଜି (ଉତ୍ତର ବିହାର), କାଶୀ (ବାରାଣସୀ), କୋଶଳ (ଅଉଧ୍), ମଲ୍ଲ (ଗୋରଖ-ପୁର), ଚେଦି (ଯମୁନା ଓ ନର୍ମଦାର ମଧ୍ୟବର୍ତ୍ତୀ ଅଞ୍ଚଳ), ବତ୍ସ (ଆଲାହାବାଦ), କୁରୁ (ଦିଲ୍ଲୀ ଓ ମୀରଟ ଅଞ୍ଚଳ), ପାଞ୍ଚାଳ (ବାଦାଉନ୍, ବରେଲି ଓ ଫରୁଖା-ବାଦ ଅଞ୍ଚଳ), ମତ୍ସ୍ୟ (ଜୟପୁର), ସୁରସେନ (ମଥୁରା), ଅବନ୍ତୀ (ମାଳବ), ଅସ୍ମାକ୍ (ଗୋଦାବରୀ ଉପକୂଳ), ଗାନ୍ଧାର (ପେଶାଓ୍ୱାର ଓ ରାଓଲପିଣ୍ଡି) ଓ କମ୍ବୋଜ—ଏହି ଷୋଳଟି ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିବା କଥା ଆଦ୍ୟ-କାଳୀନ ବୌଦ୍ଧଗ୍ରନ୍ଥଗୁଡ଼ିକରୁ ପ୍ରତିପାଦିତ ହୁଏ ।

ସୁତରାଂ ଖ୍ରୀ: ପୂ: ଷଷ୍ଠ ଶତାବ୍ଦୀ ବେଳକୁ କୁରୁ-ପାଞ୍ଚାଳର ସାର୍ବ-ଭୌମତ୍ୱ ବିଲୁପ୍ତପ୍ରାୟ ହୋଇଗଲା ଏବଂ ପ୍ରାଚ୍ୟ ଅଞ୍ଚଳର ପ୍ରଭୁତ୍ୱ ଦୃଷ୍ଟିପଥାରୂଢ଼ ହେଲା । ପ୍ରାଚ୍ୟ ଅଞ୍ଚଳରେ ପୂର୍ବେ ଯେଉଁ ବିଦେହ ରାଜ୍ୟ ଖ୍ୟାତି ଅର୍ଜନ କରିଥିଲା, ତାହା ସ୍ଥାନରେ ବହୁ ଜାତି ଓ ସଂପ୍ରଦାୟର ସମ୍ମିଶ୍ରଣରେ ବ୍ରିଜି ରାଜ୍ୟ ମୁଣ୍ଡ

ହେଉଥିଲା । ବୈଶାଳୀ ଏହାର ରାଜଧାନୀ ଥିଲା ଏବଂ ସ୍ଥାନୀୟ ଅଧିବାସୀମାନେ ମାଙ୍ଗୋଲୀୟ ଓ ତିବ୍ବତୀୟ ପ୍ରଥାସବୁ ଅନୁସରଣ କରୁଥିଲେ । ସେଠାରେ କୌଣସି ଏକଚ୍ଛତ୍ରପତି ଶାସକ ନଥିଲେ । ଜନସଭଦ୍ୱାରା ରାଜ୍ୟର ଶାସନ କାର୍ଯ୍ୟ ପରିଚାଳିତ ହେଉଥିଲା ଏବଂ ତାହା ଥିଲା ଗଣତନ୍ତ୍ର ତଥା ଗଣରାଜ୍ୟର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । କେବଳ ବ୍ରଜ କାହିଁକି ମଲ୍ଲ, ଶାଖ ପ୍ରଭୃତି ଅନ୍ୟ କେତେକ କ୍ଷୁଦ୍ର ରାଜ୍ୟରେ ମଧ୍ୟ ଅନୁରୂପ ଗଣତାନ୍ତ୍ରିକ ଶାସନପ୍ରଣାଳୀ ପ୍ରବର୍ତ୍ତିତ ହୋଇଥିଲା ।

କିନ୍ତୁ ତତ୍‌କାଳୀନ ଗଣତାନ୍ତ୍ରିକ ଶାସନ ଦୀର୍ଘସ୍ଥାୟୀ ହୋଇ ପାରି ନଥିଲା । ଅଳ୍ପ କାଳ ମଧ୍ୟରେ ଚାରୋଟି କ୍ଷମତାଶାଳୀ ସାମ୍ରାଜ୍ୟର ଅଭ୍ୟୁଦୟ ଘଟିବା ପରେ ସେହି ଗଣତାନ୍ତ୍ରିକ ଶାସନର ଅବସାନ ଘଟିଥିଲା । ସେହି ଚାରୋଟି ସାମ୍ରାଜ୍ୟ ଥିଲା — ଅବନ୍ତୀ, ବତ୍ସ, କୋଶଳ ଓ ମଗଧ । ଅବନ୍ତୀରେ ଚଣ୍ଡ ପ୍ରଦ୍ୟୋତ ମହାସେନ ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ଉଜ୍ଜୟିନୀ ଥିଲା ତାର ରାଜଧାନୀ । ବତ୍ସ ଦେଶର ରାଜଧାନୀ କୌଶାମ୍ବୀରେ ଭରତବଂଶର ରାଜା ଉଦୟନ ସିଂହାସନ ମଣ୍ଡନ କରୁଥିଲେ । ସେ ଅବନ୍ତୀ ନରେଶ ପ୍ରଦ୍ୟୋତଙ୍କ କନ୍ୟା ବାସବଦତ୍ତା ଏବଂ ଅଙ୍ଗ ଓ ମଗଧର ଅନ୍ୟ ଦୁଇ ରାଜକୁମାରୀଙ୍କୁ ବିବାହ କରି ଅବନ୍ତୀଠାରୁ ଅଙ୍ଗ ଓ କଳିଙ୍ଗ ପର୍ଯ୍ୟନ୍ତ ତାଙ୍କର ପ୍ରଭୁତ୍ୱ ବିସ୍ତାର କରିଥିଲେ । କୋଶଳର ରାଜଧାନୀ ଅଯୋଧ୍ୟାରେ ବିଖ୍ୟାତ ଇକ୍ଷ୍ୱାକୁ ବଂଶର ରାଜାମାନେ ଶାସନ କରୁଥିଲେ । କୋଶଳର ପ୍ରାଧାନ୍ୟ ବିକାଶ ଲାଭ କରିବା ପୂର୍ବରୁ କାଶୀ କ୍ଷମତାଶାଳୀ ସାମ୍ରାଜ୍ୟ ଥିଲା । କାଶୀ ଓ କୋଶଳ ମଧ୍ୟରେ ବହୁକାଳଧରି ସଂଘର୍ଷ ଲାଗି ରହିଥିଲା । କୋଶଳର ଶ୍ରାବସ୍ତୀଠାରେ ଦଧିଭ ରାଜତ୍ୱ କରୁଥିଲା ବେଳେ କାଶୀ ନରପତି ବ୍ରହ୍ମଦତ୍ତ କୋଶଳ ଆକ୍ରମଣ କରିଥିଲେ ଏବଂ ପରେ କୋଶଳରାଜ କଂସ କାଶୀ ଜୟ କରିଥିଲେ । ବୁଦ୍ଧଦେବଙ୍କ ସମୟରେ ସେଠାରେ ଶାସନ କରୁଥିଲେ ରାଜା ମହାକୋଶଳ ଓ ତାଙ୍କର ପୁତ୍ର ପ୍ରସେନଜିତ । ସେହି ସମୟରେ ମଗଧରେ ଶିଶୁନାଗବଂଶର (୧) ରାଜାମାନେ

---

(୧)—ବୌଦ୍ଧ ଶାସ୍ତ୍ରକାରମାନେ ତତ୍କାଳୀନ ମଗଧ ରାଜାମାନଙ୍କୁ ଦୁଇଟି ରାଜବଂଶରେ ବିଭକ୍ତ କରି ଆଦ୍ୟକାଳୀନ ଶାସକମାନଙ୍କୁ ହର୍ଯ୍ୟଙ୍କ ଓ ପରବର୍ତ୍ତୀକାଳୀନ ରାଜାମାନଙ୍କୁ ଶିଶୁନାଗବଂଶୀୟ ରାଜାବୋଲି ବର୍ଣ୍ଣନା କରିଛନ୍ତି ।

ରାଜତ୍ୱ କରୁଥିଲେ । ବୁଦ୍ଧଦେବଙ୍କ ନିର୍ବାଣର (୨) ଷାଠିଏ ବର୍ଷ ପୂର୍ବେ ଖ୍ରୀ:ପୂ: ୫୪୫ ରେ ପନ୍ଦର ବର୍ଷ ବୟସରେ ବିମ୍ବିସାର ମଗଧ ସିଂହାସନ ଆରୋହଣ କରିଥିବା ଜଣାଯାଏ । ବିମ୍ବିସାର ଓ ତାଙ୍କ ପୁତ୍ର ଅଜାତଶତ୍ରୁଙ୍କ ରାଜତ୍ୱ କାଳରେ ମଗଧ ସମଗ୍ର ଦେଶରେ ଏକ ବିରାଟ ସାମ୍ରାଜ୍ୟ ରୂପେ ମୁଣ୍ଡ ଟେକିଥିଲା ।

## ବିମ୍ବିସାର

ବିମ୍ବିସାର (୩) କୋଶଳାଧିପତି ପ୍ରସେନଜିତଙ୍କର ଭଗିନୀଙ୍କୁ ବିବାହ କରି କାଶୀର ଗୋଟିଏ ଗ୍ରାମ ଯୌତୁକ ସ୍ୱରୂପ ପାଇଥିଲେ ଏବଂ ବୈଶାଳୀରୁ ବୈଦେହୀବାସବୀ ନାମ୍ନୀ ରାଜକୁମାରୀଙ୍କୁ ବିବାହ କରିବାପରେ ତାଙ୍କ ସାମ୍ରାଜ୍ୟକୁ ନେପାଳସୀମା ପର୍ଯ୍ୟନ୍ତ ସମ୍ପ୍ରସାରିତ କରିଥିଲେ । ଏହା ବ୍ୟତୀତ ରାଜନର୍ତ୍ତକୀ ଅମ୍ବାପାଲୀ ସହିତ ମଧ୍ୟ ତାଙ୍କର ଗୁପ୍ତ ପ୍ରଣୟ ଥିବା ଜଣାଯାଏ, କାରଣ କେତେକ ଐତିହାସିକ ମତ ବ୍ୟକ୍ତ କରନ୍ତି ଯେ, ତାଙ୍କ ଔରସରୁ ଅମ୍ବାପାଲୀଙ୍କ ଗର୍ଭରୁ ଅଭୟ ନାମକ ଏକ ପୁତ୍ର ଜାତ ହୋଇଥିଲା । ବୌଦ୍ଧଗ୍ରନ୍ଥକାରମାନେ କେତେକ ସ୍ଥଳେ ଜୈନମାନଙ୍କ ସହିତ ଏକମତ ନ ହେଲେ ମଧ୍ୟ ଅଜାତଶତ୍ରୁଙ୍କୁ କୋଶଳ ରାଜକୁମାରୀଙ୍କ ଗର୍ଭଜାତ ସନ୍ତାନ ରୂପେ ଧରାଯାଇପାରେ, କାରଣ ତାହା ପରବର୍ତ୍ତୀ ବୌଦ୍ଧଗ୍ରନ୍ଥଗୁଡ଼ିକରେ ସ୍ୱୀକୃତ ହୋଇଅଛି । ଅଜାତଶତ୍ରୁଙ୍କ ବ୍ୟତୀତ ବିମ୍ବିସାରଙ୍କର ଅଭୟ, ମେଘକୁମାର, ନନ୍ଦସେନ ପ୍ରମୁଖ ବହୁ ପୁତ୍ର ଥିବା ଜଣାଯାଏ ।

ବିମ୍ବିସାର ମହାଭାରତରେ ଉଲ୍ଲେଖ ଥିବା ଜରାସନ୍ଧଙ୍କର ପାଞ୍ଚୋଟି ଗିରିଦ୍ୱାର ପରିବେଷ୍ଟିତ ରାଜଧାନୀ ଗିରିବ୍ରଜଠାରେ ଶାସନ ପୀଠ ପ୍ରତିଷ୍ଠା କରିଥିଲେ ଏବଂ ସେହି ଗିରିବ୍ରଜର ପାଦଦେଶରେ ରାଜଗୃହ ନାମକ ଏକ ନଗରୀ ନିର୍ମାଣ କରିଥିଲେ (୪) । ତାଙ୍କ ଶାସନାଧୀନରେ ୮୦,୦୦୦ ଗ୍ରାମ ରହିଥିଲା ଏବଂ ସେ ଜଣେ ନିପୁଣ ଓ ବିଚକ୍ଷଣ ଶାସକ ଥିଲେ । ସେ ବୃଦ୍ଧାବସ୍ଥାରେ ସ୍ୱପୁତ୍ର

---

(୨)—ବୁଦ୍ଧଦେବଙ୍କର ଜନ୍ମ ଓ ମୃତ୍ୟୁ ସମୟ ନିରୂପଣରେ ନାନା ମତଭେଦ ଦେଖାଯାଏ । ତେବେ ଅନେକ କାରଣରୁ ଖ୍ରୀଷ୍ଟପୂର୍ବ ୪୮୬ରେ ହିଁ ତାଙ୍କର ନିର୍ବାଣ ଘଟିଛି ବୋଲି ବହୁ ଐତିହାସିକ ଏକମତ ହୋଇଛନ୍ତି ।

(୩)—ବିମ୍ବିସାର ଶ୍ରେଣିକ ନାମରେ ମଧ୍ୟ ପରିଚିତ ।

(୪)—ଏହା ବର୍ତ୍ତମାନ 'ରାଜଗିର' ନାମରେ ପରିଚିତ ।

ଅଜାତଶତ୍ରୁଙ୍କ ଦ୍ୱାରା ବନ୍ଦୀ ହୋଇ ସେହି ବନ୍ଦୀଗୃହରେ ହିଁ ପ୍ରାଣତ୍ୟାଗ କରିଥିଲେ (୫)

**ଅଜାତ ଶତ୍ରୁ**

ବିମ୍ବିସାରଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ଅଜାତଶତ୍ରୁ (୬) ସିଂହାସନ ଆରୋହଣ କଲେ । ତାଙ୍କଶାସନ କାଳରେ ମଗଧଇତିହାସରେ ଘୋର ପରିବର୍ତ୍ତନ ଦେଖାଦେଇଥିଲା । ବିମ୍ବିସାରଙ୍କ ଶାଳକ କୋଶଳାଧିପତି ପ୍ରସେନଜିତ୍ ଚିତ୍ତଦ୍ରୋହୀ ଅଜାତଶତ୍ରୁଙ୍କଠାରୁ ତାଙ୍କ ପିତାଙ୍କୁ ଯୌତୁକ ରୂପେ ଦେଇଥିବା କାଶୀ ଗ୍ରାମକୁ ଫେରାଇ ନେବାପାଇଁ ଚାହିଁବାରୁ ଉଭୟଙ୍କ ମଧ୍ୟରେ ସଂଘର୍ଷର ସୂତ୍ରପାତ ହୋଇଥିଲା ଏବଂ ବୈଶାଳୀ ସମ୍ରାଟ ଚେଦତଙ୍କର ଅଧିନାୟକତ୍ୱରେ ବୈଶାଳୀ, କୁଶିନଗର ପ୍ରଭୃତି ଛତିଶଟି ରାଜ୍ୟ ମଧ୍ୟ ଅଜାତଶତ୍ରୁଙ୍କ ବିରୋଧରେ ଖଡ୍ଗହସ୍ତ ହୋଇ ଉଠିଥିଲେ । ଏପରିକି ବିମ୍ବିସାରଙ୍କ ବନ୍ଧୁ ଅବନ୍ତୀ ଅଧିପତି ପ୍ରଦ୍ୟୋତ ବି ଅଜାତଶତ୍ରୁଙ୍କର ବିରୋଧରେ ଯାଇଥିଲେ । କିନ୍ତୁ ବିଶ୍ୱସ୍ତ ଅମାତ୍ୟବର୍ଗ ଓ ନିଜର ବିଚକ୍ଷଣତା ବଳରେ ସେ ବିଶ୍ୱବିଜୟୀ ହୋଇ ପାରିଥିଲେ । ସେ ବୈଶାଳୀକୁ ନିଜର କରଗତ କରିଥିଲେ ଏବଂ ପ୍ରସେନଜିତଙ୍କର କନ୍ୟା ବାଜିରାଙ୍କୁ ବିବାହ କରିଥିଲେ । ଏହି ଯୁଦ୍ଧଯାତ୍ରା ନିମିତ୍ତ ତାଙ୍କର ପତ୍ନୀ ପଦ୍ମାବତୀ ତାଙ୍କୁ ପ୍ରବର୍ତ୍ତାଇଥିଲେ ବୋଲି କୁହାଯାଏ । ତେବେ ଏଥି ନିମିତ୍ତ ସେ ରାଜଗୃହ ଓ ପାଟଳୀପୁତ୍ର ଉଭୟ ସ୍ଥାନରେ ରାଜଧାନୀ ସ୍ଥାପନ କରିଥିଲେ । ପାଟଳୀପୁତ୍ର-ଠାରେ ବୁଦ୍ଧଦେବଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା ଏବଂ ସେଠାରେ ବୁଦ୍ଧଦେବ ପାଟଳୀପୁତ୍ର ଭବିଷ୍ୟତରେ ଆର୍ଯ୍ୟ ଭାରତର ମୁଖ୍ୟ ନଗରୀରେ ପରିଣତ ହେବ ବୋଲି ଭବିଷ୍ୟତ ବାଣୀ ଶୁଣାଇଥିଲେ ।

ବୁଦ୍ଧ ଓ ମହାବୀରଙ୍କ ସଂସ୍ପର୍ଶରେ ଆସିବା ପରେ ହିଁ ଅଜାତଶତ୍ରୁଙ୍କ ଜୀବନରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଘଟିଥିଲା ଏବଂ ସେ ଧର୍ମିକାରେ ମନ ବଳାଇଥିଲେ । ତାଙ୍କ ଶାସନ କାଳରେ ଭାରତୀୟ ଇତିହାସର ଦୁଇଜଣ ଶ୍ରେଷ୍ଠ ଧର୍ମବୀର ବୁଦ୍ଧ ଓ ମହାବୀରଙ୍କର ମହାପ୍ରୟାଣ ଘଟିଥିଲା ।

(୫)—ବୁଦ୍ଧଦେବଙ୍କର ଜ୍ଞାତି ଭ୍ରାତା ଦେବଦତ୍ତଙ୍କ ପରାମର୍ଶରେ ଅଜାତଶତ୍ରୁ ବୁଦ୍ଧଦେବଙ୍କ ମୃତ୍ୟୁର ଆଠବର୍ଷ ପୂର୍ବେ ସ୍ୱପିତା ବିମ୍ବିସାରଙ୍କୁ ହତ୍ୟା କରିଥିଲେ ବୋଲି ବୌଦ୍ଧଗ୍ରନ୍ଥରୁ ପ୍ରମାଣ ମିଳେ । କିନ୍ତୁ ଜୈନ ଗ୍ରନ୍ଥଗୁଡ଼ିକରେ ବିମ୍ବିସାର ପୁତ୍ରଦ୍ୱାରା ବନ୍ଦୀହୋଇ ସ୍ୱହସ୍ତରେ ଆତ୍ମହତ୍ୟା କରିଥିଲେବୋଲି ଉଲ୍ଲେଖ ଅଛି ।

(୬)—ଅଜାତଶତ୍ରୁ 'କୁଣିକ' ନାମରେ ପରିଚିତ ।

## ନନ୍ଦବଂଶ

ଅଜାତଶତ୍ରୁଙ୍କ ପରେ ଦର୍ଶକ ଓ ତାଙ୍କ ପରେ ଉଦୟୀ (ଉଦୟନ) ଶାସନ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିବା କଥା ବିଭିନ୍ନ ପୁରାଣରେ ବର୍ଣ୍ଣିତ ହୋଇଅଛି । ଭାଷଙ୍କ ରଚିତ 'ସ୍ୱପ୍ନବାସବଦତ୍ତା' ନାଟକରେ ଦର୍ଶକ ଓ ଉଦୟନ ସମସାମୟିକ ବ୍ୟକ୍ତି ଏବଂ ଦର୍ଶକଙ୍କର ଭଗିନୀଙ୍କୁ ଉଦୟନ ବିବାହ କରିଥିଲେ ବୋଲି ଉଲ୍ଲେଖ ଥିବା ସ୍ଥଳେ ଅନ୍ୟାନ୍ୟ ଧର୍ମଗ୍ରନ୍ଥ ପ୍ରଣେତା ତଥା ବୌଦ୍ଧ ଓ ଜୈନ ଶାସ୍ତ୍ରକାରମାନେ ତାହାକୁ ସ୍ୱୀକାର ନ କରି ଉଦୟୀ ଦର୍ଶକଙ୍କ ପୁତ୍ର ବୋଲି ମତବ୍ୟକ୍ତ କରିଛନ୍ତି । ଅନେକ ଐତିହାସିକ ଏହି ପରୋକ୍ତ ମତକୁ ହିଁ ଗ୍ରହଣ କରିଛନ୍ତି । ଉଦୟୀ ବା ଉଦୟନଙ୍କ ପରବର୍ତ୍ତୀ କାଳର ଇତିହାସ ସଂପର୍କରେ କୌଣସି ଲିପିବଦ୍ଧ ତଥ୍ୟ ପ୍ରକାଶ ପାଇନାହିଁ । ତେବେ ପୁରାଣ ଅନୁସାରେ ତାଙ୍କ ପରେ ନନ୍ଦ ବର୍ଦ୍ଧନ ଓ ମହାନନ୍ଦନ ରାଜତ୍ୱ କରିଥିବା ଜଣାଯାଏ ।

ମହାନନ୍ଦନ ଏକ ନୀଚ ଜାତିର ସ୍ତ୍ରୀକୁ ବିବାହ କରିଥିଲେ ଏବଂ ତାଙ୍କ ପୁତ୍ର ମହାପଦ୍ମନନ୍ଦଂକଠାରୁ ଶୂଦ୍ର ରାଜବଂଶର ସୂତ୍ରପାତ ହେଲା ବୋଲି କୁହାଯାଏ । କିନ୍ତୁ ବୌଦ୍ଧଗ୍ରନ୍ଥ ଅନୁସାରେ ଉଦୟୀଙ୍କ ପରେ ଅନୁରୁଦ୍ଧ, ମୁଣ୍ଡ, ନାଗଦଶକ, ଶିଶୁନାଗ ପ୍ରମୁଖ ତେରଜଣ ରାଜାଙ୍କର ଶାସନକାଳ ଶେଷରେ ନନ୍ଦବର୍ଦ୍ଧନଙ୍କ ଆବିର୍ଭାବ ହୋଇଥିବା ଉଲ୍ଲେଖ ଅଛି । ପୁଣି ଜୈନ ଗ୍ରନ୍ଥକାରମାନେ ମହାପଦ୍ମଙ୍କୁ ଜଣେ ଦାସୀପୁତ୍ରରୂପେ ବର୍ଣ୍ଣନା କରିଛନ୍ତି । ଯେ ଯାହାହେଉ, ମହାପଦ୍ମନନ୍ଦଙ୍କର ଆଠଟି ପୁତ୍ର କ୍ରମାନ୍ୱୟରେ ରାଜତ୍ୱ କରିଥିଲେ । ଏହି ନନ୍ଦବଂଶର ଅଷ୍ଟମ ଓ ଶେଷ ରଜା ଧନନନ୍ଦ ପ୍ରଭୃତି ଧନଶାଳୀ ଓ ବିକ୍ରମଶାଳୀ-ଥିଲେ ମଧ୍ୟ ନୀଚ ଜାତି ସମ୍ଭୂତ ହୋଇଥିବାରୁ ନିଜର ହୀନ ଆଚରଣ ଲାଗି ପ୍ରଜାବୃନ୍ଦଙ୍କର ସମ୍ମାନଭାଜନ ହୋଇପାରି ନଥିଲେ ।

## ବୈଦେଶିକ ଆକ୍ରମଣ

ବିମ୍ବିସାରଙ୍କ ସମୟରେ ହିଁ ଭାରତୀୟ ଇତିହାସରେ ପେର୍ସିଆ ଓ ମେସିଡ଼ୋନିଆ ପକ୍ଷରୁ ପ୍ରଥମ ଆକ୍ରମଣ ଆରମ୍ଭ ହେଲାବୋଲି କହାଯାଇପାରେ । ପ୍ରଥମେ ସାଇରସ୍ ( ଖ୍ରୀ: ପୂ: ୫୫୮-୫୩୦ ) ସିନ୍ଧୁ ନଦୀର ପଶ୍ଚିମାଞ୍ଚଳ ରାଜ୍ୟ ଗାନ୍ଧାରରେ ଆଧିପତ୍ୟ ବିସ୍ତାର କଲେ । ତାଙ୍କର ଶ୍ରେଷ୍ଠ ଉତ୍ତରାଧିକାରୀ

ଡେରିଅସ୍ ( ଖ୍ରୀ. ପୂ. ୫୨୨-୪୮୬ )ଙ୍କର ଅଭିଯାନ ଫଳରେ ରାଜପୁତାନା ମରୁଭୂମି ପର୍ଯ୍ୟନ୍ତ ଶତ୍ରୁ ଆକ୍ରମଣର ମାର୍ଗ ଉନ୍ମୁକ୍ତ ହୋଇଗଲା । ଡେରିଅସ୍‌ଙ୍କ ପୁତ୍ର ଜେରକ୍‌ସସ୍ ମଧ୍ୟ କେତେକ ଭାରତୀୟ ରାଜ୍ୟ ଉପରେ ଆଧିପତ୍ୟ ବିସ୍ତାର କରିଥିଲେ । କିନ୍ତୁ ଏ ସମସ୍ତ ବୈଦେଶିକ ହସ୍ତକ୍ଷେପ ଅପେକ୍ଷା ଖ୍ରୀ.ପୂ. ୩୨୬ରେ ମାସିଡୋନିଆ ସମ୍ରାଟ ଆଲେକ୍‌ଜାଣ୍ଡରଙ୍କ ଭାରତ ଆକ୍ରମଣ ଏ ଦେଶର ଇତିହାସରେ ଏକ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା ।

ଆଲେକଜାଣ୍ଡର ଖ୍ରୀ: ପୂ: ୩୨୭ରେ ହିନ୍ଦୁକୁଶ ଅତିକ୍ରମକରି ଭାରତରେ ପ୍ରଭୁତ୍ୱ ବିସ୍ତାର କରିବା ପାଇଁ ଆଗଭର ହେଲେ । ସିନ୍ଧୁନଦୀ ଅତିକ୍ରମ କରି ସେ ଯେତେବେଳେ ତକ୍ଷଶିଳାରେ ପହଞ୍ଚିଲେ, ସେଠାର ରାଜା ଅମ୍ଭି ତାଙ୍କୁ ବିପୁଳ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କଲେ ଏବଂ ତାଙ୍କର ସହଯୋଗ ଲାଭକରି ଆଲେକ୍‌ଜାଣ୍ଡର ଝେଲମ୍ ଉପକୂଳରେ ପହଞ୍ଚିଲେ । ସେଠାର ରାଜା ପୁରୁଙ୍କ ସହିତ ତାଙ୍କର ତୁମୁଳ ସଂଗ୍ରାମ ହେଲା ଏବଂ ଶେଷରେ ପୁରୁ ବନ୍ଦୀ ହେଲେ । ସେତେବେଳେ ପୁରୁ କିଭଳି ବ୍ୟବହାର ଚାହାନ୍ତି ବୋଲି ଆଲେକ୍‌ଜାଣ୍ଡର ପ୍ରଶ୍ନ କରିବାରୁ ତାର ଉତ୍ତରରେ ସେ "ମୁଁ ଜଣେ ରାଜା ଭଳି ବ୍ୟବହାର ଚାହେଁ" ବୋଲି ଯେତେବେଳେ କହିଲେ, ତାଙ୍କର ସେହି ନିର୍ଭୀକ ଓ ଦୃଢ଼ ମନୋଭାବ ଦେଖି ଆଲେକ୍‌ଜାଣ୍ଡର ପ୍ରୀତ ହୋଇ ତାଙ୍କର ରାଜ୍ୟ ତାଙ୍କୁ ଫେରାଇ ଦେଇଥିଲେ । ତା ପରେ ସେ ଗଙ୍ଗା ଉପକୂଳ ଅଞ୍ଚଳକୁ ଅଗ୍ରସର ହେବା ପାଇଁ ଚାହିଁଥିଲେ; କିନ୍ତୁ ତାଙ୍କର ସୈନ୍ୟବାହିନୀ ଅନିଚ୍ଛୁକ ହେବାରୁ ସେଥିରୁ ନିବୃତ୍ତ ହୋଇ ବେବିଲୋନ ପ୍ରତ୍ୟାବର୍ତ୍ତନ କରିଥିଲେ । ସେଠାରେ ସେ ରାଜଧାନୀ ପ୍ରତିଷ୍ଠା କରି ଅଧିକ ରାଜ୍ୟବିସ୍ତାର ପରିକଳ୍ପନା କଲାବେଳକୁ ଖ୍ରୀ: ପୂ: ୩୨୩ରେ ତାଙ୍କର ମୃତ୍ୟୁ ହେଲା ।

ଆଲେକ୍‌ଜାଣ୍ଡରଙ୍କ ଭାରତ ଆଗମନ ଫଳରେ ତଦାନୀନ୍ତନ ଭୂଗୋଳର ପରିସର ବୃଦ୍ଧିପ୍ରାପ୍ତ ହୋଇଥିଲା ଏବଂ ନୌବାଣିଜ୍ୟ ବିସ୍ତାର ଲାଗି ସୁଯୋଗ ମିଳିଥିଲା । ଆଲେକ୍‌ଜାଣ୍ଡରଙ୍କ ସମୟରେ ଭାରତର ସୀମାନ୍ତ ଅଞ୍ଚଳରେ ଯେଉଁସବୁ ଉପନିବେଶ ସ୍ଥାପିତ ହୋଇଥିଲା, ମୌର୍ଯ୍ୟମାନେ ମଧ୍ୟ ତାର ସାମୂହିକ ମୂଳୋତ୍ପାଟନ ନିମନ୍ତେ ସମର୍ଥ ହୋଇ ପାରି ନଥିଲେ । ବିଭିନ୍ନ ବୌଦ୍ଧଶାସ୍ତ୍ର ଓ ଗୀତା, ଭାଗବତ ଆଦି ଗ୍ରନ୍ଥ ସଂସ୍ପର୍ଶରେ ଆସି ପରବର୍ତ୍ତୀକାଳରେ କେବଳ ଗ୍ରୀକ୍‌ମାନେ ଭାରତୀୟ ଧର୍ମ ଓ ଦର୍ଶନରେ ପ୍ରଭାବିତ ହୋଇ ନଥିଲେ; ଅନ୍ୟ

ପକ୍ଷରେ ଭାରତୀୟମାନଙ୍କ ଉପରେ ମଧ୍ୟ ଗ୍ରୀକ୍ କଳା, ସ୍ଥାପତ୍ୟ ଓ ମୁଦ୍ରାମାନରେ ପ୍ରଭାବ ପଡ଼ିଥିଲା ।

## ମାଗଧ ସଭ୍ୟତା

ମାଗଧ ଯୁଗରେ ଭାରତୀୟ ରାଜନୀତିରେ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଦେଖାଦେବା ସଙ୍ଗେ ସଙ୍ଗେ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ମଧ୍ୟ ବିଶେଷ ଉନ୍ନତି ଘଟିଥିଲା । ସର୍ବୋପରି, ଜୈନଧର୍ମ ଓ ବୌଦ୍ଧଧର୍ମର ବିକାଶ ଓ ପ୍ରସାର ତଦାନୀନ୍ତନ ଯୁଗର ଏକ ବିଶିଷ୍ଟ ଐତିହାସିକ ବିଭବ ରୂପେ ଗଣନୀୟ (ଏ ବିଷୟରେ ପରବର୍ତ୍ତୀ ପର୍ଯ୍ୟାୟରେ ବିସ୍ତୃତ ଆଲୋଚନା କରାଯାଇ ଅଛି) । ଆର୍ଯ୍ୟମାନଙ୍କ ଶାସନକାଳରେ ଭାରତ ଯେଉଁ ସୁନାମ ଅର୍ଜନ କରିପାରିଥିଲା ତା ମୂଳରେ ମାଗଧମାନଙ୍କର ଯେ ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଥିଲା, ଏଥିରେ ସନ୍ଦେହ ନାହିଁ; ଏଣୁ ଭାରତୀୟ ଇତିହାସକୁ ମାଗଧ ସଭ୍ୟତାର ଦାନ ଅନସ୍ୱୀକାର୍ଯ୍ୟ ।

## ଶାସନ ଓ ରାଜନୀତି

ସେହି ସମୟରେ ବିହାର, ମାଳବ, ପଞ୍ଜାବ ପ୍ରଭୃତି ଦେଶରେ ଶକ୍ତିଶାଳୀ ରାଜାମାନେ ଶାସନ କରୁଥିଲେ । କେତେକ ରାଜ୍ୟରେ ଦ୍ୱୈତଶାସନ (Diarchy) ମଧ୍ୟ ପ୍ରଚଳିତ ଥିଲା । ରାଜକାର୍ଯ୍ୟ ସମ୍ପାଦନା କ୍ଷେତ୍ରରେ ରାଜାମାନେ ଉପଦେଷ୍ଟା ସଭାର ମତାମତ ନେଉଥିଲେ । ରାଜବଂଶଜାତ ବ୍ୟକ୍ତି, ସେନାଦକ୍ଷଗଣ ଓ ବ୍ରାହ୍ମଣମାନେ ଏହି ସଭାର ସଦସ୍ୟ ଥିଲେ । ଦୁରାଚାରୀ ରାଜାମାନଙ୍କୁ ଗାଦିଚ୍ୟୁତ କରିବା ଉଦାହରଣ ମାଗଧଯୁଗରେ ବିରଳ ନଥିଲା । ଏପରିକି ସାମ୍ରାଜ୍ୟବାଦର ପୀଠସ୍ଥଳୀ ମଗଧରେ ମଧ୍ୟ ପ୍ରଜାମାନଙ୍କଦ୍ୱାରା ଏକ ରାଜବଂଶର ପତନ ଘଟିଥିଲା । ସାଧାରଣତଃ ବଂଶାନୁକ୍ରମରେ ରାଜାମାନେ ସିଂହାସନ ଆରୋହଣ କରୁଥିଲେ; କିନ୍ତୁ ସେତେବେଳେ ମଧ୍ୟ ରାଜାମାନେ ମନୋନୀତ ହେଉଥିବାର କେତେକ ଉଦାହରଣ ରହିଛି ।

ରାଜ୍ୟବିସ୍ତାର ସଙ୍ଗେ ସଙ୍ଗେ ପ୍ରଦେଶଗୁଡ଼ିକରେ ବଡ଼ଲାଟମାନେ ନିଯୁକ୍ତ ହୋଇଥିଲେ ଏବଂ ବଡଲାଟ (Viceroy) ପଦବୀ ସୃଷ୍ଟି ପ୍ରଥମେ ମାଗଧଯୁଗରେ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ପୁରୋହିତ ଓ ସେନାପତି ଥିଲେ ତଦାନୀନ୍ତନ ରାଜଦରବାରରେ ଦୁଇଜଣ ବିଶିଷ୍ଟ ବ୍ୟକ୍ତି । 'ମହାମାତ୍ର'

ନାମରେ ଏକ ଉଚ୍ଚ କର୍ମଚାରୀ ଶ୍ରେଣୀର ସୃଷ୍ଟି ମାଗଧ ଯୁଗର ଅନ୍ୟ ଏକ ବୈଶିଷ୍ଟ୍ୟ । ସେମାନେ ଶାସନ କାର୍ଯ୍ୟରେ ବିଭିନ୍ନ ବିଭାଗର ଦାୟିତ୍ୱରେ ରହୁଥିଲେ । ଯେଉଁମାନେ ନ୍ୟାୟ ଶାସନ ଦାୟିତ୍ୱରେ ରହୁଥିଲେ ତାଙ୍କୁ 'ବ୍ୟବହାରିକ', ଯେଉଁମାନେ ଯୁଦ୍ଧ ପରିଚାଳନା କରୁଥିଲେ ତାଙ୍କୁ 'ସେନାନାୟକ' ଯେଉଁମାନେ ପରିମାପନ ବା ସର୍ଭେ କାର୍ଯ୍ୟରେ ନିଯୁକ୍ତ ରହୁଥିଲେ ତାଙ୍କୁ 'ରଜ୍ଜୁଗ୍ରାହକ', ଯେଉଁମାନେ ରାଜସ୍ୱ ଆଦାୟ କରୁଥିଲେ ସେମାନଙ୍କୁ 'ଦ୍ରୋଣମାପକ' ଏବଂ ଅନ୍ୟାନ୍ୟ ସାଧାରଣ କାର୍ଯ୍ୟର ଦାୟିତ୍ୱରେ ଥିବା ବ୍ୟକ୍ତିଙ୍କୁ 'ସର୍ବାର୍ଥକ' କୁହାଯାଉଥିଲା । ନ୍ୟାୟ ଶାସନ କ୍ଷେତ୍ରରେ କେତେକ ବିଶିଷ୍ଟ ମକଦ୍ଦମାରେ ସ୍ୱୟଂ ରାଜା ସକ୍ରିୟ ଅଂଶ ଗ୍ରହଣ କରୁଥିଲେ ଏବଂ ଅନ୍ୟାନ୍ୟ ସାଧାରଣ ବିଷୟରେ ବ୍ୟାବହାରିକମାନେ ସେହି କାର୍ଯ୍ୟ ନିର୍ବାହ କରୁଥିଲେ । ସାମରିକ କ୍ଷେତ୍ରରେ ପଦାତିକ, ଅଶ୍ୱାରୋହୀ, ଗଜାରୋହୀ ଓ ରଥାରୋହୀମାନଙ୍କୁ ନେଇ ସେନାବାହିନୀ ଗଠିତ ହୋଇଥିଲା । ଯୁଦ୍ଧହସ୍ତୀର ବ୍ୟବହାର ଏ ଯୁଗର ଏକ ସ୍ୱାତନ୍ତ୍ର୍ୟ । ଯୁଦ୍ଧରେ ଢାଲ, ଖଣ୍ଡା, ବର୍ଛା ଓ ଧନୁଶର ଇତ୍ୟାଦି ମଧ୍ୟ ବ୍ୟବହୃତ ହେଉଥିଲା । ଏହା ବ୍ୟତୀତ, ଯୁଦ୍ଧରେ କେତେକ ଯାନ୍ତ୍ରିକ ଉପକରଣ ମଧ୍ୟ ବ୍ୟବହାର କରାଯାଉଥିଲା ।

ସେତେବେଳେ ଉତ୍ପାଦିତ ଫସଲର ଏକ-ଷଷ୍ଠାଂଶ ରାଜସ୍ୱ ରୂପେ ଆଦାୟ କରାଯାଉଥିଲା । ରାଜସ୍ୱ ଆଦାୟ କରିବା ପାଇଁ ଗ୍ରାମଗୁଡ଼ିକରେ ଯେଉଁ ଗ୍ରାମମୁଖ୍ୟମାନେ ନିଯୁକ୍ତ ହେଉଥିଲେ ତାଙ୍କୁ 'ଗ୍ରାମ-ଭୋଜକ' କୁହାଯାଉଥିଲା । ଏହା ବ୍ୟତୀତ, ସେତେବେଳେ ବାଧ୍ୟତାମୂଳକ ଶ୍ରମବିନିଯୋଗ କରାଯାଉଥିଲା ଏବଂ ପଣ୍ୟକର ମଧ୍ୟ ଆଦାୟ ହେଉଥିଲା ।

## ସମାଜ ଜୀବନ

ଆର୍ଯ୍ୟମାନେ ସମଗ୍ର ଭାରତରେ ବ୍ୟାପକ ଭାବରେ ପ୍ରଭାବ ବିସ୍ତାର କରିବା ଫଳରେ ମାଗଧ ଯୁଗରେ ସାମାଜିକ ରୀତିନୀତିରେ ନାନା ବିଭିନ୍ନତା ଦୃଷ୍ଟିଗୋଚର ହେଲା । ଦକ୍ଷିଣ ଭାରତ ଓ ଉତ୍ତର ଭାରତର ସାଧାରଣ ଚଳଣିରେ କେତେକ ଉଲ୍ଲେଖଯୋଗ୍ୟ ପ୍ରଭେଦ ପରିଲକ୍ଷିତ ହେଲା । ସେତେବେଳେ ଦକ୍ଷିଣାଞ୍ଚଳର ସ୍ତ୍ରୀମାନେ ସ୍ୱାମୀମାନଙ୍କ ସହିତ ଏକତ୍ର ଭୋଜନ କରୁଥିଲା ବେଳେ ସେହି ସୁଯୋଗ ମଧ୍ୟ-ପ୍ରଦେଶ ଓ ଉତ୍ତରାଞ୍ଚଳର ନାରୀମାନଙ୍କୁ ମିଳୁ ନଥିଲା । ପୁଣି ଉତ୍ତରାଞ୍ଚଳରେ ସ୍ୱଗୋତ୍ର ବିବାହ ନିଷିଦ୍ଧ ଥିଲାବେଳେ

ଦକ୍ଷିଣାଞ୍ଚଳରେ ତାହା ପ୍ରଚଳିତ ହେଉଥିଲା । ଉତ୍ତରାଞ୍ଚଳରେ ସତୀଦାହ ପ୍ରଥା ବଳବତ୍ତର ଥିଲାବେଳେ ପଶ୍ଚିମାଞ୍ଚଳରେ ତାହା ପ୍ରଚଳିତ ନଥିଲା । ଉଦାମାନ୍ତନ ସାମାଜିକ ପରିବେଷ୍ଟନୀ ମଧ୍ୟରେ ରହି ନାରୀମାନେ ପିତା, ପୁତ୍ର ଓ ସ୍ୱାମୀ ଉପରେ ନିର୍ଭର କରୁଥିଲେ ମଧ୍ୟ ଆବଶ୍ୟକ ସ୍ଥଳେ ସେମାନେ ଖଡ୍‌ଗହସ୍ତରେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଉଥିଲେ । ତତ୍କାଳୀନ ସମାଜରେ କେତେକ ରମଣୀ ଉଚ୍ଚଶିକ୍ଷା ଅର୍ଜନର ସୁଯୋଗ ମଧ୍ୟ ଲାଭ କରିଥିଲେ । ନାରୀକୁ ଅସୂର୍ଯ୍ୟଂପଶ୍ୟା ରୂପେ କେତେକ ପୁରାଣ ଶାସ୍ତ୍ରରେ ବର୍ଣ୍ଣନା କରାଯାଇଥିଲେ ମଧ୍ୟ ସେହି ସମାଜରେ ନାରୀ ପୁରୁଷର ଅର୍ଦ୍ଧାଙ୍ଗିନୀ ରୂପେ ସମସ୍ତ ସମ୍ମାନର ଅଧିକାରିଣୀ ହେଉଥିଲା । ସେତେବେଳେ ନାରୀମାନେ ଗଳାହାର, କଟିମେଖଳା, ନୂପୁର ପ୍ରଭୃତି ଅଳଙ୍କାରରେ ଭୂଷିତ ହେଉଥିଲେ ଏବଂ ପୁରୁଷମାନେ କର୍ଣ୍ଣପାଶ ବ୍ୟବହାର କରୁଥିଲେ ।

ସେତେବେଳେ ଜନସାଧାରଣ ସାଧାରଣତଃ ଗ୍ରାମରେ କୁଡ଼ିଆ ଘରେ ବାସ କରୁଥିଲେ ଏବଂ ରାଜା ମହାରାଜାମାନେ ନଗର ବା ପୁରରେ ପ୍ରାସାଦ ନିର୍ମାଣ କରି ରହୁଥିଲେ । ସେହି ସମୟରେ ସପ୍ତତଳ ପ୍ରାସାଦ ନିର୍ମିତ ହୋଇ-ଥିବାର ଉଦାହରଣ ମଧ୍ୟ ରହିଛି । ରାଜନଗର ବା ରାଜଧାନୀଗୁଡ଼ିକରେ ନୃତ୍ୟଶାଳା, ବିନୋଦଶାଳା, ଉଦ୍ୟାନ, ବିପଣୀ ପ୍ରଭୃତି ରହିଥିଲା । ରାଜପ୍ରାସାଦ ମଧ୍ୟରେ ପୁଷ୍ପବାଟିକା, ସନ୍ତରଣାଗାର, ଦ୍ୟୁତଶାଳା ପ୍ରଭୃତି ରହିଥିଲା ଏବଂ ଶିକାର ଥିଲା ରାଜାମାନଙ୍କର ଅନ୍ୟତମ ପ୍ରଧାନ ବିନୋଦନ । ଅମ୍ବାପାଲୀ ଭଳି ରାଜନର୍ତ୍ତକୀ ତଥା ଶ୍ରେଷ୍ଠା ଗଣିକାମାନଙ୍କୁ ସେହି ସମାଜରେ ବିଶିଷ୍ଟ ସ୍ଥାନ ଦିଆଯାଉଥିଲା । ସେମାନେ ଥିଲେ ସୁଚତୁରା, ପୁରାଣ ଶାସ୍ତ୍ରନିପୁଣା ଓ ଚଉଷଠି ପ୍ରକାର ରତି କଳାକୁଶଳା । ଏହା ବ୍ୟତୀତ, ରାଜ ପ୍ରାସାଦର ଗଣିକାଗୋଷ୍ଠୀ ତଥା ନଗରୀର ବେଶ୍ୟାଳୟଗୁଡ଼ିକର ତତ୍ତ୍ୱାବଧାନ ଲାଗି ଜଣେ ଗଣିକାଧିପତି (Superintendent of Prostitutes) ନିଯୁକ୍ତ ରହୁଥିଲେ । ଏପରିକି ପ୍ରତ୍ୟେକ ବେଶ୍ୟାଙ୍କ ଠାରୁ ମାସିକ ରାଜଶୁଳକ୍ ସ୍ୱରୂପ ଦୁଇଦିନର ରୋଜଗାର ଧନ ଆଦାୟ କରିବା ତାଙ୍କର ଦାୟିତ୍ୱ ଥିଲା ବୋଲି କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ଜଣାଯାଏ । ଗଣିକାମାନଙ୍କୁ ଉପଯୁକ୍ତ ଶିକ୍ଷା ଓ ତାଲିମ ଦେବାପାଇଁ ରାଜାଙ୍କ ଦ୍ୱାରା ଶିକ୍ଷକମାନଙ୍କୁ ମଧ୍ୟ ନିଯୁକ୍ତ କରାଯାଉଥିଲା । ସେତେବେଳେର ପ୍ରଧାନ ନଗରଗୁଡ଼ିକ ମଧ୍ୟରେ ଚମ୍ପା (ଭାଗଲପୁର), ରାଜଗୃହ, ଶ୍ରାବସ୍ତୀ, ଅଯୋଧ, କୌଶାମ୍ବି ଓ ବାରାଣସୀ ଅନ୍ୟତମ । ଏହା ବ୍ୟତୀତ, ପରବର୍ତ୍ତୀ କାଳରେ ତକ୍ଷଶିଳା ଓ ପାଟଳିପୁତ୍ର ମଧ୍ୟ ପ୍ରଧାନ ନଗରୀ ରୂପେ ମୁଣ୍ଡ ଟେକିଥିଲା ।

ତଦାନୀନ୍ତନ ସମାଜରେ କ୍ଷତ୍ରିୟମାନଙ୍କର ମାଂସାହାରକୁ ବ୍ରାହ୍ମଣମାନେ ଘୃଣା କରୁଥିଲେ ଏବଂ ସ୍ୱର୍ଣ୍ଣ ଥାଳିରେ ଭୋଜନ କରିବା ଶ୍ରେଷ୍ଠ ବିବେଚିତ ହେଉଥିଲା । କେତେକ ଧାର୍ମିକ ପର୍ବପର୍ବାଣୀ ବ୍ୟତୀତ ଅନ୍ୟାନ୍ୟ ଦିବସଗୁଡ଼ିକରେ ମଦିରାପାନକୁ ଉତ୍ସାହିତ କରାଯାଉ ନଥିଲା । ସେହି ସମାଜରେ ଜାତିଭେଦ ପ୍ରଥା ରହିଥିଲେ ମଧ୍ୟ ଯବନମାନଙ୍କ ଆଗମନ ପୂର୍ବରୁ ତାହା ଉତ୍କଟ ଆକାର ଧାରଣ କରି ନଥିଲା । ସେହି ସମାଜରେ ଅସବର୍ଣ୍ଣ ବିବାହ ଆଦୌ ବିରଳ ନଥିଲା । ତେବେ ବିଧବା ବିବାହ କିମ୍ବା ଛାଡ଼ପତ୍ର ପ୍ରଥା ବିଶେଷ ପ୍ରଚଳିତ ନଥିଲା । ତାହା ନୀଚ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ କ୍ୱଚିତ ଦେଖାଦେଉଥିଲେ ସୁଦ୍ଧା ଉଚ୍ଚ ସମ୍ପ୍ରଦାୟ ତାର ବିରୋଧ କରୁଥିଲେ ।

## ଅର୍ଥନୈତିକ ଅବସ୍ଥା

ମାଗଧଯୁଗରେ ଅଧିକାଂଶ ବ୍ୟକ୍ତି ଗ୍ରାମ୍ୟଜୀବନ ଯାପନ କରୁଥିଲେ । କୃଷି ଥିଲା ସେମାନଙ୍କର ପ୍ରଧାନ ଜୀବିକା । କେବଳ ଶାସକଗୋଷ୍ଠୀ ଓ ବ୍ୟବସାୟୀମାନେ ସହର ବା ନଗରରେ ରହିବାକୁ ପସନ୍ଦ କରୁଥିଲେ । ରାଜାଙ୍କୁ ଉତ୍ପାଦିତ ଫସଲର ଏକଷଷ୍ଠାଂଶ ରାଜସ୍ୱ ରୂପେ ଦେବା ବ୍ୟତୀତ କୃଷକମାନେ ଅନ୍ୟ କୌଣସି ପ୍ରକାର ଅସୁବିଧା ବା ଉତ୍ପୀଡ଼ନର ସମ୍ମୁଖୀନ ହେଉ ନଥିଲେ । ସେମାନେ ବେଶ୍ ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରି ଅତି ସୁଖମୟ ଓ ସହଯୋଗିତା ପୂର୍ଣ୍ଣ ଗ୍ରାମ୍ୟ ଜୀବନ ଅତିବାହିତ କରୁଥିଲେ । ଜାତିବର୍ଣ୍ଣ ନିର୍ବିଶେଷରେ ଗ୍ରାମର ନରନାରୀ ମିଳିତ ଉଦ୍ୟମରେ କେନାଲଖନନ, କୂପ-ପୁଷ୍କରଣୀ ନିର୍ମାଣ, ପର୍ବ-ପର୍ବାଣୀ ପାଳନ ଆଦି କାର୍ଯ୍ୟରେ ଯୋଗଦେଉଥିଲେ । ଏହି ଯୁଗରେ ସମବାୟ ଶ୍ରମର ଭିତ୍ତି ସ୍ଥାପିତ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ହସ୍ତଶିଳ୍ପର ବିକାଶ ଥିଲା ମାଗଧ ସଭ୍ୟତାର ଅନ୍ୟତମ ବିଶିଷ୍ଟ ଅଙ୍ଗ । କାଷ୍ଠ, ପ୍ରସ୍ତର ଓ ହସ୍ତୀଦନ୍ତରେ ନିଜର କଳାକୁଶଳତା ଫୁଟାଇବାରେ ସେମାନେ ଧୁରନ୍ଧର ଥିଲେ । ତାହା ସେତେବେଳେ କେତେକଙ୍କର ପାରଂପରିକ ବୃତ୍ତିରେ ମଧ୍ୟ ପରିଣତ ହୋଇଯାଇଥିଲା । ସ୍ଥଳବିଶେଷରେ କ୍ଷୁଦ୍ରଶିଳ୍ପସଂସ୍ଥାମାନ ମୁଣ୍ଡ ଟେକିଥିଲା ଏବଂ ସେଗୁଡ଼ିକରେ କେତେକ କାରୁକଳା ବିଶେଷଜ୍ଞ ମଧ୍ୟ ନିଯୁକ୍ତ ରହୁଥିଲେ ।

ସେହି ସମୟରେ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ବିଶେଷ ଉନ୍ନତି ଦେଖାଦେଇଥିଲା । ବଣିକମାନେ ବର୍ମା, ମାଳୟ, ସିଂହଳ, ବେବିଲୋନ ପ୍ରଭୃତି

ସ୍ଥାନରେ ଯାଇ ବାଣିଜ୍ୟ ବ୍ୟବସାୟ କରୁଥିଲେ । ଭୃଗୁକଚ୍ଛ, ତାମ୍ରଲିପ୍ତି, କୌଶାମ୍ବି ପ୍ରଭୃତି ଥିଲା ପ୍ରଧାନ ବାଣିଜ୍ୟ ବନ୍ଦର । ଗଙ୍ଗା ଉପତ୍ୟକାଠାରୁ ପଶ୍ଚିମ ଏସିଆକୁ ଯିବା ପାଇଁ ତକ୍ଷଶିଳା ଦେଇ ଯାତାୟାତ ପଥ ରହିଥିଲା । ସେହିପରି ରାଜଗୃହଠାରୁ ଗୋଦାବରୀ ଉପକୂଳ ପର୍ଯ୍ୟନ୍ତ ଯାତାୟାତ ହୋଇ ପାରୁଥିଲା । ବ୍ୟବସାୟୀମାନେ ପଥଭ୍ରଷ୍ଟ ହେବା ଆଶଙ୍କାରେ, ଆକାଶର ନକ୍ଷତ୍ର ଦେଖି ଏହି ସବୁ ଦୁର୍ଗମ ରାସ୍ତାରେ ଯତାୟାତ କରୁଥିଲେ । ସୁନା ଅଳଙ୍କାର; ରେଶମ, ହସ୍ତୀଦନ୍ତ ପ୍ରଭୃତି ଥିଲା ବାଣିଜ୍ୟର ପ୍ରଧାନ ଜିନଷ । ସେତେବେଳେ ବିନିମୟର ମାଧ୍ୟମରୂପେ ରୌପ୍ୟମୁଦ୍ରା ବ୍ୟବହୃତ ହେଉଥିଲା ।

ସର୍ବୋପରି, ଜୈନଧର୍ମ ଓ ବୌଦ୍ଧଧର୍ମର ଅଭ୍ୟୁଦୟ ମାଗଧ ସଭ୍ୟତାର ଏକ ବୈଶିଷ୍ଟ୍ୟପୂର୍ଣ୍ଣ ଅବଦାନ । ତା ଫଳରେ ତଦାନୀନ୍ତନ ଧର୍ମ-ଜଗତରେ ଏକ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା । ଏଥିପାଇଁ କେତେକ ଐତିହାସିକ ମାଗଧ ଯୁଗକୁ 'ବୌଦ୍ଧଯୁଗ' ଆଖ୍ୟା ଦେବାପାଇଁ କୁଣ୍ଠାବୋଧ କର ନାହାନ୍ତି ।



## ପଞ୍ଚମ ପର୍ଯ୍ୟାୟ

# ବୌଦ୍ଧଯୁଗ

ମାଗଧଯୁଗରେ ଧାର୍ମିକ କ୍ଷେତ୍ରରେ ଅନେକ ବୈପ୍ଳବିକ ପରିବର୍ତ୍ତନ ଦେଖାଦେଇଥିଲା । ସେତେବେଳେ ବ୍ରାହ୍ମଣଧର୍ମରେ କେତେକ ପରିବର୍ତ୍ତନ ପରିଲକ୍ଷିତ ହୋଇଥିଲା ଏବଂ ବିଭିନ୍ନ ନୂତନ ଧାର୍ମିକ ଚିନ୍ତାଧାରାର ଉନ୍ମେଷ ଘଟିଥିଲା । ଉପନିଷଦ ଶିକ୍ଷାର ପ୍ରଭାବରେ ପଶୁବଳୀ ଆଦି ଅନ୍ଧବିଶ୍ୱାସ କ୍ରମେ କ୍ରମେ ଲୋପ ପାଇବାକୁ ବସିଲା ଏବଂ ଯଜ୍ଞୋପଦେଷ୍ଟା ପୁରୋହିତ ତଥା ଯଜ୍ଞୋପାସକମାନଙ୍କ ଉପରୁ ବିଶ୍ୱାସ କମିଗଲା । ଲୋକମାନେ ଶ୍ରମଣ ଓ ପରିବ୍ରାଜକମାନଙ୍କଦ୍ୱାରା ବିଶେଷ ଭାବେ ପ୍ରଭାବିତ ହେଲେ । ତଥାପି ସେତେବେଳେ ପର୍ଜ୍ଜନ୍ୟ, ଇନ୍ଦ୍ର, ବୈଶ୍ରବଣ, ଶିବ, କାର୍ତ୍ତିକେୟ, ଉମା (ହୈମବତୀ), ବାସିନୀ (ଦୁର୍ଗା) ପ୍ରଭୃତି ଦେବଦେବୀଙ୍କର ପ୍ରାଧାନ୍ୟ ରହିଥିଲା ଏବଂ ନଦୀ (ଗଙ୍ଗା) ପୂଜା ଓ ବୃକ୍ଷ (କଳ୍ପବୃକ୍ଷ) ପୂଜା ମଧ୍ୟ ହେଉଥିଲା । ଏପରିକି ସେହି ସମୟରେ ମୂର୍ତ୍ତିପୂଜା ନିମିତ୍ତ ମନ୍ଦିରମାନ ମଧ୍ୟ ରହିଥିଲା ଏବଂ ପରବର୍ତ୍ତୀ କାଳରେ ମୌର୍ଯ୍ୟ ଯୁଗରେ ବିଭିନ୍ନ ଦେବଦେବୀଙ୍କର ମୂର୍ତ୍ତିସବୁ ବିକ୍ରୟ ହେଉଥିଲା ବୋଲି ଜଣାଯାଏ । ତେବେ ମାଗଧ ଯୁଗରେ ଜୈନଧର୍ମ ଓ ବୌଦ୍ଧଧର୍ମର ଅଭ୍ୟୁଦୟ ଭାରତୀୟ ଇତିହାସର ଏକ ଉଲ୍ଲେଖଯୋଗ୍ୟ ଅଧ୍ୟାୟ ।

## ମହାବୀର ଓ ଜୈନଧର୍ମ

ମହାବୀର ଜୈନଧର୍ମର ପ୍ରତିଷ୍ଠାତା ଭାବରେ ଇତିହାସପ୍ରସିଦ୍ଧ ହେଲେହେଁ ତାଙ୍କର ତେଇଶ ପୁରୁଷକାଳ ପୂର୍ବରୁ ଜୈନଧର୍ମର ଭିତ୍ତି ସ୍ଥାପିତ ହୋଇଥିବା ଜଣାଯାଏ । ଋଷଭଙ୍କଠାରୁ ଆରମ୍ଭ କରି ପାର୍ଶ୍ୱଙ୍କ ପର୍ଯ୍ୟନ୍ତ ତେଇଶଜଣ ତୀର୍ଥଙ୍କର ( ଜୈନଧର୍ମ ପ୍ରଚାରକ ) ବଂଶପରଂପରାନୁକ୍ରମେ ଏହି ଧର୍ମର ଆଦର୍ଶ ପ୍ରଚାର କରି ଆସୁଥିଲେ । ଖ୍ରୀ: ପୂ: ୩୦୦ ପୂର୍ବରୁ ଭଦ୍ରବାହୁଙ୍କ ଦ୍ୱାରା ରଚିତ 'କଳ୍ପସୂତ୍ର'ରୁ ଜଣାଯାଏ ଯେ, ପାର୍ଶ୍ୱ କ୍ଷତ୍ରିୟ ଥିଲେ ଏବଂ ସେ

ଇକ୍ଷ୍ୱାକୁ ବଂଶୀୟ ରାଜା ଅଶ୍ୱସେନ ଓ ତାଂକ ରାଣୀ ବାମାଦେବୀଂକର ପୁତ୍ର ଥିଲେ । ପାର୍ଶ୍ୱ କୁଶସ୍ଥଳ ( କାନ୍ୟକୁବ୍ଜ ) ର ରାଜା ନରବର୍ମାଙ୍କର କନ୍ୟା ପ୍ରଭାବତୀଙ୍କୁ ବିବାହ କରିଥିଲେ ଏବଂ ତାଂକ ଗର୍ଭରୁ ପ୍ରସେନଜିତ ଜନ୍ମଲାଭ କରିଥିଲେ । ସେ ଦିନେ ବିଶାଳା ନାମକ ପାଲିଂକି ଆରୋହଣ କରି ବନ୍ଧୁ ପାର୍ଶ୍ୱଚରଂକ ସହ ଆଶ୍ରମପାଦ ଉଦ୍ୟାନରେ ପ୍ରବେଶକଲେ ଏବଂ ସେଠାରେ ସାଢ଼େ ତିନଦିନ ଅନଶନ କଲାପରେ ସନ୍ନ୍ୟାସୀ ହେଲେ । ତାପରେ ସେ ଉର୍ଦ୍ଧ ତେୟାଅଶି ଦିନ ଏକାନ୍ତ ଧ୍ୟାନ କରିବା ଫଳରେ ସର୍ବୋଚ୍ଚ ଜ୍ଞାନ 'କେବଳ' ଆହରଣ କରିଥିଲେ । ତାଂକର ୧୬,୦୦୦ ଶ୍ରମଣ, ୩୮,୦୦୦ ସନ୍ନ୍ୟାସିନୀ, ୧,୬୪,୦୦୦ ଉପାସକ ଓ ୩,୨୭,୦୦୦ ଉପାସିକା ଥିଲେ । ଉପାସକ ଓ ଉପାସିକାମାନଂକ ମଧ୍ୟରେ ଆର୍ଯ୍ୟଦତ୍ତ, ପୁଷ୍ପକୁଳ, ସୁବ୍ରତ, ସୁନନ୍ଦା ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ମହାବୀରଙ୍କ ମହାପ୍ରୟାଣର ପ୍ରାୟ ଅଢ଼େଇଶହ ବର୍ଷ ପୂର୍ବେ ପାର୍ଶ୍ୱ ଏକ ପାହାଡ଼ ନିକଟରେ ଶରୀର ତ୍ୟାଗ କରିଥିଲେ । ଉକ୍ତ ପାହାଡ଼ ପାର୍ଶ୍ୱନାଥଗିରି ନାମରେ ପରିଚିତ ।

ପାର୍ଶ୍ୱନାଥ ଯେଉଁ ଚାରୋଟି ବାରଣ (ନିଷେଧାଦେଶ) ନିରୂପଣ କରି ଯାଇଥିଲେ, ତାହା ହେଉଛି—(୧) ଜୀବକୁ ଆଘାତ ନ କରିବା, (୨) ମିଥ୍ୟା ନ କହିବା, (୩) ଚୋରି ନ କରିବା, ଓ (୪) ଧନସମ୍ପତ୍ତି ସଂଗ୍ରହ ନ କରିବା । ମହାବୀର ଏଥିରେ ପଞ୍ଚମ ଶପଥ 'ବିଶୁଦ୍ଧତା' ସଂଯୋଗ କରିଥିଲେ । ମହାବୀରଙ୍କର ପିତା ସିଦ୍ଧାର୍ଥ * ପାର୍ଶ୍ୱନାଥଙ୍କର ଭକ୍ତ ଥିଲେ ।

ମହାବୀରଙ୍କର ଜନ୍ମ ସମୟ ସଂପର୍କରେ ନାନା ମତ ରହିଥିଲେ ମଧ୍ୟ ଖ୍ରୀ: ପୂ: ୫୪୭ରେ ସେ ଜନ୍ମଗ୍ରହଣ କରିଥିଲେ ବୋଲି ଅନେକ ଐତିହାସିକ ସିଦ୍ଧାନ୍ତରେ ଉପନୀତ ହେଲେଣି । ଯେତେବେଳେ କୁଣ୍ଡାପୁରୀ ବା କୁଣ୍ଡାଗ୍ରାମଠାରେ ମହାବୀରଙ୍କର ଆବିର୍ଭାବ ହେଲା ତାଂକ ପିତା ସିଦ୍ଧାର୍ଥ ମହାସମାରୋହରେ ସମଗ୍ର ନଗରୀରେ ପୁତ୍ର ଜନ୍ମୋତ୍ସବ ପାଳନ କଲେ । ପିତା ମାତା ତାଂକର ନାମ ରଖିଥିଲେ ବର୍ଦ୍ଧମାନ ** । ସେ ବିଳାସ ବ୍ୟସନରେ ବର୍ଦ୍ଧିତ ହେଲେ ମଧ୍ୟ ସଂସାର ପ୍ରତି ବିତୃଷ୍ଣ ଜଣାପଡ଼ୁଥିଲେ । ତାଂକର ତାଦୃଶ ମନୋଭାବ

* ସିଦ୍ଧାର୍ଥଂକର ଅନ୍ୟ ଦୁଇ ନାମ—ଯଶାଂଶ ଓ ଶ୍ରେୟାଂଶ ।

** ସେ ଶ୍ରମଣ ନାମରେ ମଧ୍ୟ ପରିଚିତ ଥିଲେ ।

ଦେଖି ପିତା ମାତା ତାଙ୍କୁ ଯଶୋଦାନାମ୍ନୀ ଏକ ଅନନ୍ୟ ସୁନ୍ଦରୀ ସ୍ତ୍ରୀ ସହିତ ବିବାହ କରାଇ ଦେଲେ । କିଛିକାଳ ପରେ ତାଙ୍କର ଗୋଟିଏ କନ୍ୟା ✝ ଜାତ ହେଲା । ସେତିକିବେଳକୁ ତାଙ୍କ ପିତା ସିଦ୍ଧାର୍ଥ ଓ ମାତା ତ୍ରିଶାଳା ଇହଧାମ ପରିତ୍ୟାଗ କରି ଚାଲିଯାଇଥିଲେ । ତେଣୁ ସଂସାରବିରାଗୀ ବର୍ଦ୍ଧମାନ ଜ୍ୟେଷ୍ଠଭ୍ରାତା ନନ୍ଦିବର୍ଦ୍ଧନଙ୍କ ଅନୁମତି ନେଇ ସନ୍ନ୍ୟାସ ଉଦ୍ଦେଶ୍ୟରେ ଯାଇ ଘୋର ଅରଣ୍ୟାନୀ ମଧ୍ୟରେ ଏକ ଅଶୋକ ବୃକ୍ଷ ମୂଳରେ ବସି କଠୋର ତପ ଆଚରଣ କଲେ । କାଳକ୍ରମେ ସେ ପରିଧେୟ ପରିହାରପୂର୍ବକ ଶରୀରକୁ ଭୂଷଣହୀନ କଲେ ଏବଂ ଦୀର୍ଘ ବାରବର୍ଷ କାଳ ଚମ୍ପା, ବୈଶାଳୀ, ଶ୍ରାବସ୍ତୀ, ନାଳନ୍ଦା ପ୍ରଭୃତି ସ୍ଥାନ ପର୍ଯ୍ୟଟନ କରି ସାରିଲା ପରେ ଶେଷରେ ଜୃମ୍ଭିକ ଗ୍ରାମର ଜୀର୍ଣ୍ଣମନ୍ଦିର ନିକଟସ୍ଥ ଏକ ବିଶାଳ ଶାଳ ତରୁବରର ପାଦଦେଶରେ ନିର୍ବାଣ-ପ୍ରାପ୍ତ ହୋଇ ଜୀନ୍ ନାମରେ ଅମରତ୍ୱ ଲାଭ କଲେ ।

ଯାହା ଜଣାଯାଏ, ମହାବୀରଙ୍କଦ୍ୱାରା ପ୍ରଚାରିତ ଜୈନଧର୍ମର ମୌଳିକ ତତ୍ତ୍ୱଗୁଡିକ ପ୍ରଥମେ ଚଉଦଟି ମୂଳ ଗ୍ରନ୍ଥରେ ଲିପିବଦ୍ଧ ହୋଇ ରହିଥିଲା; ପରେ ପ୍ରାୟ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ ବେଳକୁ ବିହାରରେ ଏକ ଭୟାବହ ଦୁର୍ଭିକ୍ଷ ହେବାରୁ ସେଠାରୁ ଭଦ୍ରବାହୁଙ୍କ ନେତୃତ୍ୱରେ ମହାବୀରଙ୍କର ବହୁ ଉପାସକ ଦାକ୍ଷିଣାତ୍ୟକୁ ଚାଲିଆସିବା ପରେ ସେଠାରେ ରହିଯାଇଥିବା ଅବଶିଷ୍ଟ ଜୈନଧର୍ମାବଲମ୍ବୀମାନେ ପାଟଳିପୁତ୍ରଠାରେ ଏକ ସମ୍ମେଳନ ଆହ୍ୱାନ କରି ମୂଳଗ୍ରନ୍ଥରେ ଦ୍ୱାଦଶଗୋଟି 'ଅଙ୍ଗ' ସଂଯୋଗ କଲେ । ପରେ ସେଥିରେ କେତେକ ଉପାଙ୍ଗ ମଧ୍ୟ ସଂଯୋଗ କରାଗଲା । କିନ୍ତୁ ଯେତେବେଳେ ଭଦ୍ରବାହୁ-ଙ୍କର ଅନୁଗାମୀମାନେ ପୁଣି ଉତ୍ତରାଞ୍ଚଳକୁ ଫେରି ଆସିଲେ ସେତେବେଳେ ସେମାନେ ପୂର୍ବୋକ୍ତ ଶ୍ୱେତାମ୍ବରୀ ଜୈନଧର୍ମାବଲମ୍ବୀମାନଙ୍କର ମିତଶାସ୍ତ୍ରକୁ ଅସ୍ୱୀକାର କରି ଏକ ସ୍ୱତନ୍ତ୍ର ଗୋଷ୍ଠୀଭୁକ୍ତ ହୋଇ ରହିଲେ । ସେହି ସମୟରୁ ଜୈନଧର୍ମାବଲମ୍ବୀମାନେ ଦୁଇ ଦଳରେ ବିଭକ୍ତ ହୋଇଛନ୍ତି—ଶ୍ୱେତାମ୍ବର ଓ ଦିଗମ୍ବର । ଏହା ପ୍ରାୟ ପ୍ରଥମ ଖ୍ରୀଷ୍ଟାବ୍ଦ ସମୟର ଘଟଣା ।

ଯେ ଯାହାହେଉ, ଜୈନଧର୍ମର ମୁଖ୍ୟ ମତ ହେଲା ଅହିଂସା । ତାହା କେବଳ ଆତ୍ମା, ଜୀବାତ୍ମା ବା ପଶୁପକ୍ଷୀ ଆଦି ଜୀବଜନ୍ତୁ ପ୍ରତି ଅହିଂସା ଆଚରଣ ଆବଦ୍ଧ ନୁହେଁ; ବୃକ୍ଷ, ଧାତୁ, ଜଳ, ସ୍ଥଳ ଆଦି ସମସ୍ତ ପଦାର୍ଥ ପ୍ରତି ମଧ୍ୟ ତାହା

✝ ମହାବୀରଙ୍କ କନ୍ୟା ପ୍ରିୟଦର୍ଶନା ନାମରେ ପରିଚିତା ।

ପ୍ରବ୍ରଜ୍ୟା । ତାର ଉଦ୍ଦେଶ୍ୟ ମହାନ୍ ଓ ବ୍ୟାପକ । ଜୈନଧର୍ମାବଲମ୍ବୀମାନଙ୍କର ଗ୍ଭରୋଟି ମହାନ୍ ଶପଥ ଥିଲା—(୧) କୌଣସି ଜୀବ ବା ବସ୍ତୁକୁ ଆଘାତ ବା କ୍ଷତ ନ କରିବା, (୨) ଚୋରି ନ କରିବା, (୩) ସତ୍ୟବାଦୀ ହେବା ଏବଂ (୪) ସଂସାରଲାଳସୀ ନ ହେବା । ଏହା ସହିତ ମହାବୀର ପଞ୍ଚମ ଶପଥ 'ବ୍ରହ୍ମଚର୍ଯ୍ୟ' ସଂଯୋଗ କରିଥିଲେ । ଜୈନମାନଙ୍କର ତତ୍ତ୍ୱାହରଣ ପନ୍ଥା ମୁଖ୍ୟତଃ ତିନୋଟି—ସମ୍ୟକ ଦର୍ଶନ ବା ସତ୍‌ବିଶ୍ୱାସ, ସମ୍ୟକ ଜ୍ଞାନ ବା ସତ୍-ଜ୍ଞାନ ଓ ସମ୍ୟକ ଚରିତ୍ର ବା ସଦାଚାର । ତାହା କେତେକ ବାହ୍ୟ ଓ ଆଭ୍ୟନ୍ତରୀଣ ଆତ୍ମନିଗ୍ରହ ଉପରେ ପ୍ରତିଷ୍ଠିତ । ଅନଶନ, ଭିକ୍ଷା, ରସତ୍ୟାଗ, କାୟକ୍ଳେଶ ଇତ୍ୟାଦି ବାହ୍ୟ ଆତ୍ମନିଗ୍ରହର ଉଦାହରଣ ଏବଂ ପ୍ରାୟଶ୍ଚିତ୍ତ ବିନୟ, ସ୍ୱାଧ୍ୟାୟ, ଧ୍ୟାନ ଆଦି ଅଭ୍ୟନ୍ତରୀଣ ଆତ୍ମନିଗ୍ରହର ଅନ୍ତର୍ଗତ ।

ମହାବୀରଙ୍କର ଏଗାର ଜଣ ଗାନ୍ଧାର ବା ବିଶ୍ୱସ୍ତ ଶିଷ୍ୟ ଥିଲେ ବୋଲି ଜଣାଯାଏ । ତେବେ ଆନନ୍ଦ, କାମଦେବ, ସୁରଦେବ, କୁନ୍ଦକୋଲ୍ଲି, ମହାଶାପୁତ୍ରକ, ସୁଧର୍ମଣ, ନନ୍ଦନୀପ୍ରିୟା ପ୍ରମୁଖ ତାଙ୍କର ପ୍ରଧାନ ଶିଷ୍ୟମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । କିନ୍ତୁ ସୁଧର୍ମଣଙ୍କ ବ୍ୟତୀତ ମହାବୀରଙ୍କର ଅନ୍ୟାନ୍ୟ ସମସ୍ତ ବିଶ୍ୱସ୍ତ ଶିଷ୍ୟ ତାଙ୍କର ଜୀବିତାବସ୍ଥାରେ ହିଁ ଇହଧାମ ତ୍ୟାଗକରି ଗ୍ଭଲି ଯାଇଥିଲେ । ପ୍ରାୟ ପ୍ରଥମ ଖ୍ରୀଷ୍ଟାବ୍ଦ ବେଳକୁ ଜୈନଧର୍ମର ପ୍ରାଧାନ୍ୟ ଲୋପ ପାଇବାକୁ ବସିଲା ।

## ବୁଦ୍ଧଦେବ ଓ ବୌଦ୍ଧଧର୍ମ

ମହାବୀରଙ୍କ ସମକାଳୀନ ଅନ୍ୟତମ ମହାପୁରୁଷ ଗୌତମ ବୁଦ୍ଧଙ୍କର ଅବଦାନ ମଧ୍ୟ ଏ ଜାତିର ଇତିହାସରେ ଅବିସ୍ମରଣୀୟ । ଶାକ୍ୟବଂଶର ପ୍ରବର୍ତ୍ତସିଂହ ଗୌତମ ବୁଦ୍ଧ ବ୍ରାହ୍ମଧର୍ମର ବିଭିନ୍ନ ଆଚରଣ ପଦ୍ଧତି ଓ କର୍ମ-କାଣ୍ଡ ବିରୋଧରେ ପ୍ରତିବାଦ କରି ଏକ ଭିନ୍ନ ଧର୍ମ ଓ ଦର୍ଶନର ପ୍ରଗ୍ଭରଦ୍ୱାରା ଭାରତୀୟ ଜନଜୀବନ ଓ ଚିନ୍ତାଧାରା କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ ।

ବୁଦ୍ଧଦେବଙ୍କର ଆବିର୍ଭାବ ସମୟ ସଂପର୍କରେ ନାନା ମତ ଦେଖା-ଦିଏ । ତେବେ ଖ୍ରୀ: ପୂ: ୫୬୭ ରେ ତାଙ୍କର ଜନ୍ମ ଘଟିଥିଲା ବୋଲି ଅଧିକାଂଶ ଆଧୁନିକ ଐତିହାସିକ ପ୍ରମାଣ କରିସାରିଲେଣି । ସିଂହଳ ପଞ୍ଜିକା ଅନୁସାରେ ବୁଦ୍ଧଦେବଙ୍କର ପିତା ଶୁଦ୍ଧୋଦନଙ୍କର ଦୁଇଟି ପତ୍ନୀ ଥିଲେ; ମାୟା ଓ

ପ୍ରଜାପତି । ବୁଦ୍ଧଦେବ ଥିଲେ ମାୟା ଦେବୀଙ୍କର ଗର୍ଭସମ୍ଭୂତ । ତାଙ୍କର ବାଲ୍ୟନାମ ଥିଲା ସିଦ୍ଧାର୍ଥ । ସିଦ୍ଧାର୍ଥଙ୍କର ଜନ୍ମପରେ ତାଙ୍କ ମା ମାୟାଦେବୀଙ୍କର ପରଲୋକ ଘଟିଥିଲା ଏବଂ ସେ ନିଜର ସାବତ ମା ପ୍ରଜାପତିଙ୍କଦ୍ୱାରା ଲାଳିତ ପାଳିତ ହୋଇଥିଲେ । ସିଦ୍ଧାର୍ଥ ଷୋଳ ବର୍ଷ ବୟସରେ ନିଜ ମାମୁଁ ଝିଅ ଭଉଣୀ ବିମ୍ବା, ଗୋପା ବା ଯଶୋଧାରଙ୍କୁ ବିବାହ କରିଥିଲେ । କିଛିକାଳ ମହା ସୁଖସମ୍ଭୋଗ ଓ ଭୋଗବିଳାସରେ କାଳ ଯାପନ କରିବା ପରେ ଦିନେ ନଗର ପରିଭ୍ରମଣ ସମୟରେ ବୃଦ୍ଧ, ରୋଗୀ, ଶବ ଓ ସନ୍ନ୍ୟାସୀଙ୍କ ଦର୍ଶନରେ ହଠାତ୍ ତାଙ୍କର ମାନସିକ ପରିବର୍ତ୍ତନ ଘଟିଲା ଏବଂ ସାଂସାରିକ ଜୀବନ ପ୍ରତି ବିତୃଷ୍ଣା ଜନ୍ମିଲା । ତାହା ପରେ ସେ ସାଂସାରିକ ମୋହ ମାୟା ପରିତ୍ୟାଗ କରି ନିର୍ବାଣ ଉଦ୍ଦେଶ୍ୟରେ ଗୃହଛାଡ଼ିବା ପାଇଁ ଦୃଢ଼ପରିକର ହେଲେ ଏବଂ ଯେଉଁ ଦିନ ପୁତ୍ର ରାହୁଲର ଆବିର୍ଭାବ ଘଟିଲା ସେହି ରାତିରେ ହିଁ ସେ ରାଜ-ପ୍ରାସାଦ ଛାଡ଼ି ଚାଲି ଗଲେ ।

ମାତ୍ର ୨୯ ବର୍ଷ ବୟସରେ ସଂସାରବିରାଗୀ ହୋଇ ସିଦ୍ଧାର୍ଥ ଛ' ବର୍ଷ କାଳ ବିଭିନ୍ନ ସ୍ଥାନ ପରିଭ୍ରମଣ କରି ଉଦ୍ରକାଦି ମୁନିଋଷିଙ୍କଠାରୁ ଉପଦେଶ ଗ୍ରହଣ କଲା ପରେ ଉରୁବିଲ୍ୱାଠାରେ ପହଞ୍ଚିଲେ ଏବଂ ବୁଦ୍ଧଗୟାଠାରେ ଏକ ପିପ୍ପଳ ବୃକ୍ଷ ମୂଳରେ ଦିବ୍ୟଜ୍ଞାନ ଲାଭ କରି ସେ ବୁଦ୍ଧାବସ୍ଥା ପ୍ରାପ୍ତ ହେଲେ । ଏହା ପରେ ସେ ପ୍ରଥମେ ବାରାଣସି ନିକଟସ୍ଥ ସାରନାଥଠାରେ ତାଙ୍କର ଧର୍ମୋପଦେଶ ପ୍ରଚାର ଆରମ୍ଭ କଲେ ଏବଂ କାଳକ୍ରମେ ରାଜଗିରି, ବୈଶାଳୀ, ମଗଧାଦି ବିଭିନ୍ନ ରାଜ୍ୟରେ ତାଙ୍କର ଧର୍ମତତ୍ତ୍ୱ ବ୍ୟାଖ୍ୟାନ କରିବାକୁ ଲାଗିଲେ । ଧର୍ମପ୍ରଚାର କରି କରି ସେ ଯେତେବେଳେ ନିଜ ଜନ୍ମଭୂମି କପିଳବାସ୍ତୁଠାରେ ପହଞ୍ଚିଲେ ସେତେବେଳେ ବୁଦ୍ଧଦେବଙ୍କ ପିତା ତାଙ୍କୁ ସନ୍ନ୍ୟାସ ପଥରୁ ନିବୃତ୍ତ ହେବା ପାଇଁ ବୁଝାଇଲେ, କିନ୍ତୁ ବୁଦ୍ଧଦେବଙ୍କର ଅକାଟ୍ୟ ଯୁକ୍ତି ଆଗରେ ସମସ୍ତଙ୍କର ପ୍ରବର୍ତ୍ତନା ଓ ପ୍ରତାରଣା ପରାଭୂତ ହୋଇଥିଲା ଏବଂ ପିତା, ପତ୍ନୀ ଓ ପୁତ୍ରାଦି ସକଳ ପରିବାରଜନ ତାଙ୍କ ଆଦର୍ଶରେ ଦୀକ୍ଷିତ ହୋଇ ବୁଦ୍ଧ ସଙ୍ଘର ସଭ୍ୟ ହୋଇଥିଲେ । ଦୀର୍ଘ ୪୫ ବର୍ଷ କାଳ ବିଭିନ୍ନ ସ୍ଥାନ ପର୍ଯ୍ୟଟନ କରି ନିଜର ଧର୍ମତତ୍ତ୍ୱ ପ୍ରଚାର କରିବା ପରେ ଅଶୀ ବର୍ଷ ବୟସରେ କୁଶୀ-ନଗରଠାରେ ତାଙ୍କର ମହାପ୍ରୟାଣ ଘଟିଥିଲା ।

ବୁଦ୍ଧଦେବ ମାନବ ଜୀବନର ଚାରୋଟି ମହାନ୍ ସତ୍ୟ ସମ୍ବନ୍ଧରେ ଯେଉଁ ମତ ବ୍ୟକ୍ତ କରିଥିଲେ, ତାହା ହେଉଛି—ପ୍ରଥମତଃ, ଜୀବନ ଦୁଃଖପୂର୍ଣ୍ଣ;

ଦ୍ୱିତୀୟତଃ ଜୀବନ ଅନିତ୍ୟ,କ୍ଷଣଭଙ୍ଗୁର;ତୃତୀୟତଃତାଙ୍କ ମତରେ କର୍ମମୟ ଜୀବନ-ଯାପନ କ୍ଷି ଆର୍ଯ୍ୟସତ୍ୟ ଏବଂ ଏଥି ସକାଶେ ସେ ସଦ୍‌ବିଶ୍ୱାସ, ସଦ୍‌ଆଶା, ସଦ୍‌ଚିନ୍ତା, ସଦ୍‌ବାକ୍ୟ, ସଦ୍‌ଜୀବନ, ସଦୁଦ୍ୟମ, ସଦାଚରଣ, ସଦ୍‌ଧ୍ୟାନାଦି ଅଷ୍ଟମାର୍ଗର ଆବଶ୍ୟକତା ଉପଲବ୍ଧି କରିଥିଲେ । ସର୍ବଶେଷରେ, ତାଙ୍କ ପ୍ରଦର୍ଶିତ ମାର୍ଗରେ ପରିଚାଳିତ ହେଲେ ମନୁଷ୍ୟ ଚତୁର୍ଥ ଆର୍ଯ୍ୟସତ୍ୟ ପ୍ରଜ୍ଞାର ଅଧିକାରୀ ହୋଇ ନିର୍ବାଣ ପ୍ରାପ୍ତ ହେବ ବୋଲି ସେ ମତ ବ୍ୟକ୍ତ କରିଥିଲେ ।

## ଭାରତୀୟ ଇତିହାସକୁ ବୌଦ୍ଧଧର୍ମର ଦାନ

ସାର୍ ଯଦୁନାଥ ସରକାରଙ୍କ ମତରେ ଭାରତୀୟ ଇତିହାସକୁ ବୌଦ୍ଧ-ଧର୍ମର ଷଡ଼ବିଧ ଦାନ ରହିଅଛି । ତାହା ପ୍ରମାଣ କରିବାକୁ ଯାଇ ସେ କହିଛନ୍ତି *—

୧ । ଏହା ମାନବ ଜଗତ ସମକ୍ଷରେ ସରଳ ଓ ସହଜ ଭାବେ ଆଦୃତ ଏକ ଜନପ୍ରିୟ ଧର୍ମ ଉପସ୍ଥାପିତ କଲା । ଏଥିରେ କୌଣସି ଜଟିଳତା ନାହିଁ କିମ୍ବା ପୁରୋହିତ ଶ୍ରେଣୀର ଆବଶ୍ୟକତା ଉପଲବ୍ଧି ହେଉନାହିଁ । ଏହା ପ୍ରକୃତି ବା ଦେବତା ପରିବର୍ତ୍ତେ ମାନବ ସମାଜ ଓ ମାନବିକ ସମସ୍ୟା ଉପରେ ଏକ ଗୁରୁତ୍ୱ ଆରୋପ କଲା ।

୨ । ବୁଦ୍ଧଦେବଙ୍କର ସ୍ମାରକୀ ପ୍ରତିକୃତିଗୁଡ଼ିକ କାଳକ୍ରମେ ଦେବତା ରୂପରେ ପୂଜିତ ହେବାଦ୍ୱାରା ଏହା ସମାଜରେ ମୂର୍ତ୍ତିପୂଜାର ପ୍ରସାର ପାଇଁ ପ୍ରଶ୍ରୟ ଦେଲା ।

୩ । ଉକ୍ତ ସମ୍ପ୍ରଦାୟ ଓ ବିହାର ପ୍ରତିଷ୍ଠା ପରମ୍ପରାକୁ ମଧ୍ୟ ବୌଦ୍ଧ ଧର୍ମର ଦାନ ରୂପେ ଗ୍ରହଣ କରାଯାଇ ପାରେ ।

୪ । ଏହାଦ୍ୱାରା ସର୍ବସାଧାରଙ୍କ ନିମିତ୍ତ କଥିତ ଭାଷାରେ ବହୁତ ଧର୍ମ ସାହିତ୍ୟ ସୃଷ୍ଟି ହୋଇପାରିଲା ।

୫ । ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ବିଦ୍ୟାର ବିକାଶ ଦିଗରେ ବୌଦ୍ଧଧର୍ମର ଅବଦାନ ବିଶେଷ ଗୁରୁତ୍ୱପୂର୍ଣ୍ଣ ଓ ଗିରି ଗୁହାରେ ବୌଦ୍ଧମାନେ ଶିଳାଲିପି ଓ ପ୍ରସ୍ତର ମୂର୍ତ୍ତିସବୁ ନିର୍ମାଣ କରି ଯେଉଁ ଦୃଷ୍ଟାନ୍ତ ରଖିଗଲେ, ତାହାକୁ ପରେ ହିନ୍ଦୁ ଓ ଜୈନମାନେ ଅନୁସରଣ କରିଥିଲେ ।

---

* ସାର୍ ଯଦୁନାଥ ସରକାରଙ୍କ 'India Through The Ages' ପୃଷ୍ଠା ୧୫—୧୭ ଦ୍ରଷ୍ଟବ୍ୟ ।

୭ । ସର୍ବୋପରି, ତାହା ବହୁ ବିଦେଶୀ ରାଷ୍ଟ୍ରସହିତ ଭାରତର ସମ୍ପର୍କକୁ ଦୃଢ଼ୀଭୂତ କରି ପାରିଥିଲା । ବୌଦ୍ଧଧର୍ମ ବିଶ୍ୱପ୍ରତି ଭାରତର ଏକ ଶ୍ରେଷ୍ଠ ଦାନ ।

ତେବେ ବୁଦ୍ଧଦେବଙ୍କଦ୍ୱାରା ପ୍ରବର୍ତ୍ତିତ ଧର୍ମ ବା ଦର୍ଶନକୁ ଏକ ସମ୍ପୂର୍ଣ୍ଣ ନୂତନ ଧର୍ମ ବା ଦର୍ଶନ ଆଖ୍ୟା ଦିଆଯାଇ ନ ପାରେ । ତାହା ତଦାନୀନ୍ତନ ସମାଜରେ ପ୍ରଚଳିତ ସାଂଖ୍ୟଧର୍ମ, ହିନ୍ଦୁ ଦର୍ଶନ ଓ ଉପନିଷଦ ପ୍ରଭୃତିର ପରିମାର୍ଜିତ ସଂସ୍କରଣ ମାତ୍ର । କେର୍ଣ୍ଣେଲଙ୍କ ** ଭାଷାରେ କହିବାକୁ ଗଲେ— ବୌଦ୍ଧଧର୍ମ ବ୍ରହ୍ମସଂହିତାର ଅନେକ ମତ ଓ ପ୍ରଥା ଗ୍ରହଣ କରିଛି । ପ୍ରଥମେ ତାଙ୍କର କୌଣସି ନୈତିକସଂହିତା ନ ଥିଲା । ଏପରିକି ଭିନ୍‌ସେଣ୍ଟ୍ ସ୍ମିଥ୍‌ଙ୍କ ଭଳି କେତେକ ଐତିହାସିକ ଭାରତୀୟ ଇତିହାସରେ 'ବୌଦ୍ଧଯୁଗ'ର ପ୍ରାଧାନ୍ୟକୁ ଆଦୌ ସ୍ୱୀକାର କରୁନାହାନ୍ତି ।

ତାଂକ ମତରେ ଏହି ଯୁଗରେ ବ୍ରାହ୍ମଣ୍ୟହିନ୍ଦୁ ଧର୍ମ ରହିଥିଲା ଏବଂ ତାର ବହୁ ଉପାସକ ମଧ୍ୟ ରହିଥିଲେ । କୌଣସି କାଳେ ଭାରତୀୟ ଇତିହାସରେ ବୌଦ୍ଧଧର୍ମ ପ୍ରଭାବଶାଳୀ ଧର୍ମ ରୂପେ ବୈଶିଷ୍ଟ୍ୟ ଅର୍ଜ୍ଜନ କରିଥିଲା ବୋଲି କହିବା ସନ୍ଦେହ ଜନକ । 'ବୌଦ୍ଧଯୁଗ' ବୋଲି କେତେକ ଗ୍ରନ୍ଥରେ ଯାହା ଉଲ୍ଲେଖ ଅଛି ତାହା ମିଥ୍ୟା ଓ ଭ୍ରାନ୍ତିମୂଳକ । ସମୟେ ସମୟେ ବୌଦ୍ଧଧର୍ମ ଓ ଜୈନଧର୍ମ ଲୋକପ୍ରିୟ ହୋଇ ଉଠିଥିଲା ଏବଂ କୌଣସି ନା କୌଣସି ରାଜ୍ୟର ବହୁ ସଂଖ୍ୟକ ପ୍ରଜା ସେଥିପ୍ରତି ଆକୃଷ୍ଟ ହେଉଥିଲେ; କିନ୍ତୁ ଏ ମଧ୍ୟରୁ କୌଣସି ଧର୍ମ କୌଣସି କାଳେ ବ୍ରାହ୍ମଣ୍ୟହିନ୍ଦୁ ଧର୍ମକୁ ଚାପିଯାଇ ନ ଥିଲା । (୭) ମାଗଧ ଯୁଗ ପରେ ପରେ ମୌର୍ଯ୍ୟ ଯୁଗରେ ହିଁ ହିନ୍ଦୁଧର୍ମର ପ୍ରାଧାନ୍ୟ ଅନୁଭୂତ ହୋଇଥିଲା ।

## ବୌଦ୍ଧଧର୍ମର କ୍ରମବିଲୟ

ବୁଦ୍ଧଦେବଙ୍କର ମହାପ୍ରୟାଣର ଅଳ୍ପକାଳ ମଧ୍ୟରେ ଭାରତରେ ବୌଦ୍ଧ-ଧର୍ମର ପ୍ରାଧାନ୍ୟ କ୍ଷୁଣ୍ଣ ହେବାର ପ୍ରଧାନ କାରଣମାନଂକ ମଧ୍ୟରେ ମତଵାଦ

** Manual of Indian Buddhism ପୃଷ୍ଠା ୬୮-୬୯ ଦ୍ରଷ୍ଟବ୍ୟ ।
(୭) The Oxford History of India ପୃ-୫୫ ଦ୍ରଷ୍ଟବ୍ୟ

ଧର୍ମଗୁରୁଙ୍କର ଅଭାବ ଅନ୍ୟତମ । ଏ ସମ୍ବନ୍ଧରେ ମତ ବ୍ୟକ୍ତ କରିବାକୁ ଯାଇଁ ସପ୍ତମ ଶତାବ୍ଦୀରେ ଭାରତ ପରିଭ୍ରମଣରେ ଆସିଥିବା ଚୀନ ପରିବ୍ରାଜକ ହୁଏନ୍‌ସାଂ ତାଂକ ବିବରଣୀରେ ଉଲ୍ଲେଖ କରିଛନ୍ତି ଯେ ଆଦ୍ୟ କାଳର ବୌଦ୍ଧ-ଗୁରୁମାନେ ଅତି ଗମ୍ଭୀର, ଜ୍ଞାନୀ ଓ ନୀତିବାନ ଥିଲେ ଏବଂ ସେତେବେଳେ ହିନ୍ଦୁ ପଣ୍ଡିତମାନେ ନୀରବ ରହିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ସେହି ପୂରୁଷକାଳର ବୌଦ୍ଧଗୁରୁମାନଂକର ତିରୋଧାନପରେ ତାଙ୍କର ଉତ୍ତରାଧିକାରୀ-ଗଣ ପୂର୍ବ ପୁରୁଷଂକର ସମକକ୍ଷ ହୋଇପାରି ନ ଥିଲେ ଏବଂ ହିନ୍ଦୁମାନେ ତାର ସୁଯୋଗ ନେଇଥିଲେ । ତତ୍କାଳୀନ ଅବସ୍ଥାକୁ ସାର୍ ଯଦୁନାଥ ସରକାରଂକ ଭାଷାରେ ପ୍ରକାଶ କଲେ, "ବୌଦ୍ଧ ସନ୍ନ୍ୟାସୀମାନଂକର ନୈତିକ ଅଧଃପତନ ତଥା ବିଶିଷ୍ଟ ଧର୍ମଗୁରୁ ଓ ପଣ୍ଡିତ ଗୋଷ୍ଠୀ ସୃଷ୍ଟି କରିବାଲାଗି ଅପାରଗତା ପାଇଁ ପରବର୍ତ୍ତୀକାଳରେ ବୌଦ୍ଧଧର୍ମାବଲମ୍ବୀମାନେ ଜଗୁଆଳ ବିହୀନ ମେଷପଲ ଭଳି ଭାରତରେ ବିକ୍ଷିପ୍ତ ହୋଇ ପଡ଼ିଥିଲେ ।"*

କାଳକ୍ରମେ ବୌଦ୍ଧମାନେ ହୀନଯାନ ଓ ମହାଯାନ ନାମକ ଦୁଇଟି ସମ୍ପ୍ରଦାୟରେ ବିଭକ୍ତ ହୋଇଯିବା ଫଳରେ ବୌଦ୍ଧଧର୍ମର ମୌଳିକତା ହ୍ରାସ ପାଇଥିଲା । ମହାଯାନ ସମ୍ପ୍ରଦାୟ ହିନ୍ଦୁଧର୍ମ ତଥା ବ୍ରାହ୍ମଣ୍ୟଧର୍ମର ଆଦର୍ଶ ଆଡ଼କୁ ବିଶେଷ ମାତ୍ରାରେ ଢଳି ଯାଇଥିବାରୁ ତାହା ଅଧିକ ଲୋକପ୍ରିୟ ହୋଇ ଉଠିଥିଲା ଏବଂ ବୌଦ୍ଧଧର୍ମ ଓ ହିନ୍ଦୁଧର୍ମ ମଧ୍ୟରେ ଯୋଗସୂତ୍ରର ସେତୁ ସ୍ୱରୂପ କାର୍ଯ୍ୟ କରିଥିଲା । ଅବଲୀଳାକ୍ରମରେ ହିନ୍ଦୁସମାଜ ତଥା ମହାଯାନ ଗୋଷ୍ଠୀ ବୁଦ୍ଧ-ଦେବଙ୍କୁ ହିନ୍ଦୁଦେବତା ବିଷ୍ଣୁଙ୍କର ଏକ ଅବତାର ରୂପେ ଗ୍ରହଣ କଲେ ଏବଂ କ୍ରମଶଃ ବୌଦ୍ଧ-ଦର୍ଶନ ତଥା ହିନ୍ଦୁଧର୍ମ ତନ୍ତ୍ରବାଦ ଓ ବହୁବିଧ ଅନ୍ଧବିଶ୍ୱାସର ଶିକାର ହେଲା । ଏହା ଫଳରେ ବୌଦ୍ଧବିହାରଗୁଡ଼ିକ ନ୍ୟସ୍ତସ୍ୱାର୍ଥଗୋଷ୍ଠୀର ଆଡ୍‌ଡ଼ା ସ୍ଥଳୀରେ ପରିଣତ ହୋଇଥିଲା ଏବଂ ବୌଦ୍ଧଧର୍ମାବଲମ୍ବୀମାନଙ୍କ ମଧ୍ୟରେ ଘୋର ବିଶୃଙ୍ଖଳା ଦେଖାଗଲା । ଜନୈକ ବିଶିଷ୍ଟ ପାଶ୍ଚାତ୍ୟ ନାରୀ ସମାଲୋଚକ ଶ୍ରୀମତୀ ଏଚ ଜେଡ଼ଭିଡ଼ସ୍‌ଂକ ମତରେ, ତାତ୍କାଳୀକ ତ୍ରୁଟିପୂର୍ଣ୍ଣ ପରିକଳ୍ପନାର ପ୍ରଭାବରେ ଗୌତମଙ୍କର ନୀତିଶିକ୍ଷାଟିପୂ ମସ୍ତିଷ୍କର କୃତିମତା

* "India Through the Ages" ପୁସ୍ତକର ୩୫ ପୃଷ୍ଠା ଦ୍ରଷ୍ଟବ୍ୟ ।

(Forgeries of the Brain) ଦ୍ୱାରା ଆଚ୍ଛାଦିତ ହୋଇ ପରିବର୍ତ୍ତନଶୀଳତାର ଗୂଢ଼ଚକ୍ୟ ସୂକ୍ଷ୍ମାଣୁ ମଧ୍ୟରେ ବିଲୀନ ହୋଇଯାଇଥିଲା । *

ଭାରତରେ ବୌଦ୍ଧଧର୍ମର କ୍ରମବିଲୟ ପ୍ରସଙ୍ଗ ଅବତାରଣା କରି ପଣ୍ଡିତ ନେହେରୁ ତାଙ୍କର 'ଭାରତ ଆବିଷ୍କାର' ଗ୍ରନ୍ଥରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି —

"Brahminism and Buddhism acted and reacted on each other ..........Buddhism had started at a time of social and spiritual revival, and reform in India. It infused the breath of new life in the people......... Under the imperial patronage of Ashoka it spread rapidly and became the dominant religion of India. It spread also to other countries...........Meanwhile there had been a revival of Brahminism and a great cultural renaissance under the imperial Guptas in the fourth and fifth centuries A. C. This was not anti-Buddhist in any way but it certainly increased the importance and power of Brahminism, and it was also a reaction against the other worldliness of Buddhism.......But both Brahminism and Buddhism deteriorated and degrading practices grew up in them. It became difficult to distinguish the two. If Brahminism absorbed Buddhism, this process changed Brahminism also in many ways.......Buddhism gradually vanished from India as a widespread religion." ‡

* Dr. S. Radhakrishnanଙ୍କର 'Indian Philosophy' ଗ୍ରନ୍ଥରେ ଉଦ୍ଧାର କରାଯାଇଥିବା Mrs. Rysh Devidsଙ୍କର ମନ୍ତବ୍ୟ ଦ୍ରଷ୍ଟବ୍ୟ ।

‡ Jawaharlal Nehruଙ୍କର 'Discovery of India' (1960 ed.) ପୁସ୍ତକର ପୃ. ୧୭୦—୧୭୧ ଦ୍ରଷ୍ଟବ୍ୟ ।

ଏହାର ସାରମର୍ମ ହେଲା—ବ୍ରାହ୍ମଧର୍ମ (ହିନ୍ଦୁଧର୍ମ) ଓ ବୌଦ୍ଧଧର୍ମ ପରସ୍ପର କ୍ରିୟାଶୀଳ ଓ ପ୍ରତିକ୍ରିୟାଶୀଳ ହୋଇ ଉଠିଥିଲେ । ଭାରତରେ ଯେତେବେଳେ ଏକ ସାମାଜିକ ଓ ଆଧ୍ୟାତ୍ମିକ ସଂସ୍କାର ଓ ବିବର୍ତ୍ତନର ବାତ୍ୟା ପ୍ରବାହିତ ହେଉଥିଲା, ସେତେବେଳେ ଏଠାରେ ବୌଦ୍ଧଧର୍ମର ଆବିର୍ଭାବ ଘଟିଥିଲା ଏବଂ ତାହା ଜନସମାଜରେ ଏକ ନୂତନ ପ୍ରାଣ ସଞ୍ଚାର କରିଥିଲା । ପୁଣି ସେତେବେଳେ ସମ୍ରାଟ ଅଶୋକଙ୍କର ପୃଷ୍ଠପୋଷକତା ଯୋଗୁଁ ତାର ବ୍ୟାପକ ପ୍ରସାର ଘଟିଥିଲା ଏବଂ ତାହା ଭାରତର ପ୍ରଭାବଶାଳୀ ଧର୍ମରୂପେ ମୁଣ୍ଡ ଟେକିଥିଲା । ତଦୁପରି ତାହା ବିଦେଶରେ ମଧ୍ୟ ପ୍ରସାର ଲାଭ କରିଥିଲା । କିନ୍ତୁ ପରେ ଖ୍ରୀଷ୍ଟୀୟ ଚତୁର୍ଥ ଓ ପଞ୍ଚମ ଶତାବ୍ଦୀ ବେଳକୁ ଗୁପ୍ତଯୁଗୀୟ ସମ୍ରାଟ-ମାନଙ୍କର ସହଯୋଗରେ ଏକ ମହାନ୍ ସାଂସ୍କୃତିକ ନବୀକରଣର ଅଭ୍ୟୁତ୍ଥାନ ଘଟିଥିଲା ଏବଂ ବ୍ରାହ୍ମଧର୍ମ ପୁନରୁଜ୍ଜୀବିତ ହୋଇଥିଲା । ତାହା ବୌଦ୍ଧଧର୍ମର ବିରୋଧାତ୍ମକ ନଥିଲେ ମଧ୍ୟ ବ୍ରାହ୍ମଧର୍ମର ପ୍ରାଧାନ୍ୟ ଓ ପ୍ରଭାବ ବୃଦ୍ଧି କରିଥିଲା ଏବଂ ବୌଦ୍ଧଧର୍ମର ଅପାର୍ଥିବତା ବିରୋଧରେ ପ୍ରତିକ୍ରିୟାଶୀଳ ହୋଇ ଉଠିଥିଲା । କିନ୍ତୁ ଉଭୟ ବ୍ରାହ୍ମଧର୍ମ ଓ ବୌଦ୍ଧଧର୍ମରେ ହୀନପ୍ରଥାମାନ ପଶିଯିବାରୁ ଉଭୟ ଧର୍ମ ନିମ୍ନସ୍ତରକୁ ଖସି ଆସିଥିଲା । ଏପରିକି ଦୁଇଧର୍ମ ମଧ୍ୟରେ ଥିବା ପ୍ରଭେଦ ନିରୂପଣ କରିବା ଦୁଃସାଧ ହୋଇପଡ଼ିଥିଲା । ବ୍ରାହ୍ମଧର୍ମ ମଧ୍ୟରେ ବୌଦ୍ଧଧର୍ମ କେବଳ ବିଲୀନ ହୋଇଯାଇ ନଥିଲା, ତତ୍ସଙ୍ଗେ ସଙ୍ଗେ ତାହା ବ୍ରାହ୍ମଧର୍ମରେ ମଧ୍ୟ ଅନେକ ପରିବର୍ତ୍ତନ ଆଣି ଦେଇଥିଲା । କାଳକ୍ରମେ ବୌଦ୍ଧଧର୍ମ ଏକ ସୁବିସ୍ତୃତ ଧର୍ମ ରୂପରେ ଭାରତ ଭୂମିରୁ ଅପସାରିତ ହୋଇଯାଇଥିଲା ।

ଏହି ମର୍ମରେ ସାର ଚାର୍ଲ୍‌ସ୍ ଇଲିୟଟ * ମଧ୍ୟ ଯଥାର୍ଥରେ ମତ ବ୍ୟକ୍ତ କରିଛନ୍ତି ଯେ ବୌଦ୍ଧଧର୍ମରୁ ହିନ୍ଦୁଧର୍ମ ପାଞ୍ଚୋଟି ବିଶିଷ୍ଟ ଉପାଦାନ ଆହରଣ କରିଛି; ଯଥା—(୧) ପଶୁପ୍ରାଣର ପବିତ୍ରତା, (୨) ପଶୁବଳିର ନିଷେଧ, (୩) ଧର୍ମଗୀତ ଅନୁଷ୍ଠାନ ଓ ଧାର୍ମିକ ଶୃଙ୍ଖଳା, (୪) ଭାରତୀୟ ତର୍କଶାସ୍ତ୍ରର ବିକାଶ, ଏବଂ (୫) ଅଦ୍ୱୈତ ଦର୍ଶନର କେତେକ ଉପାଦାନ । ବାସ୍ତବିକ୍, ଅଷ୍ଟମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତ ଦର୍ଶନର ପ୍ରଚାର ଫଳରେ ହିଁ

* 'Hinduism Through the Ages' ପୁସ୍ତକର ୩୪ ପୃଷ୍ଠା ଦ୍ରଷ୍ଟବ୍ୟ ।

ଭାରତରେ ବୌଦ୍ଧଧର୍ମର ପ୍ରାଧାନ୍ୟ ଲୋପ ପାଇଥିଲା । ତଥାପି ବଙ୍ଗ ଓ ଆସାମରେ ତାର ଯତ୍ କିଞ୍ଚିତ୍ ପ୍ରଭାବ ଅନୁଭୂତ ହେଉଥିଲା । କିନ୍ତୁ ଷୋଡ଼ଶ ଶତାବ୍ଦୀରେ ଶ୍ରୀ ଚୈତନ୍ୟ ଓ ଶଙ୍କର ଦେବଙ୍କର ବୈଷ୍ଣବଧର୍ମ ପ୍ରଚାର ପରେ ବୌଦ୍ଧଧର୍ମ ସମ୍ପୂର୍ଣ୍ଣ ବିଲୀନ ହୋଇଯାଇଥିଲା ।

ସୁତରାଂ, ବୁଦ୍ଧଦେବଙ୍କ ତିରୋଧାନର ଅର୍ଦ୍ଧସହସ୍ରାବ୍ଦୀ ମଧ୍ୟରେ ଭାରତରେ ବୌଦ୍ଧଧର୍ମର ବିନାଶ ଘଟିଥିଲା ବୋଲି କହିବା ଯଥାର୍ଥ ନୁହେଁ । ସେତେବେଳେ ବୌଦ୍ଧଧର୍ମ ଭାରତରୁ ଅପସାରିତ ହୋଇଯାଇଥିଲା ସତ୍ୟ, କିନ୍ତୁ ତାହା ବିତାଡ଼ିତ କିମ୍ବା ବିନଷ୍ଟ ହୋଇ ଯାଇ ନଥିଲା; ହିନ୍ଦୁଧର୍ମରେ ବିଲୀନ ହୋଇ ଏକ ନୂତନ ରୂପରେ ପ୍ରସାର ଲାଭ କରିଥିଲା ମାତ୍ର ।

---

## ଷଷ୍ଠ ପର୍ଯ୍ୟାୟ

# ମୌର୍ଯ୍ୟଯୁଗ

ଖ୍ରୀଷ୍ଟପୂର୍ବ ୩୨୫ ବେଳକୁ ଭାରତର ଇତିହାସରେ ଏକ ସଙ୍କଟକାଳୀନ ପରିସ୍ଥିତି ଉଦ୍‌ଭବ ହୋଇଥିଲା । ସମ୍ରାଟ ଆଲେକଜାଣ୍ଡାର ନିଜର ବିଜ୍ଞ ବିବେଚନା ବଳରେ ଭାରତରୁ ପ୍ରତ୍ୟାବର୍ତ୍ତନ କରି ବେବିଲନକୁ ଚାଲି ଯାଇଥିଲେ ଏବଂ ସେଠାରେ ତାଙ୍କର ଦେହାନ୍ତ ଘଟିଥିଲା ସତ, ତେବେ ତାଙ୍କର କେତେ ଜଣ ଅନୁଚର ବିଜୟଲବ୍ଧ ଭାରତୀୟ ଅଞ୍ଚଳ ପରିତ୍ୟାଗ କରିବାକୁ ଚାହିଁ ନ ଥିଲେ ଏବଂ ସେଠାରେ ନିଜର ଆଧିପତ୍ୟ ବଜାୟ ରଖିବା ଲାଗି ଉଦ୍ୟମ କରିଥିଲେ । ସିନ୍ଧୁ ଉପତ୍ୟକା ତଥା ପଞ୍ଜାବର ପଶ୍ଚିମାଞ୍ଚଳରେ ମେସିଡ଼ୋନୀୟ ଗଭର୍ଣ୍ଣର ଫିଲିପସ୍ (ଆଲେକଜାଣ୍ଡାରଙ୍କ ପିତା ନୁହନ୍ତି) ଓ ତାଙ୍କ ପରେ ୟୁଡ଼େମସ୍ ବେଶ୍ ଆଧିପତ୍ୟ ବିସ୍ତାର କରିଥିଲେ । ଅବଶ୍ୟ ସେତେବେଳକୁ ବିଦେଶୀ ଶାସନ ବିରୋଧରେ ଭାରତରେ ଜାତୀୟ ଚେତନା ଜାଗ୍ରତ ହୋଇ ସାରିଥିଲା ଏବଂ ସିନ୍ଧୁ ଉପତ୍ୟକାର ନିମ୍ନଦେଶରେ ବାସ କରୁଥିବା ବ୍ରାହ୍ମଣ ସମାଜ ଆଲେକଜାଣ୍ଡାଙ୍କର ଉତ୍ତରସାଧକମାନଙ୍କ ବିପକ୍ଷରେ ଏକ ଗଣ ଆନ୍ଦୋଳନ ସୃଷ୍ଟି କରିଥିଲା । ସେତେବେଳେ ସେହି ଆନ୍ଦୋଳନକୁ ଦୃଢ଼ ହସ୍ତରେ ଦମନ କରାଯାଇଥିଲା ସତ, କିନ୍ତୁ ପରେ ଯେତେବେଳେ ତକ୍ଷଶିଳାର ବ୍ରାହ୍ମଣ ନେତା ଚାଣକ୍ୟ (କୌଟିଲ୍ୟ) ମୌର୍ଯ୍ୟବଂଶୀୟ ଯୁବକ ଚନ୍ଦ୍ରଗୁପ୍ତଙ୍କୁ ଅଗ୍ରଣୀ କରାଇ ଆନ୍ଦୋଳନର ନେତୃତ୍ୱ ନେଲେ, ସେଠାରେ ବିଦେଶୀ ଆଧିପତ୍ୟ ଆଉ ତିଷ୍ଠି ପାରିଲା ନାହିଁ ।

### ଚନ୍ଦ୍ରଗୁପ୍ତ ମୌର୍ଯ୍ୟ

କିମ୍ବଦନ୍ତୀରୁ ଜଣାଯାଏ ଯେ, ଚନ୍ଦ୍ରଗୁପ୍ତ ଗୋରୁଜଗାଳୀ ଓ ପଶୁ-ଶିକାରୀମାନଙ୍କ ଗହଣରେ ତାଙ୍କର ଆଦ୍ୟ ଜୀବନ ଅତିବାହିତ କରିଥିଲେ ।

ଯେତେବେଳେ ଗ୍ରୀକ୍ ସମ୍ରାଟ ଅଲେକଜାଣ୍ଡାର ପଞ୍ଜାବରେ ପଦାର୍ପଣକରିଥିଲେ ସେତେବେଳେ କିଶୋର ଚନ୍ଦ୍ରଗୁପ୍ତ ଏକ ନିର୍ଭୀକ ଓ ଦୃଢ଼ ଭାଷଣ ପ୍ରଦାନ କରି ତାଙ୍କୁ ଅପମାନିତ କରିଥିଲେ ତେଣୁ ସେଥିରେ ଉତ୍ତ୍ୟକ୍ତ ହୋଇ ଆଲେକଜାଣ୍ଡାର ତାଙ୍କୁ ହତ୍ୟାଦେଶ ଦେଇଥିଲେ । କିନ୍ତୁ ଚନ୍ଦ୍ରଗୁପ୍ତ କୌଶଳରେ ହତ୍ୟାକାରୀର କବଳରୁ ଖସି ଆସି ବିନ୍ଧ୍ୟାରଣ୍ୟରେ ବୁଲୁଥିବା ସମୟରେ ପାଟଳୀପୁତ୍ରର ନନ୍ଦରାଜାଙ୍କ ଦରବାରରେ ଅପଦସ୍ତ ହୋଇ ସେହି ଜଙ୍ଗଲରେ ପରିଭ୍ରମଣ କରୁଥିବା ବିଖ୍ୟାତ ବ୍ରାହ୍ମଣ ଚାଣକ୍ୟଙ୍କ ସଂସ୍ପର୍ଶରେ ଆସିଥିଲେ ଓ ତାଙ୍କ ଗୃହରେ ଯାଇ ଆଶ୍ରୟ ନେଇଥିଲେ । ସେଠାରେ ଚାଣକ୍ୟ ତାଙ୍କ ପାଇଁ ଏକ ସୈନ୍ୟବାହିନୀ ଗଢ଼ି ଦେବା ପରେ ତରୁଣ ଚନ୍ଦ୍ରଗୁପ୍ତ ବିଦେଶୀ ଶାସକମାନଙ୍କ ବିରୋଧରେ ଯୁଦ୍ଧରେ ତାଙ୍କୁ ସାହାଯ୍ୟ କରିବା ପାଇଁ ଭାରତୀୟମାନଙ୍କୁ ପ୍ରବର୍ତ୍ତାଇଥିଲେ । ତାପରେ ସେ ପ୍ରତ୍ୟକ୍ଷ ସଂଗ୍ରାମରେ ଅବତୀର୍ଣ୍ଣ ହୋଇ ଆଲେକଜାଣ୍ଡାରଙ୍କ ତତ୍ତ୍ୱାବଧାୟକ ସେଲ୍ୟୁକସଙ୍କୁ ଯୁଦ୍ଧରେ ପରାସ୍ତ କରି ଖ୍ରୀ. ପୂ. ୩୨୪ରେ * ରାଜସିଂହାସନ ଅଧିକାର କରିଥିଲେ ଏବଂ ଚାଣକ୍ୟ ତାଙ୍କର ପ୍ରଧାନମନ୍ତ୍ରୀ ରୂପେ ନିଯୁକ୍ତ ହୋଇଥିଲେ ।

ଚନ୍ଦ୍ରଗୁପ୍ତ ପ୍ରଥମେ ମାଳବ (ଅବନ୍ତୀ) ଓ କାଥିଆବାଡ଼ କରଗତ କରି ପରେ ପୁଷ୍ପଗୁପ୍ତଙ୍କ ଅଧୀନରେ ଥିବା ସୌରାଷ୍ଟ୍ର ପର୍ଯ୍ୟନ୍ତ ତାଙ୍କର ଆଧିପତ୍ୟ ବିସ୍ତାର କରିଥିଲେ । ଏପରିକି ତାଙ୍କର ରାଜତ୍ୱ ଶେଷ ହେବା ବେଳକୁ ସେ ବେବିଲନର ରାଜା ସେଲ୍ୟୁକସଙ୍କ ସହିତ ପୁଣି ଥରେ ରଣକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ସେଠାରେ ତାଙ୍କୁ ପୁନର୍ବିଜିତ କରି ଏକ ଚୁକ୍ତିନାମା ବଳରେ କାବୁଲ, ବେଲୁଚିସ୍ଥାନ ପ୍ରଭୃତି ଅଞ୍ଚଳ ଅଧିକାର କରିଥିଲେ ।

ସେ ଜୈନଧର୍ମ ପ୍ରତି ଅନୁରକ୍ତ ଥିଲେ ମଧ୍ୟ ଅହିଂସା ଓ ପଶୁହତ୍ୟା ନିରୋଧର ଦୃଢ଼ ସମର୍ଥକ ନ ଥିଲେ । ସେ ଥିଲେ ଅତି ଶିକାରପ୍ରିୟ ଓ ଯାଗ ହୋମାଦିର ଉପାସକ । ପୁତ୍ର ହସ୍ତରେ ଶାସନ ଭାର ଅର୍ପଣ କରି ତାଙ୍କ ଶେଷଜୀବନ ସେ ମହୀଶୂରରେ ଅତିବାହିତ କରିଥିବା ଜଣାଯାଏ ।

---

* ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ସିଂହାସନାରୋହଣ କାଳ ସଂପର୍କରେ ଐତିହାସିକମାନେ ଭିନ୍ନ ଭିନ୍ନ ମତ ଦିଅନ୍ତି । ତେବେ ଖ୍ରୀ. ପୂ. ୩୨୪କୁ ଯଥାର୍ଥ ସମୟ ବୋଲି ଅନେକ ଇତିହାସବିଦ୍ ପ୍ରମାଣ କରିଥିବାରୁ, ତାହା ଏଠାରେ ଗୃହୀତ ହୋଇଛି ।

## ବିନ୍ଦୁସାର

ଚନ୍ଦ୍ରଗୁପ୍ତଙ୍କ ପୁତ୍ର ଓ ଉତ୍ତରାଧିକାରୀ ବିନ୍ଦୁସାର ଖ୍ରୀ. ପୂ. ୩୦୦ରୁ ୨୭୩ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ପିତାଙ୍କ ରାଜ୍ୟସୀମାକୁ ଅକ୍ଷୁର୍ଣ୍ଣ ରଖିବା ସଙ୍ଗେ ସଙ୍ଗେ ମହୀଶୂରର ଚିତଲଦୁର୍ଗପର୍ଯ୍ୟନ୍ତ କ୍ଷମତା ବିସ୍ତାର କରିଥିବା ଜଣାଯାଏ । ତେବେ ପୁରୀ ଓ ଗଞ୍ଜାମ ଜିଲ୍ଲା ସମେତ କଳିଙ୍ଗର ଅନେକ ଉପକୂଳବର୍ତ୍ତୀ ଅଞ୍ଚଳ ସ୍ୱାଧୀନ ହୋଇ ରହିଥିଲା । ବିନ୍ଦୁସାରଙ୍କ ରାଜତ୍ୱ କାଳରେ ତକ୍ଷଶିଳାରେ ଏକ ଗଣବିପ୍ଲବର ସୂତ୍ରପାତ ଘଟିଥିଲା ଏବଂ ତାକୁ ସେ ଦୃଢ଼ ହସ୍ତରେ ଦମନ କରିଥିଲେ । ତାଙ୍କର ବୈଦେଶିକ ସମ୍ପର୍କ ବନ୍ଧୁତ୍ୱ-ପୂର୍ଣ୍ଣ ଥିଲା ଏବଂ ସେ ସିରିଆ, ବେବିଲୋନ ପ୍ରଭୃତି ସହିତ ସଦ୍‌ଭାବ ରଖିଥିଲେ । ସେ ଏକାଧିକ ପତ୍ନୀ ଗ୍ରହଣ କରିଥିଲେ ଏବଂ ବହୁସଂଖ୍ୟକ ପୁତ୍ର ଓ କନ୍ୟାର ଜନକ ହୋଇଥିଲେ । ପୁତ୍ରମାନଙ୍କ ମଧ୍ୟରୁ ଅଶୋକଙ୍କୁ ସେ ତକ୍ଷଶିଳା ଓ ଉଜ୍ଜୟିନୀର ଶାସନ ଦାୟିତ୍ୱ ଦେଇଥିଲେ ।

## ଅଶୋକ

ପ୍ରବଚନ ପ୍ରଚଳିତ ଅଛି, ଅଶୋକ ତାଙ୍କର ଅନେକଶତ ଭ୍ରାତାଙ୍କୁ ହତ୍ୟାକରି ରାଜସିଂହାସନ ଆରୋହଣ କରିଥିଲେ । ତେବେ ବାସ୍ତବତା ଦୃଷ୍ଟିରୁ ସଂଖ୍ୟାଟି ଅତିରଞ୍ଜିତ ମନେ ହେଲେ ସୁଦ୍ଧା ରାଜତ୍ୱ ଅଧିକାର ନିମିତ୍ତ ଅଶୋକ ଓ ତାଙ୍କ ଭ୍ରାତାମାନଙ୍କ ମଧ୍ୟରେ ଯେ ସଂଘର୍ଷ ଘଟିଥିବ, ଏହା ଅସ୍ୱୀକାର କରାଯାଇ ନପାରେ । ଏଥିପାଇଁ ତାଙ୍କୁ 'ଅର୍ଦ୍ଧ-ରାକ୍ଷସ ଓ ଅର୍ଦ୍ଧ-ମୂଢ଼' (Half Monster and Half Idiot) ବୋଲି ମଧ୍ୟ କୁହାଯାଉ-ଅଛି । ସେ ଯାହାହେଉ, ରକ୍ତପାତର ଚରମ ସୀମା ଲଙ୍ଘନ କରିବା ପରେ ସେ ଯେ ଶାନ୍ତିର ଉପାସକ ବୌଦ୍ଧ ଧର୍ମର ପ୍ରଚାରକ ହୋଇ ପାରିଥିଲେ,ତାହାହିଁ ତାଙ୍କର ଅନବଦ୍ୟ ଐତିହାସିକ ଅବଦାନ ।

କମ୍ବୋଜ, ଗାନ୍ଧାର ଓ ସିରିଆଠାରୁ ଆରମ୍ଭ କରି ଆନ୍ଧ୍ରର କୃଷ୍ଣା ଓ ଗୋଦାବରୀ ଅଞ୍ଚଳ ପର୍ଯ୍ୟନ୍ତ ଅଶୋକ ତାଙ୍କର କ୍ଷମତା ବିସ୍ତାର କରିଥିଲେ । କିନ୍ତୁ ଖ୍ରୀ: ପୂ: ୨୬୧ ର କଳିଙ୍ଗ ବିଜୟ ବ୍ୟତୀତ ଅଶୋକଙ୍କ ସମୟରେ ଅନ୍ୟ କୌଣସି ଉଲ୍ଲେଖଯୋଗ୍ୟ ସୀମାସଂପ୍ରସାରଣ ଘଟିନଥିଲା କହିଲେ ଚଳେ; କାରଣ ଚନ୍ଦ୍ରଗୁପ୍ତ ତାଙ୍କ ରାଜତ୍ୱ କାଳରେ ସେସବୁ ଅଞ୍ଚଳ ପର୍ଯ୍ୟନ୍ତ ପ୍ରତିପତ୍ତି ବିସ୍ତାର କରିଥିଲେ । ପୁଣି ସେହି କଳିଙ୍ଗ ସମର ମଧ୍ୟ ଅଶୋକଙ୍କ ମନରେ

ବିରାଟ ପରିବର୍ତ୍ତନ ଆଣିଥିଲା ଏବଂ ସେଣ୍ଟ୍ ପଲଙ୍କ ପରି ସେ ଯୁଦ୍ଧ ପରିହାର କରି ଶାନ୍ତି ମନ୍ତ୍ରର ଉପାସକ ହୋଇ ଯାଇଥିଲେ । ତେବେ ଚନ୍ଦ୍ରଗୁପ୍ତଙ୍କ ସମୟରେ ଭାରତରେ ଯେଉଁ ରାଜନୈତିକ ଚେତନା ଉଦ୍ରେକ ହୋଇଥିଲା, ତାହା ଅଶୋକଙ୍କ ରାଜତ୍ୱ କାଳରେ ଅଧିକ ଘନୀଭୂତ ହୋଇଥିଲା । ଏଣୁ ମାର୍ଗାରେଟ୍ ନୋବଲ ( ଭଗିନୀ ନିବେଦିତା) ଯଥାର୍ଥରେ ମନ୍ତବ୍ୟ ଦେଇଛନ୍ତି—

"From the day of the accession of this Chandra Gupta, India was potentially mature. With the conversion of Asoka she becomes aware of her own maturity "*

ଅର୍ଥାତ୍, ଚନ୍ଦ୍ରଗୁପ୍ତଙ୍କ ସିଂହାସନାରୋହଣ ସମୟରୁ ଭାରତର ଶକ୍ତି ପରିପକ୍ୱ ହୋଇଥିଲା, କିନ୍ତୁ ଅଶୋକ ଆସିବା ପରେ ସେ ତାର ପରିପକ୍ୱତା ସମ୍ବନ୍ଧରେ ସଚେତନ ହେଲା ।

ଅଶୋକଙ୍କ ସର୍ବଶ୍ରେଷ୍ଠ କୃତିତ୍ୱ ଏହି ଯେ, ସେ ପ୍ରଥମଥର ପାଇଁ ଅନ୍ତର୍ଜାତୀୟ ସ୍ତରରେ ଶାନ୍ତିବାଦ ଚିନ୍ତାଧାରାକୁ ପ୍ରସାରିତ କରିଥିଲେ ଏବଂ ବୌଦ୍ଧଧର୍ମର ପ୍ରଚାରକ ହିସାବରେ ସର୍ବପ୍ରଥମେ ଅହିଂସା, ବିଶ୍ୱମୈତ୍ରୀ ଓ ସଂଗ୍ରାମଶୂନ୍ୟ ମାନବ ସମାଜର ପରିକଳ୍ପନା କରିଥିଲେ । ଡକ୍ଟର ରାଧାକୁମୁଦ ମୁଖାର୍ଜିଙ୍କ ମତରେ ଅଶୋକଙ୍କର ନୈତିକ ଓ ରାଜନୈତିକ ଆଦର୍ଶ ତାଙ୍କ ସମୟଠାରୁ ବହୁ ଅଗ୍ରଗାମୀ ଥିଲା ଏବଂ ତାକୁ ଭିତ୍ତି କରି ହିଁ ବର୍ତ୍ତମାନ ଯୁଗର ଆନ୍ତର୍ଜାତିକ ଅନୁଷ୍ଠାନ ରାଷ୍ଟ୍ରସଙ୍ଘ (League of Nations) ଓ ଜାତିସଙ୍ଘ (U.N.O.) ପ୍ରତିଷ୍ଠା ହେଲା । § ସେଥିଯୋଗୁ ଯଥାର୍ଥରେ 'ଦେବାନାଂ ପ୍ରିୟ ପ୍ରିୟଦର୍ଶୀ' ରୂପେ ଶିଳାଲେଖ ଗୁଡ଼ିକରେ ଉଲ୍ଲେଖ କରାଯାଇଛି ।

ଏତଦ୍‌ବ୍ୟତୀତ, ପ୍ରଶାସନ କ୍ଷେତ୍ରରେ ମଧ୍ୟ ଅଶୋକ ପ୍ରଶଂସନୀୟ ପରିବର୍ତ୍ତନ ଆଣିଥିଲେ ଏବଂ ତଦ୍ଦ୍ୱାରା ଆଦର୍ଶ ଶାସକ ତଥା ଶାସନନୀତିଜ୍ଞ

---

* Footfalls of Indian History ପୁସ୍ତକର ପୃ-୧୦୭ ଦ୍ରଷ୍ଟବ୍ୟ ।

§ ଭାରତୀୟ ବିଦ୍ୟାଭବନଦ୍ୱାରା ପ୍ରକାଶିତ 'Pageant of Great Lives' (Series 1)ର ପୃ: ୫୫ ଦ୍ରଷ୍ଟବ୍ୟ ।

ସ୍ୱଭାବରେ ଅସାଧାରଣ ଗୌରବର ଅଧିକାରୀ ହୋଇଥିଲେ । ସାଧାରଣ ଜନତାର କଲ୍ୟାଣ ନିମିତ୍ତ ଶିକ୍ଷାପ୍ରସାରର ବିକାଶ ସାଧନ ପ୍ରତି ଦୃଷ୍ଟି ଦେବାଠାରୁ ଆରମ୍ଭ କରି ନଗର, ପ୍ରାସାଦ, ସ୍ତୂପ ଓ ବିହାର ନିର୍ମାଣ, ରାସ୍ତାଘାଟ, କୂପବାପୀ, ଜଳାଶୟ ଓ ଧର୍ମଶାଳା ପ୍ରତିଷ୍ଠା, ଶ୍ରାନ୍ତ ପଥିକମାନଙ୍କର ଆଶ୍ରୟ ନିମନ୍ତେ ଚୂତଅଶ୍ୱତ୍ଥାଦି ମହାଦ୍ରୁମ ରୋପଣ କରିବା ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ସେ ଆଧୁନିକ ଜନମଙ୍ଗଳ ରାଷ୍ଟ୍ରର ଶାସନ ପଦ୍ଧତି ଭଳି କଲ୍ୟାଣକାମୀ ନୀତି ସବୁ ଅନୁସରଣ କରିଥିଲେ ଏବଂ ଏହି କ୍ଷେତ୍ରରେ ମଧ୍ୟ ସେ ତାଙ୍କ ଯୁଗଠାରୁ ବହୁ ଅଗ୍ରଗାମୀ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଅଧ୍ୟାପକ ବାଶମ୍‌ଙ୍କ ଭାଷାରେ, "Asoka was by no means an other-worldly dreamer, but every inch a king, a little naive, often rather self-righteous and pompous, but indefatigable, strong-willed and imperious". *

ଅର୍ଥାତ୍, ଅଶୋକ ଜଣେ ଅନ୍ୟଜଗତର ସ୍ୱପ୍ନଦ୍ରଷ୍ଟା ନଥିଲେ,ସେ ଥିଲେ ପ୍ରକୃତିରେ ଜଣେ ସମ୍ରାଟ । ସେ ସରଳ, ଆତ୍ମନିଷ୍ଠ ଓ ବିଳାସପ୍ରିୟ ଥିଲେ ମଧ୍ୟ ଅକ୍ଳାନ୍ତ, ଦୃଢ଼ଚିତ୍ତ ଓ ଉଦ୍ଧତ ଥିଲେ । ସଂକ୍ଷେପରେ ପ୍ରକାଶ କଲେ, ସମ୍ରାଟ ଅଶୋକ ଥିଲେ ଜଣେ ସୁପୁରୁଷ ଓ ଜଣେ ସୁଶାସକ । ଏଣୁ ଅଶୋକ-ସ୍ତମ୍ଭକୁ ଭାରତ ସରକାର ରାଷ୍ଟ୍ରୀୟ ସଙ୍କେତ ରୂପେ ଗ୍ରହଣ କରିଥିବା ଯଥାର୍ଥ ବୋଲି ମଧ୍ୟ ଅଧ୍ୟାପକ ବାଶମ ଦୃଢ଼ମତ ବ୍ୟକ୍ତ କରିଛନ୍ତି । ଅଶୋକ ସମୁଦାୟ ଚାଳିଶବର୍ଷ (ଖ୍ରୀ. ପୂ. ୨୭୩ରୁ ୨୩୨) ରାଜତ୍ୱ କରିଥିବା ଜଣାଯାଏ ।

## ମୌର୍ଯ୍ୟବଂଶର କ୍ରମାବନ୍ନତି

ଅଶୋକଙ୍କ ପରେ ମୌର୍ଯ୍ୟ ରାଜବଂଶର ଅଧଃପତନ ଆରମ୍ଭ ହେଲା ବୋଲି କହିଲେ ଚଳେ । ଅଶୋକଙ୍କ ତିରୋଧାନ ପରେ କିଛିକାଳ ଲାଗି ତାଙ୍କ ପୁତ୍ର ଶାସନ ଦାୟିତ୍ୱ ଗ୍ରହଣ କରିଥିବା ଜଣାଯାଏ । ତେବେ ଅଶୋକଙ୍କ ପରବର୍ତ୍ତୀ ସମୟର ଇତିବୃତ୍ତ ସମ୍ପର୍କରେ ସେଭଳି କୌଣସି ପ୍ରାମାଣିକ ଗ୍ରନ୍ଥ ନାହିଁ । ତେଣୁ ଏହି ସମୟର ତଥ୍ୟାନୁଧାନ ଲାଗି ବିଭିନ୍ନ ପୁରାଣ ଓ ଧର୍ମଗ୍ରନ୍ଥାଦି ଉପରେ ହିଁ ନିର୍ଭର କରାଯାଇଥାଏ । ଏଣୁ ଐତିହାସିକମାନେ ମୌର୍ଯ୍ୟଯୁଗର

---

* The wonder that was India ପୁସ୍ତକର ୫୮ ପୃଷ୍ଠା ଦ୍ରଷ୍ଟବ୍ୟ ।

ଅବସାନଠାରୁ ଗୁପ୍ତ ରାଜବଂଶର ଅଭ୍ୟୁଦୟ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ ଅର୍ଦ୍ଧ ସହସ୍ରାବ୍ଦ (ଖ୍ରୀ: ପୂ: ୧୮୭ଠାରୁ ଖ୍ରୀ: ୩୨୦) କାଳକୁ 'ପୌରାଣିକ ଯୁଗ' ଆଖ୍ୟା ଦେଇ-ଛନ୍ତି [ଏହି ବିଷୟରେ ପରବର୍ତ୍ତୀ ପର୍ଯ୍ୟାୟରେ ଆଲୋଚନା କରାଯାଉଛି ]।

ବିଭିନ୍ନ ପୌରାଣିକ ସୂତ୍ରରୁ ଜଣାଯାଏ ଯେ, ଅଶୋକଙ୍କ ପରେ ମୌର୍ଯ୍ୟ ସାମ୍ରାଜ୍ୟ ତାଂକ ପୁତ୍ରମାନଂକ ମଧ୍ୟରେ ଭାଗ ଭାଗ ହୋଇଯାଇଥିଲା । ପାଟଳି-ପୁତ୍ର ଓ ଉଜ୍ଜୟିନୀରେ କୁନାଳ ରାଜତ୍ୱ କରିଥିଲେ ଏବଂ କାଶ୍ମୀର ଉପତ୍ୟକା ଜଲୌକଙ୍କ ଭାଗରେ ପଡିଥିଲା । କୁନାଳଂକ ପରେ ମଧ୍ୟ ତାଂକ ପୁତ୍ରମାନେ ପିତାଂକ ସାମ୍ରାଜ୍ୟକୁ ଭାଗ ଭାଗ କରିଦେଇଥିଲେ । ସେମାନଂକ ମଧ୍ୟରେ ବନ୍ଧୁପାଳିତଂକ ନାମ ଉଲ୍ଲେଖଯୋଗ୍ୟ । କିନ୍ତୁ କୁନାଳଂକ ପରେ ତାଂକ ପୁତ୍ର ସଂପ୍ରତି ପାଟଳିପୁତ୍ର ଓ ଉଜ୍ଜୟିନୀରେ ରାଜତ୍ୱ କରିଥିଲେ ବୋଲି ଭାଗବତରେ ଉଲ୍ଲେଖ ଥିଲେ ମଧ୍ୟ ତାହା ଆପାତତଃ ଗ୍ରହଣୀୟ ନୁହେଁ; କାରଣ କୁନାଳଂକ ପରେ ଓ ସଂପ୍ରତିଂକ ପୂର୍ବରୁ ରାଜା ଦଶରଥଂକ ସମେତ ଏକାଧିକ ରାଜା ସେଠାରେ ରାଜତ୍ୱ କରୁଥିଲେ ବୋଲି ଅନ୍ୟାନ୍ୟ ପୁରାଣରେ ବର୍ଣ୍ଣିତ ଅଛି । ପୁଣି ବିହାର ପ୍ରଦେଶର ନାଗାର୍ଜ୍ଜୁନ ପାହାଡ଼ରୁ ଆବିଷ୍କୃତ ହୋଇଥିବା ରାଜା ଦଶରଥଂକର ତିନୋଟି ଶିଳାଲେଖରୁ ପ୍ରମାଣିତ ହୁଏ ଯେ, ସେ ନିଶ୍ଚୟ ଜଣେ ଐତିହାସିକ ବ୍ୟକ୍ତି ଥିଲେ । ରାଜା ଦଶରଥଂକ ସମ୍ବନ୍ଧରେ ଐତିହାସିକ ପ୍ରମାଣ ରହିଥିଲାବେଳେ ତାଂକ ପରେ ଭରତ ଓ ରାମଚନ୍ଦ୍ର ଅଯୋଧ୍ୟାରେ ରାଜତ୍ୱ କରିଥିଲେ ବୋଲି ରାମାୟଣରେ ଉଲ୍ଲେଖ ଥିବା ତଥ୍ୟକୁ ଅସ୍ୱୀକାର କରାଯାଇନପାରେ । ତେଣୁ ସଂପ୍ରତି କୁଣ (ଦଶରଥଂକ ପୌତ୍ର)ଙ୍କ ପରେ ରାଜତ୍ୱ କରିଥିବେ; ନତୁବା ତା ପୂର୍ବରୁ ଦଶରଥଂକ ସମୟରେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ରାଜ୍ୟର ଶାସନ ଭାର ଗ୍ରହଣ କରି-ଥିବେ ବୋଲି ଅନୁମାନ କରାଯାଇପାରେ ।

ତେବେ, ସଂପ୍ରତିଂକ ପରେ କିଛିକାଳ ଶାଳିଶୂକ ନାମକ ଜଣେ ରାଜା ରାଜତ୍ୱ କରିଥିବା କଥା 'ଗାର୍ଗୀସଂହିତା'ରୁ ଜଣାଯାଏ । ସେ ଏଭଳି ଦୁର୍ଦ୍ଦାନ୍ତ ଥିଲେ ଯେ ତାଙ୍କୁ ଅନେକେ 'ଅସୁର ରାଜା' ରୂପେ ଅଭିହିତ କରନ୍ତି । ଶାଳି-ଶୂକଙ୍କ ପରେ ଦେବବର୍ମା, ଶତାଧନୁ ଓ ବୃହଦ୍ରଥ ଯଥାକ୍ରମେ ରାଜଗାଦି ଆରୋହଣ କରିଥିଲେ । ପରେ ବୃହଦ୍ରଥଂକର ସେନାପତି ପୁଷ୍ପମିତ୍ର ତାଙ୍କୁ କ୍ଷମତାଚ୍ୟୁତ କରି ନିଜେ ପ୍ରଭୁତ୍ୱ ବିସ୍ତାର କରିଥିଲେ ଏବଂ ସେ ଶୁଙ୍ଗବଂଶର

ପ୍ରତିଷ୍ଠାତା ଥିଲେ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀର ଶେଷ ତଥା ଦ୍ୱିତୀୟ ଶତାବ୍ଦୀର ଆଦ୍ୟଭାଗରେ କାବୁଲ ଉପତ୍ୟକାରେ ସୁଭାଗସେନା ନାମକ ଜଣେ ମୌର୍ଯ୍ୟରାଜବଂଶାବତଂଶ ନଥିବା ବ୍ୟକ୍ତି ରାଜତ୍ୱ କରୁଥିବା ଜଣାଯାଏ । ସୁତରାଂ ସେତେବେଳକୁ ମୌର୍ଯ୍ୟବଂଶର ପତନ ସ୍ପଷ୍ଟ ପ୍ରତିଭାତ ହୋଇଯାଇଥିଲା । ଖ୍ରୀ: ପୂ: ୩୨୪ରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ସିଂହାସନାରୋହଣ କରିବାଠାରୁ ଖ୍ରୀ: ପୂ: ୧୮୭ରେ ପୁଷ୍ପମିତ୍ର କ୍ଷମତାକୁ ଆସିବା ପର୍ଯ୍ୟନ୍ତ ଏହି ମଧ୍ୟବର୍ତ୍ତୀ ୧୩୭ବର୍ଷ ଭିତରେ ଅନ୍ୟୂନ ନ' ଜଣ (କେତେକଙ୍କ ମତରେ ଦଶ ଜଣ) ମୌର୍ଯ୍ୟବଂଶୀୟ ନରପତି ରାଜତ୍ୱ କରିଥିବା ଜଣାଯାଏ ।

ମୌର୍ଯ୍ୟବଂଶର ପତନ ଲାଗି କେତେକ ବ୍ରାହ୍ମଣ ସମାଜକୁ ଦାୟୀ କରନ୍ତି । ତାଂକ ମତରେ, ଅଶୋକଙ୍କ ବୌଦ୍ଧଧର୍ମ ପ୍ରଚାର ହିନ୍ଦୁଧର୍ମ ଉପରେ ଆଞ୍ଚ ଆଣିବାରୁ ହିନ୍ଦୁ ବ୍ରାହ୍ମଣମାନେ ମୌର୍ଯ୍ୟବଂଶର ପତନ୍ ଲାଗି ଗୁପ୍ତ ଉଦ୍ୟମ କରିଥିଲେ । କିନ୍ତୁ ଏଭଳି ଅଭିଯୋଗମୂଳକ ଉକ୍ତିର କୌଣସି ଐତିହାସିକ ପ୍ରମାଣ ନାହିଁ; କିମ୍ବା ଅଶୋକଙ୍କ ପରେ କେବେ ବ୍ରାହ୍ମଣସମାଜ ମୌର୍ଯ୍ୟଶାସନ ବିରୋଧରେ ହିଂସାନ୍ଦୋଳନ କରିଥିବା ଜଣାଯାଏନାହିଁ । ତେବେ ମୌର୍ଯ୍ୟ ରାଜବଂଶର ପତନ ନିମନ୍ତେ ଅଶୋକଙ୍କ ଶାନ୍ତିନୀତି ଯେ ବହୁପରି-ମାଣରେ ଦାୟୀ, ଏହା ସର୍ବଜନସ୍ୱୀକୃତ । କାରଣ ତାହା ଫଳରେ ସେନାବାହିନୀ କ୍ରମେ ନିଷ୍କ୍ରିୟ ହୋଇ ପଡ଼ିଥିଲେ ଏବଂ ରାଜାଂକ ପ୍ରତି ତାଂକର ଅନୁରକ୍ତି ମଧ୍ୟ ହ୍ରାସ ପାଇଥିଲା । ସେଥିଯୋଗୁଁ ସେଲ୍ୟୁକସ୍‌ଙ୍କ ପୌତ୍ର ଏଣ୍ଟିଓକସ୍ ତୃତୀୟ (ଖ୍ରୀ: ପୂ: ୨୨୩-୧୮୭) ପାଟଳିପୁତ୍ର ପର୍ଯ୍ୟନ୍ତ ପଶିଆସି ସୁଭାଗସେନାଂକଠାରୁ ବହୁ ହସ୍ତୀ ନେଇ ଫେରିଥିଲେ ଏବଂ ସେନାପତି ପୁଷ୍ପମିତ୍ର ରାଜା ବୃହଦ୍ରଥଙ୍କ ବିରୋଧରେ ସଂଗ୍ରାମ ରଚନାକରି ରାଜକ୍ଷମତା ହାସଲ କରି ନେଇଥିଲେ ।

## ମୌର୍ଯ୍ୟ ଯୁଗର ମୂଲ୍ୟାୟନ

ଭାରତୀୟ ଇତିହାସରେ ମୌର୍ଯ୍ୟ ଯୁଗର ପ୍ରାଧାନ୍ୟ ଅବିସମ୍ବାଦିତ, କାରଣ, ଏହି ସମୟରେ ପ୍ରଥମ ଥର ପାଇଁ ଉତ୍ତରରେ ହିନ୍ଦୁକୁଶଠାରୁ ଆରମ୍ଭ କରି ଦକ୍ଷିଣରେ କୃଷ୍ଣା ଓ ଗୋଦାବରୀ ପର୍ଯ୍ୟନ୍ତ ବିଶାଳ ସାମ୍ରାଜ୍ୟର ପ୍ରତିଷ୍ଠା ସମ୍ଭବ ହୋଇଥିଲା ଏବଂ ରାଜାମାନେ କେବଳ ପ୍ରଜାମାନଙ୍କର ଅଧୀଶ୍ୱରରୂପେ ଗୃହୀତ ନହୋଇ ଦେବତାମାନଙ୍କର ପ୍ରତିନିଧି ରୂପେ ପୂଜିତ ହୋଇଥିଲେ ।

ଏହି ଯୁଗର ଶ୍ରେଷ୍ଠ ସମ୍ରାଟ ଅଶୋକ 'ଦେବାନାଂ ପ୍ରିୟ ପ୍ରିୟଦର୍ଶୀ, ନାମରେ ଐତିହାସିକ ପ୍ରସିଦ୍ଧି ଲାଭ କରିଥିଲେ । ପ୍ରକାରାନ୍ତରେ କହିବାକୁ ଗଲେ, ଏହି ଯୁଗରେ ହିଁ ପ୍ରଥମଥର ପାଇଁ ଭାରତୀୟ ଇତିହାସରେ 'ଦୈବୀ ରାଜତ୍ୱ' (Divine Kingship) ଧାରଣାର ଅଭ୍ୟୁଦୟ ଘଟିଥିଲା । ଏତଦ୍‌ବ୍ୟତୀତ ଏହି ଯୁଗରେ ପ୍ରଥମଥର ପାଇଁ ବିଶ୍ୱମୈତ୍ରୀ ଚିନ୍ତାଧାରାର ବିକାଶ ଘଟିଥିଲା ଏବଂ ଯୁଦ୍ଧ, ରାଜ୍ୟାକ୍ରମଣ ଓ ରକ୍ତପାତର ନିନ୍ଦାଗାନ କରାଯାଇଥିଲା ।

ମୌର୍ଯ୍ୟଯୁଗରେ ରାଜତାନ୍ତ୍ରିକ ଶାସନ ପ୍ରଥା ବଳବତ୍ତର ରହିଥିଲେ ସୁଦ୍ଧା କେତେକ ସ୍ଥାନରେ ସ୍ୱାୟତ୍ତଶାସନ ପ୍ରଥା ପ୍ରଚଳିତ ଥିଲା ଏବଂ ସେଠାରେ ଲୋକନିର୍ବାଚିତ ମାଜିଷ୍ଟ୍ରେଟମାନେ ଶାସନକାର୍ଯ୍ୟ ନିର୍ବାହ କରୁଥିଲେ । ଏହିଭଳି କେତେକ ସ୍ୱାୟତ୍ତଶାସିତ ରାଜ୍ୟ ଗଣରାଜ୍ୟ ବା ସଙ୍ଘରାଜ୍ୟ ନାମରେ ପରିଚିତ ଥିବା ଜଣାଯାଏ । ତେବେ ମୌର୍ଯ୍ୟଯୁଗୀୟ ରାଜତନ୍ତ୍ରର ସ୍ୱାତନ୍ତ୍ର୍ୟ ଏହି ଯେ, ସେତେବେଳେ ପ୍ରଥମଥର ପାଇଁ ବିଭିନ୍ନ ଅଞ୍ଚଳର ରାଜାମାନଙ୍କ ମଧ୍ୟରେ ବନ୍ଧୁତ୍ୱପୂର୍ଣ୍ଣ ସମ୍ବନ୍ଧ ସ୍ଥାପିତ ହୋଇଥିଲା । ଏପରିକି କେତେକ ଅଞ୍ଚଳରେ ଦ୍ୱୈତଶାସନପ୍ରଥା (Diarchy ପ୍ରଚଳିତ ଥିଲା ।

ବିଭିନ୍ନ ଶିଳାଲେଖ, ମେଗାସ୍ଥିନିସ୍‌ଙ୍କ ରାଜଶାସ୍ତ୍ର, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ଓ ବିବିଧ ପୁରାଣ ଗ୍ରନ୍ଥରୁ ତାତ୍କାଳୀନ ଶାସନ ପ୍ରଣାଳୀ ସମ୍ବନ୍ଧରେ ସମ୍ୟକ ଧାରଣା ମିଳେ । ସେତେବେଳେ ରାଜାମାନଂକର ଅଖଣ୍ଡ କ୍ଷମତା ରହିଥିଲା; ତଥାପି ସେମାନେ ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କରୁଥିଲେ । ତେଣୁ ସେହି ସମୟରେ ହିଁ ପ୍ରଥମେ ଭାରତରେ ପିତୃତୁଲ୍ୟ ଶାସନ (Patriarchic government)ର ଅବଧାରଣା ଜନ୍ମିଥିଲା ।

ତତ୍କାଳୀନ ରାଜନ୍ୟଗଣ ମନ୍ତ୍ରୀ, ପାରିଷଦ, ସେନାପତି, ଅଧ୍ୟକ୍ଷ, ଦୂତ, ପୁରୋହିତ, ଲିପିକାର, ରାଜୁକ (ଜନପଦ ଅଧିକାରୀ ), ମହାମାତ୍ର (ନଗରପାଳ) ପ୍ରମୁଖଙ୍କ ସହଯୋଗରେ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ନଗର ଓ ପ୍ରଦେଶଗୁଡ଼ିକରେ ସ୍ୱତନ୍ତ୍ର ବିଚାରପତି ନିଯୁକ୍ତ ଥିଲେ ମଧ୍ୟ ରାଜା ଥିଲେ ସର୍ବୋଚ୍ଚ ନ୍ୟାୟ ବିଚାରକ । ସଂଗ୍ରାମ ସମୟରେ ସେମାନେ ନିଜେ ରଣକ୍ଷେତ୍ରରେ ଉପସ୍ଥିତ ରହି ଯୁଦ୍ଧ ପରିଚାଳନା କରୁଥିବା ମଧ୍ୟ ଜଣାଯାଏ । ତେବେ ଅଶୋକଙ୍କ ରାଜତ୍ୱର ଦ୍ୱିତୀୟାର୍ଦ୍ଧରେ ସେ ଯୁଦ୍ଧ, ଏପରିକି ଶିକାରକୁ ମଧ୍ୟରେ ନିଷେଧ କରିଦେଇଥିଲେ ।

'ଭାଗ' ଓ 'ବଳି' ତାତ୍କାଳିକ ରାଜସ୍ୱର ମୁଖ୍ୟ ଅଙ୍ଗ ଥିଲା । ସାଧାରଣତଃ ଫସଲ ଆଦାୟର ଏକଷଷ୍ଠାଂଶ ରାଜସ୍ୱ ରୂପେ ଗୃହୀତ ହେଉଥିଲା । (ଅବଶ୍ୟ ଆବଶ୍ୟକ ସ୍ଥଳେ ରାଜସ୍ୱ ପରିମାଣ ଏକଚତୁର୍ଥାଂଶକୁ ବୃଦ୍ଧି ବା ଏକ ଅଷ୍ଟମାଂଶକୁ ହ୍ରାସ କରାଯାଉଥିଲା ) । 'ବଳି' ଏକ ସ୍ୱତନ୍ତ୍ର ଶୁଳ୍କ; ତାହା ରାଜକର୍ମଚାରୀମାନଙ୍କ ଦରମା ଭତ୍ତା ବାବଦ ବ୍ୟୟ କମାଇବା ଉଦ୍ଦେଶ୍ୟରେ କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଧାର୍ଯ୍ୟ କରାଯାଉଥିଲା । ତେବେ ସେତେବେଳେ ପ୍ରଜାମାନଙ୍କୁ ଭୂସମ୍ପତ୍ତି ଅଧିକାର ଦିଆଯାଉ ନଥିଲା; ସମସ୍ତ ଭୂସମ୍ପତ୍ତି ଥିଲା ରାଜାଧୀନ ।

ମୌର୍ଯ୍ୟଯୁଗର ଅନ୍ୟ ଏକ ବିଶେଷତ୍ୱ ଏହି ଯେ, ଯେତେବେଳେ ସର୍ବ-ପ୍ରଥମେ ଜନମଙ୍ଗଳ ରାଷ୍ଟ୍ର ପରିକଳ୍ପନାର ଭିତ୍ତି ସ୍ଥାପିତ ହୋଇଥିଲା ଏବଂ ରାସ୍ତା ନିର୍ମାଣ, କୂପ କେନାଲ ଖନନ, ବୃକ୍ଷ ରୋପଣ, ଚିକିତ୍ସାଳୟ ସ୍ଥାପନ, ବନଜଙ୍ଗଲରୁ ହିଂସ୍ରଜନ୍ତୁ ନିରାକରଣ ଇତ୍ୟାଦି ଲୋକହିତକର କାର୍ଯ୍ୟ ଉପରେ ଗୁରୁତ୍ୱ ଆରୋପ କରାଯାଉଥିଲା । ଏହା ବ୍ୟତୀତ, ଏହି ଯୁଗରେ ପ୍ରଥମଥର ପାଇଁ ରାଜନୈତିକ ଏକାଗ୍ରତା ସମ୍ଭବ ହୋଇ ପାରିଥିଲା ଏବଂ ଅନ୍ତଃରାଜ୍ୟ ସଂପର୍କ ପ୍ରତିଷ୍ଠା କ୍ଷେତ୍ରରେ ଏକ ନୂତନ ଦିଗ୍‌ଦର୍ଶନ ମିଳିଥିଲା । ଏହା ପୂର୍ବରୁ ହିନ୍ଦୁ-ଭାରତର ସମ୍ରାଟଗଣ ଯୁଦ୍ଧକୁ ଏକ ରାଜନୈତିକ ଆବଶ୍ୟକତା ରୂପେ ଗ୍ରହଣ କରି ସାମରିକ ଶକ୍ତିଉପରେ କେବଳ ଆସ୍ଥା ସ୍ଥାପନ କରୁଥିଲେ; କିନ୍ତୁ ମୌର୍ଯ୍ୟ ସମ୍ରାଟ ଅଶୋକ ସେହି ବିଶ୍ୱାସ ମୂଳରେ କୁଠାରାଘାତ କରି ଏକ ମହାନ୍ ମାନବୀୟ ପରଂପରା ଉନ୍ମୋଚନ କରିଥିଲେ ।

ସର୍ବୋପରି, କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ମଧ୍ୟ ମୌର୍ଯ୍ୟଯୁଗ ବିଶେଷ ଅଗ୍ରଗାମୀ ହୋଇପାରିଥିଲା । ମହେଞ୍ଜୋଦାରୋ ଓ ହରପ୍ପାର ଶିଳ୍ପ ଚାତୁର୍ଯ୍ୟକୁ ବାଦ ଦେଲେ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ରାଜତ୍ୱକାଳ ପର୍ଯ୍ୟନ୍ତ ଭାରତୀୟ ଇତିହାସରେ ସେଭଳି ଉଲ୍ଲେଖଯୋଗ୍ୟ କଳାକୃତିର ନିଦର୍ଶନ ଦେଖିବାକୁ ମିଳେନାହିଁ । ଅଶୋକଙ୍କ ସମୟରେ ସାଞ୍ଚି, ସାରନାଥ ପ୍ରଭୃତି ସ୍ଥାନରେ ନିର୍ମିତ ସ୍ତମ୍ଭ ଓ ସ୍ତୂପଗୁଡ଼ିକରୁ ତତ୍କାଳୀନ ଭାରତୀୟ ଶିଳ୍ପ ନୈପୁଣ୍ୟ ଓ କଳା-କୁଶଳତାର ଜୀବନ୍ତ ପ୍ରତିଛବି ଦୃଷ୍ଟିଗୋଚର ହୁଏ । ସାରନାଥର କାରୁକାର୍ଯ୍ୟ ସମ୍ପର୍କରେ ମତ ବ୍ୟକ୍ତ କରିବାକୁ ଯାଇ ବିଖ୍ୟାତ ଐତିହାସିକ ଡ଼କ୍ଟର ଭିନ୍‌ସେଣ୍ଟ ସ୍ମିଥ୍ ଲେଖିଛନ୍ତି—

"It would be difficult to find in any country an example of ancient animal sculpture superior or even equal to this beautiful work of art, which successfuley combines realistic modelling with ideal dignity and is finished in every detail with perfect accuracy."*

ଅର୍ଥାତ୍, ବାସ୍ତବ ପ୍ରତିରୂପ ସହିତ ଆଦର୍ଶ ମହାନୀୟତାର ସାର୍ଥକ ସମନ୍ୱୟ ଘଟିଥିବା ଏବଂ ଠିକଣାଠି ଓ ନିଖୁଣ ଭାବରେ ସମୁତ୍ତୀର୍ଣ୍ଣ ହୋଇଥିବା ଏହି ପ୍ରାଚୀନ ପଶୁକ୍ଷୋଦନ କମ୍ବା ଏହି ମନୋରମ କଳାକୃତିର ସମକକ୍ଷ ହେଲଭଳି ଏକ ଦୃଷ୍ଟାନ୍ତ ଅନ୍ୟ କୌଣସି ଦେଶରେ ପାଇବା ଦୁଷ୍କର ।

ବଶିଷ୍ଟ ଗ୍ରୀକ୍ ଐତିହାସିକମାନେ ମଧ୍ୟ ଭାରତର ମୌର୍ଯ୍ୟଯୁଗୀୟ କଳା-ସ୍ଥାପତ୍ୟକୁ 'ସମଗ୍ର ପୃଥିବୀରେ ଉତ୍କୃଷ୍ଟ ଓ ଶ୍ରେଷ୍ଠ' (The finest and grandest in the whole world) †କଳାରୂପେ ଗ୍ରହଣ କରଛନ୍ତି । ସୁତରାଂ ମୌର୍ଯ୍ୟ କଳା କଳା-ଜଗତରେ ଏକ ସ୍ୱତନ୍ତ୍ର ଇତିହାସ ସୃଷ୍ଟି କରିଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

---

* ଡକ୍ଟର ଭିନସେଣ୍ଟ ସ୍ମିଥ୍‌ଙ୍କର 'History of Fine Art in India and Ceylon' ନାମକ ଗ୍ରନ୍ଥରୁ ଗୃହୀତ ।

† Dr. R. C. Majumdarଙ୍କର' Monuments of Ancient India' ନାମକ ପ୍ରବନ୍ଧରୁ ଉଦ୍ଧୃତ ।

## ସପ୍ତମ ପର୍ଯ୍ୟାୟ

# ପୌରାଣିକ ଯୁଗ

ମୌର୍ଯ୍ୟ ରାଜବଂଶର ପତନଠାରୁ ଗୁପ୍ତଯୁଗର ପ୍ରଭାତ କାଳ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ ପ୍ରାୟ ପାଞ୍ଚଶତ ବର୍ଷ କାଳ ଭାରତରେ ରାଜନୈତିକ ଏକତା ରକ୍ଷା ହୋଇ ପାରି ନଥିଲା । ସେହି କାଳ ମଧ୍ୟରେ କୌଣସି ଜଣେ ସମ୍ରାଟ ବା କୌଣସି ଗୋଟିଏ ରାଜବଂଶ ସର୍ବଭାରତୀୟ ସ୍ତରରେ ସାର୍ବଭୌମ କ୍ଷମତା ବିସ୍ତାର କରିପାରି ନଥିଲେ । ଭାରତର ଉତ୍ତର-ପଶ୍ଚିମ ପଟୁ ବିଦେଶୀ ଶକ, ପହ୍ଲବ ଓ କୁଶାନମାନେ ପଶି ଆସି ଆଫଗାନିସ୍ଥାନ, କାବୁଲ ଉପତ୍ୟକା, ଗାନ୍ଧାର ଓ ପଞ୍ଜାବର ଉତ୍ତରାଞ୍ଚଳ ଅଧିକାର କରିଥିଲେ । ଦେଶର ଉତ୍ତରାଞ୍ଚଳରେ ମଗଧଠାରୁ ପଞ୍ଜାବର ଜଳନ୍ଧର ଓ ସିଆଲକୋଟ ପର୍ଯ୍ୟନ୍ତ ଶୁଙ୍ଗ ଓ କାଣ୍ୱ ବଂଶୀୟ ରାଜାମାନେ ରାଜତ୍ୱ କରିଥିଲେ । ସେହିପରି ଦକ୍ଷିଣ ଭାରତରେ ସାତବାହନମାନେ ଶାସନ ଦାୟିତ୍ୱ ନେଇଥିଲେ ।

ଏହି ସମୟର ଇତିବୃତ୍ତ ସମ୍ବନ୍ଧରେ ଅବଗତ ହେବା ନିମନ୍ତେ ମୁଖ୍ୟତଃ ପୌରାଣିକ ତଥ୍ୟ ଉପରେ ହିଁ ନିର୍ଭର କରିବାକୁ ହୋଇଥାଏ; କାରଣ କେତେକ ଶିଳାଲେଖ ଓ ମୁଦ୍ରାବଶେଷ ବ୍ୟତୀତ ଅନ୍ୟ କୌଣସି ଐତିହାସିକ ଉପାଦାନ ନାହିଁ । ତେଣୁ ଆଲୋଚ୍ୟ କାଳରେ ପରିମାର୍ଜିତ ହୋଇଥିବା କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ପରିପୂର୍ଣ୍ଣତା ଲାଭ କରିଥିବା ଦୁଇଟି ମହାନ୍ ପୁରାଣ ଗ୍ରନ୍ଥ ମହାଭାରତ ଓ ରାମାୟଣ ଏବଂ ମନୁସଂହିତା, ଯାଜ୍ଞବଲ୍କ୍ୟ ଓ ଉପନିଷଦାଦି ବିଭିନ୍ନ ଗ୍ରନ୍ଥର ସାହାଯ୍ୟରେ ତାହାଙ୍କର ଶାସନ, ରାଜନୀତି ଓ ସାମାଜିକ ଅବସ୍ଥା ବିଷୟରେ ଯତ୍କିଂଚିତ୍ ଆଲୋକପାତ କରାଯାଇପାରେ ।

### ଶୁଙ୍ଗ ବଂଶ

ମୌର୍ଯ୍ୟ ରାଜବଂଶର ଶେଷ ରାଜା ବୃହଦ୍ରଥଙ୍କ ସେନାପତି ପୁଷ୍ପମିତ୍ର ତାଙ୍କ ସେନାବାହିନୀ ସାହାଯ୍ୟରେ ସମ୍ରାଟଙ୍କୁ ଗାଦିଚ୍ୟୁତ କରି ଖ୍ରୀ:ପୂ: ୧୮୭ରେ

ସିଂହାସନାରୋହଣ କରିଥିଲେ ଏବଂ ସେ ହୋଇଥିଲେ ଶୁଙ୍ଗବଂଶର ପ୍ରତିଷ୍ଠାତା । ଶୁଙ୍ଗବଂଶୀୟ ରାଜାମାନେ ସାଧାରଣତଃ ଭରଦ୍ୱାଜଗୋତ୍ରୀ ବ୍ରାହ୍ମଣ ପରିବାର-ସମ୍ଭୂତ ଥିଲେ । ତେବେ ପୁଷ୍ପମିତ୍ର 'ବିମ୍ବିକ' ନାମକ ଏକ ପରିବାର ଅନ୍ତର୍ଗତ ଥିଲେ ବୋଲି କୁହାଯାଏ ।

ସେ ଯାହା ହେଉ, ପୁଷ୍ପମିତ୍ର ଦୀର୍ଘ ଛତିଶ ବର୍ଷ ଶାସନକରି ଖ୍ରୀ: ପୂ: ୧୫୧ରେ ପରଲୋକ ଯାତ୍ରା କଲା ପରେ ତାଙ୍କ ପୁତ୍ର ଅଗ୍ନିମିତ୍ର ରାଜପଦରେ ଭୂଷିତ ହୋଇଥିଲେ । ଏହାଙ୍କ ବିଷୟରେ ମହାକବି କାଳିଦାସ ତାଙ୍କର ବିଖ୍ୟାତ ନାଟକ 'ମାଳବିକାଗ୍ନିମିତ୍ରମ୍' ରଚନା କରି ଯାଇଛନ୍ତି । ଅଗ୍ନିମିତ୍ରଙ୍କ ପରେ ତାଙ୍କ ପୁତ୍ର ବସୁମିତ୍ର ଶାସନ କ୍ଷମତାକୁ ଆସିଥିଲେ । ତାଙ୍କ ରାଜତ୍ୱ କାଳରେ ସେ ବିଦେଶୀ ଆକ୍ରମଣ ପ୍ରତିହତ କରିବାକୁ ଯାଇ ସିନ୍ଧୁନଦୀକୂଳରେ ଯବନ (ଗ୍ରୀକ୍)ମାନଙ୍କୁ ଯୁଦ୍ଧରେ ପରାସ୍ତ କରିଥିବା ଜଣାଯାଏ ।

କିନ୍ତୁ ବସୁମିତ୍ରଙ୍କ ପରବର୍ତ୍ତୀ ଶୁଙ୍ଗବଂଶୀୟ ରାଜାମାନଙ୍କ ସମ୍ବନ୍ଧରେ କୌଣସି ସୂତ୍ରରୁ କିଛି ତଥ୍ୟ ମିଳେ ନାହିଁ । କେବଳ ଖ୍ରୀ:ପୂ: ୭୫ ବେଳକୁ ସେବକ ପରିବାରସମ୍ଭୂତ କାଣ୍ୱବଂଶୀୟ ରାଜା ବାସୁଦେବ ରାଜପଦରେ ଅଭିଷିକ୍ତ ହୋଇଥିବା ଜଣାଯାଏ । ତେବେ ଖ୍ରୀ:ପୂ: ୩୦ରେ ଦାକ୍ଷିଣାତ୍ୟର ସାତବାହନ ରାଜାମାନେ ପ୍ରଭାବ ବିସ୍ତାର କଲା ପରଠାରୁ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀର ଶେଷ ପାଦରେ ଶକମାନଙ୍କ ଆଗମନ ପର୍ଯ୍ୟନ୍ତ 'ମିତ୍ର' ସଂଜ୍ଞାଧାରୀ ଶୁଙ୍ଗ ଓ କାଣ୍ୱବଂଶୀୟ ରାଜାମାନେ କେବଳ ମଗଧ ଓ ଗଙ୍ଗା-ଯମୁନା ଉପକୂଳ-ବର୍ତ୍ତୀ କେତେକ ରାଜ୍ୟରେ ରାଜତ୍ୱ କରୁଥିଲେ ବୋଲି ଅନୁମାନ କରାଯାଏ ।

## ସାତ ବାହନ

ଦକ୍ଷିଣ ଭାରତର କୃଷ୍ଣା ଓ ଗୋଦାବରୀ ଉପକୂଳବର୍ତ୍ତୀ ଅଞ୍ଚଳର ଜଣେ ତୈଲଙ୍ଗୀ ଆନ୍ଧ୍ର * ନରେଶ ଶୁଙ୍ଗ ଓ କାଣ୍ୱ ରାଜତ୍ୱର ଅବସାନ ଘଟାଇଥିବା କଥା ପୁରାଣରେ ଉଲ୍ଲେଖ ଅଛି । କେତେକ ଭାରତୀୟ ଲେଖକଙ୍କ ରଚୟିତା ଏହି ସାତବାହନ ବଂଶୀୟ ଜନୈକ ରାଜା ଶାଳିବାହନଙ୍କର

* ସେହି କାଳରେ କୃଷ୍ଣା ଓ ଗୋଦାବରୀ ଉପକୂଳ ଅଞ୍ଚଳର ତେଲୁଗୁ ଭାଷାଭାଷୀ ଲୋକମାନଙ୍କୁ 'ଆନ୍ଧ୍ର' ବୋଲି କୁହାଯାଉଥିଲା । ଏହି ଅଞ୍ଚଳ ବର୍ତ୍ତମାନ ଆନ୍ଧ୍ର ପ୍ରଦେଶର ଅନ୍ତର୍ଗତ ।

ଗୁଣାବଳୀ କୀର୍ତ୍ତନ କରିବାକୁ ଯାଇ ବହୁକଳ୍ପ ହୋଇ ପଡ଼ିଛନ୍ତି । ତେବେ ସିମୁକ ନାମକ ଜଣେ ରାଜା ଏହି ସାତବାହନ ବଂଶର ପ୍ରତିଷ୍ଠାତା । କିନ୍ତୁ ତାଙ୍କ ସମୟରେ ଏହି ରାଜବଂଶର ପ୍ରାଧାନ୍ୟ ଉପଲବ୍ଧି ହୋଇ ନଥିଲା । ତାଙ୍କର ଉତ୍ତରାଧିକାରୀ ସାତକର୍ଣ୍ଣୀହିଁ ସାତବାହନ ବଂଶର ଗୌରବ ସାଧନ କରିଥିଲେ । ସେ ମରାଠୀ ରାଜାଙ୍କ ସହ ବନ୍ଧୁତା ସ୍ଥାପନକରି ଏବଂ ଅଶ୍ୱମେଧଯଜ୍ଞର ଆବାହକ ହୋଇ ନିଜର ପ୍ରଭୁତ୍ୱ ବଜାୟ ରଖିଥିଲେ ।

କିନ୍ତୁ ଏହାଙ୍କ ସମସାମୟିକ କଳିଙ୍ଗାଧିପତି ଖାରବେଳ ସାତକର୍ଣ୍ଣୀଙ୍କ ମଗଧ ଆକ୍ରମଣର ପ୍ରତିରୋଧ କରିବା ସଙ୍ଗେ ସଙ୍ଗେ ତତ୍କାଳୀନ ମଗଧ ସମ୍ରାଟ ବୃହସ୍ପତି ମିତ୍ରଙ୍କୁ ପଦାନତ କରିଥିଲେ ଏବଂ ଗୋଦାବରୀ ସୀମା ପର୍ଯ୍ୟନ୍ତ ନିଜର କ୍ଷମତା ଅକ୍ଷୁର୍ଣ୍ଣ ରଖିଥିଲେ । ଅବଶ୍ୟ ଖାରବେଳଙ୍କ ପରେ ପରେ ତାଙ୍କ ସାମ୍ରାଜ୍ୟର ପତନ ଘଟିଥିଲା ।

ସାତକର୍ଣ୍ଣୀଙ୍କ ମୃତ୍ୟୁର ଅବ୍ୟବହିତ ପରେ ଶକମାନଙ୍କ ଆକ୍ରମଣ ଫଳରେ ସାତବାହନ ବଂଶର ପ୍ରାଧାନ୍ୟ ହ୍ରାସ ପାଇଥିଲା । କିନ୍ତୁ ସାତବାହନ ଅନ୍ୟ ଜଣେ ରାଜା ଗୌତମୀପୁତ୍ର କ୍ଷମତାକୁ ଆସିଲା ପରେ ସେ ପୁଣି ହୃତ ଗୌରବ ଫେରାଇ ଆଣିଥିଲେ । ସେ ଶକ, ଯବନ ଓ ପହ୍ଲବମାନଙ୍କୁ ଦମନ କରି ଉତ୍ତରରେ ମାଳବଠାରୁ ଦକ୍ଷିଣରେ ମାନ୍ଦ୍ରାଜ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିବା ଜଣାଯାଏ । ତାଙ୍କ ପୁତ୍ର ବଶିଷ୍ଠୀପୁତ୍ର ପୁଲୁମାୟୀ ଗୋଦାବରୀ ନଦୀ ଉପକୂଳବର୍ତ୍ତୀ ପ୍ରତିଷ୍ଠାନ ସହରରେ (ବର୍ତ୍ତମାନ ଔରଙ୍ଗାବାଦ ଅନ୍ତର୍ଗତ) ରାଜତ୍ୱ କରିଥିଲେ ଏବଂ ତାଙ୍କ ଅମଳରେ ବୈଜୟନ୍ତୀ (କାନାଡ଼ା ଭାଷୀ ଅଞ୍ଚଳ) ଏବଂ ଅମରାବତୀ (ଗୁଣ୍ଟୁର ଜିଲା ଅନ୍ତର୍ଗତ) ସହର ପ୍ରତିପତ୍ତି ବିସ୍ତାର କରିଥିଲା । ଏହି ପୁଲୁମାୟୀଙ୍କ ପରେ ତାଙ୍କ ଜ୍ଞାତି ସୋଦର ବଶିଷ୍ଠୀପୁତ୍ର ସାତକର୍ଣ୍ଣୀ ସମସାମୟିକ ଶକ ରାଜପ୍ରତିନିଧି (କ୍ଷେତ୍ରପା) ରୁଦ୍ରଦାମନଙ୍କ କନ୍ୟାକୁ ବିବାହ କରିଥିଲେ । ଏହା ପରେ ଯଜ୍ଞସାତକର୍ଣ୍ଣୀଙ୍କ ଅମଳରେ ପୁଣି ସାତବାହନ ବଂଶର ସୁନାମ ବୃଦ୍ଧି ପ୍ରାପ୍ତ ହୋଇଥିଲା । ତେବେ ଯଜ୍ଞସାତକର୍ଣ୍ଣୀ ଥିଲେ ସାତବାହନ ବଂଶର ଶେଷ ନରପତି ଏବଂ ତାଙ୍କ ପରେ ଉକ୍ତ ସାମ୍ରାଜ୍ୟର ମୂଳୋତ୍ପାଟନ ଘଟିଥିଲା । ଖ୍ରୀ:ପୂ: ୩୦ ଠାରୁ ଖ୍ରୀଷ୍ଟପର ତୃତୀୟ ଶତାବ୍ଦୀର ମଧ୍ୟବର୍ତ୍ତୀ କାଳ ପର୍ଯ୍ୟନ୍ତ ପ୍ରାୟ ୩୦୦ ବର୍ଷ ମଧ୍ୟରେ ସାତବାହନ ବଂଶର ଅନ୍ୟୁନ ୧୯ ଜଣ ରାଜା ଶାସନ କରିଥିବା ଜଣାଯାଏ ।

## ଗ୍ରୀକ୍ ଆକ୍ରମଣ

ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ପରେ ଭାରତରେ ରାଜନୈତିକ ଏକତା କ୍ଷୁର୍ଣ୍ଣ ହେବା ଫଳରେ ସିରିଆ ଓ ବାକ୍ଟ୍ରିଆ ଅଞ୍ଚଳରୁ ଗ୍ରୀକ୍‌ମାନେ ପୁଣି ଶକ୍ତି ସଂଚୟ କରି ପଞ୍ଜାବ ପଥେ ଭାରତରେ ପ୍ରବେଶ କରିଥିଲେ । ବାକ୍ଟ୍ରିଆ ସମ୍ରାଟ ଡ଼େମେଟ୍ରିଅସ୍ ଆଫଗାନିସ୍ଥାନ, ସିନ୍ଧୁପ୍ରଦେଶ ଓ ପଞ୍ଜାବ ସୀମାନ୍ତ ଅଞ୍ଚଳ ଦଖଲ କରିଥିଲେ ଏବଂ ତାଙ୍କ ପରେ ମେନାନ୍ଦର ସିଆଲକୋଟ ପର୍ଯ୍ୟନ୍ତ ମାଡ଼ି ଆସିଥିଲେ । ତେବେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ ପଞ୍ଜାବ ତଥା ଭାରତର ସୀମାନ୍ତ ଅଞ୍ଚଳରୁ ଗ୍ରୀକ୍ ଆଧିପତ୍ୟ ଦୂରୀଭୂତ ହୋଇ ଯାଇଥିଲା ଏବଂ ଶକ ପହ୍ଲବ ଓ କୁଶାନମାନେ କ୍ରମେ ତାଂକ ସ୍ଥାନ ଅଧିକାର କରି ନେଇଥିଲେ ।

ପ୍ରଥମ ଖ୍ରୀଷ୍ଟାବ୍ଦ ଆରମ୍ଭ ହେଲା ବେଳକୁ କୁଶାନମାନଙ୍କଦ୍ୱାରା ବିତାଡ଼ିତ ହୋଇ ଶକମାନେ କେନ୍ଦ୍ର ଏସିଆ ପରିତ୍ୟାଗ କରି ଦକ୍ଷିଣାଭିମୁଖରେ ଭାରତକୁ ପଶିଆସି ଆଫଗାନିସ୍ଥାନରେ ବସତି ସ୍ଥାପନ କରିଥିଲେ । ତାହା ପରେ 'ଶକସ୍ଥାନ' ନାମରେ ପରିଚିତ ହୋଇଥିଲା । କାଳକ୍ରମେ ସେମାନେ ସିନ୍ଧୁ ଉପତ୍ୟକା ଅଞ୍ଚଳକୁ ସୀମା ସଂପ୍ରସାରଣ କରି ପଶ୍ଚିମ ଭାରତରେ ଆଧିପତ୍ୟ ବିସ୍ତାର କରିଥିଲେ । ଖ୍ରୀଷ୍ଟପର ପ୍ରଥମ ଶତାବ୍ଦୀ ବେଳକୁ ଏହି ଅଞ୍ଚଳ ପହ୍ଲବମାନଙ୍କର ହସ୍ତଗତ ହୋଇଥିଲା ଏବଂ ସେତେବେଳେ ସେଠାରେ ମୋଗା (ବା ମାଉସ୍ ) ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ଏହାପରେ ଶକ ଓ ପହ୍ଲବମାନେ ଆଞ୍ଚଳିକ ଶାସକ ବା ରାଜପ୍ରତିନିଧି ନିଯୁକ୍ତ କରି ବିଭିନ୍ନ ପ୍ରଦେଶ ଶାସନ କରୁଥିଲେ । ସେହି ରାଜପ୍ରତିନିଧିମାନଙ୍କୁ 'କ୍ଷେତ୍ରପା' ବା 'ମହାକ୍ଷେତ୍ରପା' କୁହାଯାଉଥିଲା । ସାତବାହନ ରାଜବଂଶ ସହିତ ବୈବାହିକ ସଂପର୍କ ସ୍ଥାପନ କରିଥିବା ରୁଦ୍ରଦାମନ ଥିଲେ ଜଣେ ସ୍ୱନାମଧନ୍ୟ ମହାକ୍ଷେତ୍ରପା ।

ଶକ ଓ ପହ୍ଲବମାନଙ୍କ ଭିତରେ ଅବିରତ ଆଭ୍ୟନ୍ତରୀଣ ବିବାଦ ଲାଗି ରହିଥିଲା ଏବଂ କ୍ଷମତା ସଂଘର୍ଷର ବିରାମ ନଥିଲା । ଏହି ଦୁର୍ବଳତାର ସୁଯୋଗ ନେଇଥିଲେ ଚୀନା ସୀମାନ୍ତରୁ ବିତାଡ଼ିତ ହୋଇ କେନ୍ଦ୍ର ଏସିଆର ଅକ୍ସାସ୍ ଉପତ୍ୟକାରେ ବାସକରୁଥିବା କୁଶାନମାନେ । ସେମାନେ କଉ-ସିଉ-କଓ (କଡ଼ଫିସସ୍ ପ୍ରଥମ)ଙ୍କ ନେତୃତ୍ୱରେ ଖ୍ରୀଷ୍ଟାବ୍ଦ ୯୨ ବେଳକୁ କାବୁଲ ଅଞ୍ଚଳ ଅଧିକାର କରି ନେଇଥିଲେ । ତାଂକ ପରେ ୟେନ୍‌କାଓ-ଚେନ୍

( କଡ଼ଫିସସ୍ ଦ୍ୱିତୀୟ ) କ୍ଷମତାକୁ ଆସିଥିଲେ ଏବଂ ତାଙ୍କର ଉତ୍ତରାଧିକାରୀ କନିଷ୍କ କୁଶାନ ବଂଶର ଶ୍ରେଷ୍ଠ ରାଜାରୂପେ ବିବେଚିତ ହୋଇଥିଲେ ।

**କନିଷ୍କ**

କେତେକ ଐତିହାସିକଙ୍କ ମତରେ ଖ୍ରୀ: ୭୮ରେ ଯେଉଁ ଶକାବ୍ଦ ଆରମ୍ଭ ହୋଇଥିଲା, ତାହାର ଉଦ୍ୟୋକ୍ତା ଥିଲେ କନିଷ୍କ । କିନ୍ତୁ ଅନ୍ୟ କେତେକଙ୍କ ମତରେ ସାତବାହନ ବଂଶୀୟ ରାଜା ଶାଲିବାହନ ଏହି ଶକାବ୍ଦ ଆରମ୍ଭ କରିଥିଲେ । କେଉଁ ମତଟି ଠିକ୍ ତାହା ଧ୍ରୁବ ଭାବରେ କୁହାଯାଇ ନପାରେ । ତେବେ କନିଷ୍କ ଶକ ନଥିଲେ, ସେ ଥିଲେ କୁଶାନ । ପୁଣି ଦ୍ୱିତୀୟ ଶତାବ୍ଦି, ପୂର୍ବରୁ (ଅର୍ଥାତ୍ ଖ୍ରୀ: ୭୮ ବେଳକୁ) ସେ ଭାରତରେ କ୍ଷମତା ବିସ୍ତାର କରି-ଥିବା ମଧ୍ୟ ସମ୍ଭବ ନୁହେଁ, କାରଣ ଖ୍ରୀ: ୯୨ ପର୍ଯ୍ୟନ୍ତ କଡଫିସସ୍ ପ୍ରଥମ ରାଜତ୍ୱ କରୁଥିବା ଜଣାଯାଏ । ତେଣୁ ଖ୍ରୀ: ୭୮କୁ ଶକମାନଙ୍କର ଅଧିପତ୍ୟ ବିସ୍ତାର କାଳରୂପେ ଗ୍ରହଣ କରି ବିପୁଳ ଗୌରବଶାଳୀ, ପୁରାଣପ୍ରସିଦ୍ଧ ରାଜା ଶାଳି-ବାହନ ତାହା ପ୍ରବର୍ତ୍ତନ କରିଥିବା ଯଥାର୍ଥ ମନେହୁଏ । ନଚେତ୍, କନିଷ୍କ ଦ୍ୱିତୀୟ ଶତାବ୍ଦୀରେ କ୍ଷମତାକୁ ଆସିବା ପରେ ଶକମାନଙ୍କର ବିଜୟ ସମ୍ପୃକ୍ତ ମାନଦଣ୍ଡ ରୂପେ ନେଇ ଖ୍ରୀ: ୭୮ରୁ ଶକାବ୍ଦର ଗଣନା କରି ତାଙ୍କ ସମୟରେ ତାହା ପ୍ରବର୍ତ୍ତନ କରାଇଥିବେ ।

ସେ ଯାହାହେଉ, କନିଷ୍କ ପ୍ରାୟ ୨୩ ବର୍ଷ ରାଜତ୍ୱ କରିଥିଲେ । ହୁଏନ୍‌ସାଂଙ୍କ ବିବରଣୀ ଅନୁସାରେ ପୁରୁଷପୁର (ପେଶାୱାର) ଥିଲା ତାଙ୍କର ରାଜଧାନୀ । ତାଂକ ରାଜତ୍ୱ କାଳରେ ସେ ଗାନ୍ଧାର, ଅଯୋଧ, ବାରାଣସୀ ଓ କାଶ୍ମୀରକୁ ମଧ୍ୟ ନିଜର ଅଧୀନସ୍ଥ କରିଥିବା ଜଣାଯାଏ । ତେବେ କେବଳ ରାଜ୍ୟବିସ୍ତାର ଲାଗି କନିଷ୍କ ଖ୍ୟାତି ଅର୍ଜନ କରି ନଥିଲେ । ବୁଦ୍ଧଦେବ ଓ ଶାକ୍ୟ ମୁନିଙ୍କର ଧର୍ମପ୍ରତି ତାଙ୍କର ଆନ୍ତରିକ ସମର୍ଥନ ରହିଥିଲା ଏବଂ ବୌଦ୍ଧଗ୍ରନ୍ଥଗୁଡ଼ିକର ମୂଲ୍ୟାୟନ ନିମନ୍ତେ ସେ ଏକ ବିରାଟ ଧର୍ମସମ୍ମିଳନୀ ଆହ୍ୱାନ କରିଥିଲେ । ଏତଦ୍ବ୍ୟତୀତ, ବିଭିନ୍ନ ଶିଳାଲେଖ ଓ ମୁଦ୍ରାପ୍ରଚଳନରୁ ମଧ୍ୟ ତାଙ୍କର ଧର୍ମାନୁରକ୍ତିର ପରିଚୟ ମିଳେ । ଧର୍ମ ବ୍ୟତୀତ, କଳା ଓ ସାହିତ୍ୟ ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗ ଥିଲା । ବିଖ୍ୟାତ ପଣ୍ଡିତ ଅଶ୍ୱଘୋଷ ତାଙ୍କର ରାଜଦରବାରର ଶ୍ରୀବୃଦ୍ଧି ସାଧନ କରୁଥିଲେ ।

କନିଷ୍କଙ୍କ ପରେ ବାଶିଷ୍କ ଅଳ୍ପକାଳ ରାଜତ୍ୱ କଲା ପରେ ହୁବିଷ୍କ ରାଜପଦ ଅଧିକାର କରିଥିଲେ । ସେ ମଧ୍ୟ କନିଷ୍କଙ୍କ ପରି ଜଣେ ଖ୍ୟାତନାମା ରାଜା ଥିଲେ । ସେ ମଥୁରାକୁ ରାଜଧାନୀ ପରିବର୍ତ୍ତନ କରିଥିଲେ ଏବଂ ସ୍ତୁତିଲେଖଦ୍ୱାରା କନିଷ୍କ ପେଶୋୱାରରେ ମଣ୍ଡନ କଲା ପରି ସେ ମଥୁରାରେ ସ୍ତୁତିଲେଖମାନ ସ୍ଥାପନ କରିଥିଲେ ।

କୁଶାନ ବଂଶର ଶେଷ ରାଜା ହେଉଛନ୍ତି ବାସୁଦେବ । ସେ ଦ୍ୱିତୀୟ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ରାଜତ୍ୱ କରୁଥିବା ଜଣାଯାଏ । ତାଙ୍କ ସମୟରେ ପ୍ରଚଳିତ ମୁଦ୍ରାଗୁଡ଼ିକରୁ ସେ ଜଣେ ଶୈବ ଥିବା ଅନୁମେୟ; କାରଣ ସେଗୁଡ଼ିକରେ ଭଗବାନ ଶିବଙ୍କର ପ୍ରତିକୃତିମାନ ଅଂକିତ ହୋଇଥିଲା । ମଥୁରା ଓ ଆଖପାଖ ଅଞ୍ଚଳରେ ବାସୁଦେବଙ୍କ ସମୟରେ ବହୁ ଶିଳାଲେଖ ଆବିଷ୍କୃତ ହୋଇଅଛି ।

## ନାଗାବଂଶ

ଖ୍ରୀ: ୩ୟ ଶତାବ୍ଦୀର ଆରମ୍ଭ ପୂର୍ବରୁ ମଥୁରା ଓ ଯମୁନା ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ନାଗାମାନେ ପ୍ରଭୁତ୍ୱ ବିସ୍ତାର କରିଥିଲେ । ପୁଣି ସେତେବେଳକୁ ପେର୍ଶିଆରେ ଶାସାନୀୟନ୍ ବଂଶ ମୁଣ୍ଡ ଟେକିଥିଲା ଏବଂ ତା ଫଳରେ ଉତ୍ତର ଓ ପଶ୍ଚିମ ଭାରତରେ କୁଶାନମାନେ ନିଷ୍ପ୍ରଭ ହୋଇ ପଡ଼ିଥିଲେ । ତେବେ ଚତୁର୍ଥ ଶତାବ୍ଦୀର ମଧ୍ୟଭାଗରେ ଗୁପ୍ତ ସାମ୍ରାଜ୍ୟର ଅଭ୍ୟୁଦୟ ହେବା ପରେ ନାଗାମାନେ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ ।

## ପୌରାଣିକ ଯୁଗ  ଏକ ବିହଙ୍ଗାବଲୋକନ

ମୌର୍ଯ୍ୟ ଯୁଗର ଶେଷଠାରୁ ଗୁପ୍ତଯୁଗ ଆରମ୍ଭ ହେବା ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ ପ୍ରାୟ ପାଞ୍ଚଶତ ବର୍ଷର ଅବସ୍ଥା ଓ ଘଟଣାବଳୀର ଅମୂଲ୍ୟ ଐତିହାସିକ ଅବଦାନ ରହିଅଛି । ଏହି ସମୟରେ ଶାସନ ଓ ରାଜନୀତି, ଧର୍ମ ଓ ପୁରାଣ, ଶିଳ୍ପ ଓ ବାଣିଜ୍ୟ, କଳା ଓ ସ୍ଥାପତ୍ୟ, କ୍ରୀଡ଼ା ଓ ବିନୋଦନ ପ୍ରତ୍ୟେକ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଅଗ୍ରଗତି ଘଟିଥିଲା । ଏହି ବିଷୟରେ ନିମ୍ନରେ ସଂକ୍ଷେପରେ ଆଲୋଚନା କରାଗଲା :

## ଶାସନ ଓ ରାଜନୀତି

ଆଲୋଚ୍ୟ ଯୁଗର ଶାସନ ପ୍ରଣାଳୀରେ ବିଶେଷ ପରିବର୍ତ୍ତନ ପରିଲକ୍ଷିତ ହୋଇ ନ ଥିଲା । ଅନ୍ତତଃ ଯେଉଁ ଅଞ୍ଚଳଗୁଡ଼ିକରେ ଗ୍ରୀକ୍, ଶକ ଓ କୁଶାନ-

ମାନଙ୍କର ପ୍ରଭାବ ପଡ଼ିନଥିଲା, ସେଠାରେ ଅଶୋକଙ୍କ ସମୟର ଶାସନ ପ୍ରଣାଳୀ ଅପରିବର୍ତ୍ତିତ ଭାବରେ (ବା କିଞ୍ଚିତ୍ ପରିବର୍ତ୍ତିତହୋଇ) ଅନୁସୃତ ହୋଇଥିଲା । ଶାସନ କାର୍ଯ୍ୟରେ ବିଶେଷତଃ ରାଜକର୍ମଚାରୀ ନିଯୁକ୍ତି, କାର୍ଯ୍ୟ-ବଣ୍ଟନ, ଜନହିତକର କାର୍ଯ୍ୟ ସାଧନ ଇତ୍ୟାଦି କ୍ଷେତ୍ରରେ ବିଧିବଦ୍ଧ ନିୟମାବଳୀ ପାଳନ କରାଯାଉଥିଲା । ଚିରାଚରିତ 'ବଳି', 'ଭାଗ' ଓ 'ଶୁଳ୍କ' ବ୍ୟତୀତ ଅତିରିକ୍ତ କର ଓ ବିଷ୍ଟି (ବାଧ୍ୟତାମୂଳକ ଶ୍ରମବିନିଯୋଗ) ଇତ୍ୟାଦି ଅନ୍ୟାୟା-ଚରଣର ପ୍ରତିରୋଧ କରାଯାଇଥିଲା । ପ୍ରାଦେଶିକ ଶାସନ କାର୍ଯ୍ୟ ନିର୍ବାହ କରିବା ନିମିତ୍ତ ବଂଶାନୁକ୍ରମିକ ଭାବରେ 'କ୍ଷେତ୍ରପ' (ରାଜପ୍ରତିନିଧି) ନିଯୁକ୍ତି ଏହି ଯୁଗର ଏକ ବୈଶିଷ୍ଟ୍ୟ । ସଂକ୍ଷେପରେ କହିବାକୁ ଗଲେ, ଏହି ସମୟରେ ପ୍ରଜାରଞ୍ଜନ ରାଜାର ମୁଖ୍ୟ ଧର୍ମ ରୂପେ ବିବେଚିତ ହେଉଥିଲା ।

ଏହି ଯୁଗରେ କେତେକ ସ୍ଥାନରେ ସାମରିକ ଶାସନ ବଳବତ୍ତର ଥିବା ସତ୍ତ୍ୱେ ଅନ୍ୟ କେତେକ ଅଞ୍ଚଳରେ ସ୍ୱାୟତ୍ତଶାସନ ପ୍ରଥା ମଧ୍ୟ ପ୍ରଚଳିତ ଥିଲା ଏବଂ ସ୍ୱାୟତ୍ତ ଶାସିତ ଗ୍ରାମାଞ୍ଚଳରେ ଗ୍ରାମମୁଖ୍ୟ ଓ ସହରାଞ୍ଚଳରେ ନିଗମ ସଭା ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ ।

## ସାମାଜିକ ଅବସ୍ଥା

ଏହି ସମୟର ସାମାଜିକ ଜୀବନରେ ହିନ୍ଦୁଧର୍ମର ଦୁଇଟି ବିଶିଷ୍ଟ ଅନୁଷ୍ଠାନ 'ବର୍ଣ୍ଣ' ଓ 'ଆଶ୍ରମ'ର ପ୍ରଭାବ ଅନୁଭୂତ ହୋଇଥିବା ଜଣାଯାଏ । ବୈଦେଶିକ ଅନୁପ୍ରବେଶ ଓ ରାଜନୈତିକ ଅସ୍ଥିରତା ଯୋଗୁଁ ବର୍ଣ୍ଣଭେଦ ପ୍ରଥା ଦୃଢ଼ୀଭୂତ ହୋଇ ନଥିଲେ ମଧ୍ୟ ଏକ ଜାତି ସହିତ ଅନ୍ୟ ଜାତିର ବୈବାହିକ ସମ୍ବନ୍ଧ ସ୍ଥାପନକୁ ନିରୁତ୍ସାହିତ କରାଯାଉଥିଲା । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରୁ ଜଣାଯାଏ ଯେ ବାଣିଜ୍ୟ, କୃଷି ଓ ପଶୁପାଳନ ବୈଶ୍ୟ ଓ ଶୂଦ୍ରମାନଙ୍କର ପେଶା ଥିଲା । ତେବେ ଗ୍ରୀକ୍ ସୂତ୍ରରୁ ସୂଚନା ମିଳେ ଯେ, ସେତେବେଳେ ଜାତିଭେଦ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର କେବଳ ଏହି ଚାରି ଭାଗରେ ଆବଦ୍ଧ ନରହି ଗୃହୀ, ବ୍ୟବସାୟୀ, ସୈନିକ, ଦାର୍ଶନିକ, କୃଷକ, ପଶୁପାଳକ ଇତ୍ୟାଦି ବହୁ ରୂପରେ ଆତ୍ମପ୍ରକାଶ କରିଥିଲା ।

ସେହି ସମାଜରେ ଜୀବନ ପ୍ରଣାଳୀ ଅତି ସରଳ ଥିଲା । ଦାର୍ଶନିକମାନେ ଉଚ୍ଚଚିନ୍ତା ଓ ଗଭୀର ଅଧ୍ୟବସାୟରେ ନିମଜ୍ଜିତ ରହୁଥିଲେ; କୃଷକ ଓ ଶ୍ରମଜୀବୀ

ଶ୍ରେଣୀ ସୁଖ ସ୍ୱାଚ୍ଛନ୍ଦ୍ୟରେ ସରଳ ଜୀବନ ଯାପନ କରୁଥିଲେ । ଉକ୍ତ ସମାଜରେ ଚୋର, ତସ୍କର ଓ ପ୍ରବଂଚକମାନଙ୍କର ପ୍ରାଦୁର୍ଭାବ ନଥିଲା । ଗୃହ ଓ ସମ୍ପତ୍ତିର ସୁରକ୍ଷା ନିମିତ୍ତ କୌଣସି ସାବଧାନତା ଅବଲମ୍ବନ କରିବାକୁ ପଡୁନଥିଲା, କିମ୍ବା ବନ୍ଧକ, ସାକ୍ଷୀ, ଜଉମୁଦ ଇତ୍ୟାଦିର ଆବଶ୍ୟକତା ଉପଲବ୍ଧ ହେଉନଥିଲା । ଯଜ୍ଞ ଓ ପର୍ବପର୍ବାଣୀ ବ୍ୟତୀତ ଅନ୍ୟ ସମୟରେ ମଦ୍ୟପାନ ନିଷିଦ୍ଧ ଥିଲା ।

ଚିତ୍ତ ବିନୋଦନ ନିମନ୍ତେ ପର୍ବପର୍ବାଣୀ ଓ ସାମୟିକ ଉତ୍ସବ ବ୍ୟତୀତ ବିଭିନ୍ନ କ୍ରୀଡା କୌତୁକ ମଧ୍ୟ ସେହି ସମୟରେ ପ୍ରଚଳିତ ଥିଲା । ସମସ୍ତ ପ୍ରକାର ପର୍ବପର୍ବାଣୀରେ ନୃତ୍ୟ, ଗୀତ ଓ ସଙ୍ଗୀତର ସ୍ଥାନ ରହିଥିଲା । କୁସ୍ତି, ହସ୍ତୀଯୁଦ୍ଧ ଓ ରଥଚାଳନା ପ୍ରତିଯୋଗିତା ଥିଲା ଅନ୍ୟତମ ବିନୋଦନ । ଏତଦ୍‌ବ୍ୟତୀତ ଆଠ-ଦଶ ଜଣ ଲୋକ ଧାଡ଼ି ବାନ୍ଧି ଦଳଯୁଦ୍ଧ ପ୍ରତିଯୋଗିତା ପ୍ରଦର୍ଶନ କରି ମନୋରଞ୍ଜନ କରୁଥିଲେ । ଏଥିରୁ ହିଁ ବର୍ତ୍ତମାନ ଯୁଗର ଶତରଞ୍ଜ (ବା ଚେସ୍) ଖେଳ ରୂପ ନେଇଛି ବୋଲି କୁହାଯାଇପାରେ । ସର୍ବୋପରି, ସେହି ସମାଜରେ ପଶା ଖେଳ ମଧ୍ୟ ପ୍ରଚଳିତ ଥିଲା । ପୁଣି ଶାସକବୃନ୍ଦ ଏସବୁ କ୍ରୀଡ଼ା କୌତୁକର ସମର୍ଥକ ଥିଲେ ଏବଂ ତାକୁ ଉତ୍ସାହିତ କରୁଥିଲେ ।

ସେହି ସମାଜରେ ସାଧାରଣ ପରିବାରର ବିବାହିତ ରମଣୀମାନେ ଅସୂର୍ଯ୍ୟଂପଶ୍ୟା ଭାବରେ କାଳାତିପାତ କରୁଥିଲେ ସୁଦ୍ଧା କେତେକ ସ୍ତ୍ରୀ ଦାର୍ଶନିକ ତଥା ବ୍ରହ୍ମଚର୍ଯ୍ୟ ଜୀବନ ଯାପନ କରୁଥିବା ଜଣାଯାଏ । ନାରୀ ପୁରୁଷମାନଙ୍କର ସହଧର୍ମିଣୀ ଥିଲା ଏବଂ ବିଭିନ୍ନ ଧର୍ମ କାର୍ଯ୍ୟରେ ଅଂଶ ଗ୍ରହଣ କରୁଥିଲା । ପୁଣି ମହିଳାମାନେହିଁ ରାଜା ଓ ରାଜପରିବାର ଜନଙ୍କର ଅଙ୍ଗରକ୍ଷୟିତ୍ରୀ ରୂପେ ନିଯୁକ୍ତ ହେଉଥିଲେ । ରାଜା ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ବହୁଦାର ଗ୍ରହଣ ପସନ୍ଦ କରୁଥିଲେ । କିନ୍ତୁ ବିଧବାମାନଙ୍କୁ ଆତ୍ମସଂଯମୀ ଓ ମିତାଚାରିଣୀ ଭାବରେ ଉଦାର ଓ ଉଦାସୀନ ଜୀବନ ନିର୍ବାହ କରିବାକୁ ପଡ଼ୁଥିଲା । ବାତ୍ସାୟନଙ୍କ 'କାମସୂତ୍ର' ତଦାନୀନ୍ତନ ଯୌନ-ଜୀବନର ଏକ ପ୍ରାମାଣିକ ଅଭିଲେଖ । ସେତେବେଳେ କ୍ରୀତଦାସ ପ୍ରଥା ମଧ୍ୟ ପ୍ରଚଳିତ ଥିଲା ଏବଂ ରାଜପରିବାରରେ ସେବା କାର୍ଯ୍ୟରେ ନିଯୁକ୍ତ କରିବା ନିମନ୍ତେ ଅନେକ ସମୟରେ ତରୁଣୀ କନ୍ୟାମାନଙ୍କୁ କ୍ରୟ କରାଯାଉଥିଲା । ସୁତରାଂ ଆରିୟାନ୍ ପ୍ରମୁଖ କେତେକ ଐତିହାସିକ ଏହି ଯୁଗ ସମ୍ପର୍କରେ ମତ ଦେଇ 'ସମସ୍ତ ଭାରତୀୟ ମୁକ୍ତ ଏବଂ

ଏବଂ ସେମାନଙ୍କ ମଧ୍ୟରୁ ଜଣେ ମଧ କ୍ରୀତଦାସ ନୁହନ୍ତି' * ବୋଲି ଯାହା କହିଛନ୍ତି, ତାହା ଯଥାର୍ଥ ମନେହୁଏ ନାହିଁ ।

## ଶିଳ୍ପ ଓ ବାଣିଜ୍ୟ

ମୌର୍ଯ୍ୟ ଯୁଗରେ ନୂଆଁ ଅସ୍ତ୍ରଶସ୍ତ୍ର ଓ କୃଷି ଉପକରଣମାନ ନିର୍ମିତ ହେବା ଫଳରେ ତାପରେ ଶିଳ୍ପ କ୍ଷେତ୍ରରେ ଯଥେଷ୍ଟ ଉନ୍ନତି ପରିଲକ୍ଷିତ ହୋଇଥିଲା । ଉନ୍ନତ ଧରଣର ସ୍ୱର୍ଣ୍ଣ ଅଳଂକାର, ସୁବର୍ଣ୍ଣ ସୂତ୍ର ଖଚିତ ମୂଲ୍ୟବାନ୍ ପୋଷାକ, ଛତ୍ର, ରେଶମ ଓ ମଲମଲ ଲୁଗା ଇତ୍ୟାଦି ଏହି ଯୁଗ ସଭ୍ୟତାର ଦାନ । ଏପରିକି ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ବେଳକୁ ଭାରତରୁ ରୋମକୁ ମଲମଲ ଲୁଗା ରପ୍ତାନି ହେଉଥିବା ଜଣାଯାଏ । ଏହି ଯୁଗରେ ବୟନ ଶିଳ୍ପ ଶତ ଶତ ଅନାଥା ରମଣୀଙ୍କୁ ଜୀବିକା ଯୋଗାଇଥିଲା ।

କୃଷିକ୍ଷେତ୍ରର 'ବଳି' ଓ 'ଭାଗ' ବ୍ୟତୀତ ବ୍ୟବସାୟୀମାନଙ୍କଠାରୁ ଆଦାୟ ହେଉଥିବା ଶୁଳ୍କ ମଧ୍ୟ ରାଜଭଣ୍ଡାରକୁ ସମୃଦ୍ଧ କରୁଥିଲା । ସେତେବେଳେ ନୌବାଣିଜ୍ୟ ଖୁବ୍ ପ୍ରସାର ଲାଭ କରିଥିଲା ଏବଂ ଭାରତୀୟ ବ୍ୟବସାୟୀ ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ମାଳୟ, ଚୀନ, ସିଂହଳ, ସିରିଆ, ମିଶର, ରୋମ ପ୍ରଭୃତି ରାଜ୍ୟ ସହିତ ସମ୍ପର୍କ ରଖିଥିଲା । ଭାରତରୁ ମଲମଲଲୁଗା, ରୂପା ଓ ଔଷଧ ବିଦେଶକୁ ପ୍ରଚୁର ପରିମାଣରେ ରପ୍ତାନି ହେଉଥିଲା ଏବଂ ବିଦେଶରୁ ମୁଖ୍ୟତଃ ସୁବାସିତ ପ୍ରସାଧନ ସାମଗ୍ରୀ, ସ୍ୱାଦିଷ୍ଟ ମଦ୍ୟ ଏବଂ ମୂଲ୍ୟବାନ ପ୍ରସ୍ତର ଆମଦାନି କରାଯାଉଥିଲା । ଏହା ଫଳରେ ବହୁ ପରିମାଣରେ ବିଦେଶୀ ସୁନା ଭାରତରେ ସଞ୍ଚିତ ହୋଇପାରିଥିଲା ଏବଂ କୁଶାନ ବଂଶୀୟ ରାଜା କଡଫିସସ ଦ୍ୱିତୀୟଙ୍କ ସମୟରେ ବିନିମୟର ମାଧ୍ୟମ ସ୍ୱରୂପ ସ୍ୱର୍ଣ୍ଣ ମୁଦ୍ରା ପ୍ରଚଳିତ ହୋଇଥିଲା ।

(ଅବଶ୍ୟ ଏହା ପୂର୍ବରୁ ଭାରତରେ ମୁଦ୍ରାଙ୍କନ ପ୍ରଥା ପ୍ରଚଳିତ ଥିଲା । କିନ୍ତୁ ସେତେବେଳେ ମୁଖ୍ୟତଃ ତାମ୍ର ମୁଦ୍ରା ଓ ରୌପ୍ୟମୁଦ୍ରା ପ୍ରସାର ଲାଭ

---

* Dr. H. C. Raychaudhry 'An Advanced History of India. ୧୯୬୨'ର ୧୨୬ ପୃଷ୍ଠା ଦ୍ରଷ୍ଟବ୍ୟ ।

କରିଥିଲା । ଅନେକ ସମୟରେ ସୁବର୍ଣ୍ଣ ବିନିମୟର ମାଧ୍ୟମ ରୂପେ ବ୍ୟବହୃତ ହୋଇଥିଲେ ମଧ୍ୟ ତାହା କୁଶାନମାନଙ୍କ ସମୟରେ ହିଁ ପ୍ରକୃତ ମୁଦ୍ରାର ରୂପ ନେଇଥିଲା) ।

ତେବେ ଏହି ଯୁଗରେ ମଧ୍ୟ ରୌପ୍ୟ ଓ ତାମ୍ର ମୁଦ୍ରାର ପ୍ରଚଳନ ଅବ୍ୟାହତ ଥିଲା । ବତିଶ ରତି ( ପ୍ରାୟ ୬° ଗ୍ରାମ ) ବିଶିଷ୍ଟ ରୌପ୍ୟ ମୁଦ୍ରାକୁ 'ପୁରାଣ' ବା 'ଧରଣ' ଏବଂ ଅଶିରତି (ପ୍ରାୟ ୧୫° ଗ୍ରାମ୍ ) ଓଜନର ତାମ୍ର ମୁଦ୍ରାକୁ କାର୍ଷାପଣ କୁହାଯାଉଥିଲା (କିନ୍ତୁ ତାତ୍କାଳିକ ଦକ୍ଷିଣାଞ୍ଚଳର ରୌପ୍ୟ ଓ ସ୍ୱର୍ଣ୍ଣମୁଦ୍ରା ମଧ୍ୟ 'କାର୍ଷାପଣ' ନାମରେ ପରିଚିତ ଥିବା ଜଣାଯାଏ ) । ଏହି ସମୟରେ ରୌପ୍ୟକ ଓ ସୁବର୍ଣ୍ଣର ସାମାନୁପାତିକ ହାର ଥିଲା ୧° = ୧; ଅର୍ଥାତ୍ ଦଶଭାଗ ରୌପ୍ୟକର ମୂଲ୍ୟ ଏକ ଭାଗ ସୁବର୍ଣ୍ଣର ମୂଲ୍ୟ ସହିତ ସମାନ ଥିଲା ।

## କଳା ଓ ସ୍ଥାପତ୍ୟ

ଏହି ଯୁଗରେ କଳାର ବିକାଶ ଉଲ୍ଲେଖଯୋଗ୍ୟ । ଖ୍ରୀ: ପୂ: ୨ୟ ଶତାବ୍ଦୀରେ ଶୁଙ୍ଗ ରାଜତ୍ୱରେ ବାରହୁତଠାରେ ଏକ ବିରାଟ ସ୍ତୂପ ନିର୍ମିତ ହୋଇଥିଲା ଏବଂ ସାଞ୍ଚିଠାରେ ଅଶୋକ ଯେଉଁ ନିର୍ମାଣ କରିଥିଲେ, ତାହା ପରିବର୍ଦ୍ଧିତ ହୋଇଥିଲା । ପୁଣି ବୁଦ୍ଧଗୟାଠାରେ ଖୋଦିତ ପ୍ରାଚୀର ଏବଂ ଅଜନ୍ତାର କେତେକ ଆଦ୍ୟକାଳୀନ କଳାକୃତି ମଧ୍ୟ ଏହି ଯୁଗର ଦାନ । ଏହା ବ୍ୟତୀତ ମଥୁରାଠାରେ ଆବିଷ୍କୃତ ବିଭିନ୍ନ କାରୁକାର୍ଯ୍ୟର ଭଗ୍ନାବଶେଷ ତାତ୍କାଳୀନ କଳାକୁଶଳତାର ଉତ୍କର୍ଷ ପ୍ରତିପାଦନ କରେ । ଏହିଠାରେ ପ୍ରଥମ ଥର ପାଇଁ ବୁଦ୍ଧଦେବଙ୍କୁ ମନୁଷ୍ୟ ରୂପରେ ଚିତ୍ରଣ କରାଯାଇଥିଲା; ତତ୍ପୂର୍ବରୁ ସାଞ୍ଚି, ବୁଦ୍ଧଗୟା କିମ୍ବା ବାରହୁତ କୌଣସିଠାରେ ବୁଦ୍ଧଙ୍କର ସଶରୀର ରୂପ ପରିବେଷିତ ହୋଇ ନଥିଲା । ତାଙ୍କର ପ୍ରତୀକ ସ୍ୱରୂପ ଗୋଟିଏ ଅଶୋକ ଚକ୍ର ଦୁଇଟି ପଦଚିହ୍ନ କିମ୍ବା ଗୋଟିଏ ସିଂହାସନ ଅଙ୍କନ କରାଯାଉଥିଲା । ସୁତରାଂ ପ୍ରତିମା ବା ପ୍ରତିମୂର୍ତ୍ତିଗଠନ କଳାରେ ପୌରାଣିକ ଯୁଗ ଏକ ଐତିହାସିକ ବିବର୍ତ୍ତନ ସୃଷ୍ଟି କରିଥିଲା ବୋଲି କହିଲେ ମତଦ୍ୱୈଧର ଆଶଂକା ନାହିଁ ।

## ଧର୍ମ ଓ ପୁରାଣ

ସର୍ବୋପରି, ଏହି ଯୁଗରେ ଧର୍ମ ଓ ପୁରାଣ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଦେଖାଦେଇଥିଲା । ହିନ୍ଦୁମାନଙ୍କର ଦୁଇଟି ଶ୍ରେଷ୍ଠ ପୁରାଣଗ୍ରନ୍ଥ

ରାମାୟଣ ଓ ମହାଭାରତ ପରିପୂର୍ଣ୍ଣତା ଅର୍ଜନ କରିଥିଲା ଏବଂ ତାହା ସଙ୍ଗେ ସଙ୍ଗେ ମନୁସଂହିତା, ଯାଜ୍ଞବଲ୍କ୍ୟ ଓ ଉପନିଷଦଗୁଡ଼ିକର ପ୍ରଭାବ ଅନୁଭୂତ ହୋଇଥିଲା । ପୁଣି କନିଷ୍କଙ୍କ ନେତୃତ୍ୱରେ ଯେଉଁ ମହାଯାନ ସଂପ୍ରଦାୟ ମୁଣ୍ଡ ଟେକିଥିଲା ତାହା ବୌଦ୍ଧଧର୍ମକୁ ହିନ୍ଦୁଧର୍ମର ନିକଟତର କରିଦେଇଥିଲା । ପୁଣି ଖ୍ରୀ:ପୂ: ୨ୟ ଶତାବ୍ଦୀ ବେଳକୁ ଭାରତର ସୀମାନ୍ତବର୍ତ୍ତୀ ଗ୍ରୀକ୍‌ମାନଙ୍କ ମଧ୍ୟରେ ଭଗବତ୍‌ଧର୍ମ ବା ବୈଷ୍ଣବବାଦର ପ୍ରସାର ଘଟିଥିଲା ଏବଂ ପରେ କୁଶାନ ବଂଶୀୟ ରାଜା କଡ଼ଫିସସ୍ ଦ୍ୱିତୀୟ ଓ ବାସୁଦେବ ପରମ ଶିବଭକ୍ତ ହୋଇ ପଡ଼ିଥିଲେ । ଏପରିକି ସେତେବେଳେ ଶିବ, ସ୍କନ୍ଦ (କାର୍ତ୍ତିକେୟ) ଓ ବିଶାଖା ମୂର୍ତ୍ତିମାନ ନିର୍ମିତ ହେଉଥିଲା ଏବଂ ହୁବିଷ୍କଙ୍କ ସମୟର ମୁଦ୍ରାଗୁଡ଼ିକରେ ସ୍କନ୍ଦ ଓ ବିଶାଖା ପ୍ରତିକୃତିମାନ ଅଙ୍କିତ ହୋଇଥିଲା ।

ପ୍ରାଚୀନ ଗ୍ରୀକ୍ ସମାଜକୁ ହୋମରଙ୍କ ଚରିତ୍ରଗୁଡ଼ିକ ପ୍ରଭାବିତ କଲାପରି ଏହି ଯୁଗର ଭାରତୀୟ ସମାଜ ମହାଭାରତ ଓ ରାମାୟଣର ଯୁଧିଷ୍ଠିର, ଭୀଷ୍ମ, ଭୀମ, ଅର୍ଜୁନ, ରାମ, ଲକ୍ଷ୍ମଣ, ସୀତାଦି ଚରିତ୍ର ଓ କଂସବଧ, ବଳିବଧ, ଗୃହଦାହାଦି ଆଖ୍ୟାୟିକାଦ୍ୱାରା ପ୍ରଭାବିତ ହୋଇଥିଲା । ପୁଣି ଏହି ସମୟରେ ମୌର୍ଯ୍ୟଯୁଗୀୟ କୃତି କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର' ଓ ଭଦ୍ରବାହୁଙ୍କର 'କଳ୍ପସୂତ୍ର' ବିଶେଷ ଆଦୃତ ଲାଭ କରିଥିଲା । ଏତଦ୍‌ବ୍ୟତୀତ, ଅଶ୍ୱଘୋଷଙ୍କର 'ଶାରିପୁତ୍ର ପ୍ରକରଣ' ଓ 'ବୁଦ୍ଧ-ଚରିତ', ଭାସଙ୍କର 'ସ୍ୱପ୍ନବାସବଦତ୍ତା', ପତଞ୍ଜଳିଙ୍କର 'ମହାଭାଷ୍ୟ', ସର୍ବବର୍ମାଙ୍କର 'କାତନ୍ତ୍ର' (ବା 'କଳାପକ'), ପାଣିନୀଙ୍କର ବ୍ୟାକରଣ, ଗୁଣାଢ଼୍ୟଙ୍କର 'ବୃହତ୍ କଥା', ସାତବାହନ ବଂଶୀୟ ରାଜା ହାଲଙ୍କର 'ଗାଥା-ସପ୍ତଶତୀ' (ଏପରିକି, 'ବୃଦ୍ଧଚରିତକାବ୍ୟ', 'ଲଳିତ ବିସ୍ତର' ଓ 'ସଧର୍ମ ପୁଣ୍ଡରିକ'ର କିୟଦଂଶ ମଧ୍ୟ) ଏହି ଯୁଗରେ ପ୍ରଣୀତ ହୋଇଥିବା ଜଣାଯାଏ । ସୁତରାଂ, ଏହି ଯୁଗରେ ସଂସ୍କୃତ ସାହିତ୍ୟରେ ଯେ ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା, କହିବା ବାହୁଲ୍ୟ ମାତ୍ର ।

ପରିଶେଷରେ, ଜଣେ ବିଶିଷ୍ଟ ଇତିହାସ ଗବେଷକଙ୍କର ମତ ଉଦ୍ଧାର କରି ଏତିକି କୁହାଯାଇ ପାରେ ଯେ, ଏହି ଯୁଗରେ ନିରାକାର ବ୍ରହ୍ମ, ସାକାର ଈଶ୍ୱର, ବେଦ ମହାତ୍ମ୍ୟ, କର୍ମ ଓ ପୁନର୍ଜନ୍ମ, ବର୍ଣ୍ଣାଶ୍ରମ ଧର୍ମ, ଧର୍ମ-ଅର୍ଥ-କାମ ମୋକ୍ଷାଦି ଚତୁର୍ବର୍ଗ, କର୍ମ-ଭକ୍ତି-ଜ୍ଞାନାଦି ତ୍ରିବିଧ ମାର୍ଗ, ବ୍ରହ୍ମା-ବିଷ୍ଣୁ-ମହେଶ୍ୱରାଦି



ସାଞ୍ଚି ଦ୍ୱାରଦେଶର ଏକଅଂଶ



ଅଜନ୍ତାର ଅଙ୍କନକଳା [ପାର୍ଶ୍ୱ ପୃ. ୮୮]



ସାରନାଥର ଅଶୋକ ସ୍ତମ୍ଭ



ଗୁପ୍ତଯୁଗର ବୁଦ୍ଧ-ମୂର୍ତ୍ତି [ପାର୍ଶ୍ୱ ପୃ. ୮୯]

ଜ ମୂର୍ତ୍ତି ଧାରଣା, ଅବତାର ଓ ଇଷ୍ଟ ଦେବତା ଜ୍ଞାନ, ତୀର୍ଥ ପୀଠରେ ବିଶ୍ୱାସ, ଗୋଭକ୍ତି ଇତ୍ୟାଦି ହିନ୍ଦୁଧର୍ମର ସମ୍ବନ୍ଧ ଗୁଣ ବା ଲକ୍ଷଣର ପରିପ୍ରକାଶ ସଙ୍ଗେ ସଙ୍ଗେ ଶୈବ, ଶାକ୍ତ ଓ ବୈଷ୍ଣବ ସମ୍ପ୍ରଦାୟର ବିକାଶ ସାଧିତ ହୋଇ-ଥିଲା । ପରବର୍ତ୍ତୀ କାଳରେ ଯେଉଁ ସବୁ ବିଭିନ୍ନ ଭକ୍ତିବାଦ ଓ ଦର୍ଶନର ଅଭ୍ୟୁଦୟ ଘଟିଥିଲା, ସେ ସବୁ ଏହି ପୌରାଣିକ ଯୁଗୀୟ ଚିନ୍ତାଧାରାର ସମ୍ପ୍ରସାରଣ ମାତ୍ର । * ତେଣୁ ଏହି ଯୁଗ ହିନ୍ଦୁ ଧର୍ମର ପୁନର୍ନବୀକରଣ ନିମନ୍ତେ ଦିଗ୍‌ଦର୍ଶନ ଦେଇଥିଲା ବୋଲି କହିଲେ ଅଯଥାର୍ଥ ହେବ ନାହିଁ ।

---

* Prof. S. D Sharma ଙ୍କର 'Hinduism Through The Ages' ପୁସ୍ତକର ୨୬ ପୃଷ୍ଠା ଦ୍ରଷ୍ଟବ୍ୟ ।

# ଅଷ୍ଟମ ପର୍ଯ୍ୟାୟ
# ଗୁପ୍ତଯୁଗ

ଅନୁପ୍ରବେଶକାରୀ କୁଶାନବଂଶୀୟ ରାଜାମାନେ ପ୍ରଥମେ ଭାରତୀୟ ପରଂପରାର ପୃଷ୍ଠପୋଷକରୂପେ ଅନେକାଂଶରେ କ୍ଷମତା ହାସଲ କରିଥିଲେ; କିନ୍ତୁ କାଳକ୍ରମେ ପରବର୍ତ୍ତୀକାଳର ଶାସକଗଣ ଅତ୍ୟାଚାରୀ ହୋଇପଡ଼ିଲେ ଏବଂ ସୁରାପାନ ଓ ସମ୍ପତ୍ତିଲୁଣ୍ଠନରେ ପ୍ରବୃତ୍ତ ରହି ପ୍ରଭୁତ୍ୱ ବିସ୍ତାର କରିବାକୁ ଲାଗିଲେ । ତା ଫଳରେ ଚତୁର୍ଥ ଶତାବ୍ଦୀ ବେଳକୁ ଜାତୀୟ ପ୍ରାଣରେ ଘୋର ଅସନ୍ତୋଷ ପ୍ରକାଶ ପାଇଲା ଏବଂ ସେହି ଅତ୍ୟାଚାରୀ ବିଦେଶୀ ଶାସକ ଗୋଷ୍ଠୀ ବିରୋଧରେ ଜନମତ ଜାଗ୍ରତ ହେଲା । ଅତୀତରେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମୌର୍ଯ୍ୟବଂଶୀୟ ରାଜା ଚନ୍ଦ୍ରଗୁପ୍ତ ଯେଭଳି ବିଦେଶୀ ଶାସକମାନଙ୍କ ବିରୋଧରେ ଆନ୍ଦୋଳନର ନେତୃତ୍ୱ ନେଇଥିଲେ, ସେଭଳି ଏହି ସମୟର ଇତିହାସରେ ମଧ୍ୟ ଅନ୍ୟ ଜଣେ ଚନ୍ଦ୍ରଗୁପ୍ତ ଆତ୍ମପ୍ରକାଶ କରି ଭାରତ ଭୂମିରୁ ବିଦେଶୀ ଆଧିପତ୍ୟ ଲୋପ କରିବା ଦିଗରେ ଦୃଢ଼ ପଦକ୍ଷେପ ନେଲେ ଏବଂ ବିଖ୍ୟାତ ଗୁପ୍ତଯୁଗର ପ୍ରତିଷ୍ଠାତା ହେଲେ ।

## ଚନ୍ଦ୍ରଗୁପ୍ତ (ପ୍ରଥମ)

ଚନ୍ଦ୍ରଗୁପ୍ତ (ପ୍ରଥମ) ଗୁପ୍ତବଂଶର ତୃତୀୟ ରାଜା ବୋଲି କେତେକ ଶିଳାଲେଖରେ ଉଲ୍ଲେଖ ହୋଇଥିଲେ ହେଁ ସେ ପ୍ରଥମେ ମହାରାଜାଧିରାଜ ପଦବୀ ମଣ୍ଡନ କରିଥିଲେ । ସେ ଖ୍ରୀ: ୩୨୦ରେ ରାଜସିଂହାସନ ଆରୋହଣ କରିଥିଲେ ଏବଂ ଉତ୍ତର ଭାରତର ଆଲାହାବାଦ, ଅଉଦ ଓ ବିହାର ପ୍ରଭୃତି ଅଞ୍ଚଳରେ ଆଧିପତ୍ୟ ବିସ୍ତାର କରିଥିଲେ । ସେହି ସମୟରୁ ହିଁ ଗୁପ୍ତଯୁଗର ପ୍ରବର୍ତ୍ତନ ଘଟିଥିଲା । ବ୍ୟବସ୍ଥାପକ ପରିଷଦ ମାଧ୍ୟମରେ ନୀତି ନିର୍ଦ୍ଧାରଣ ଥିଲା ତାଙ୍କ ରାଜତ୍ୱର ଏକ ବିଶେଷତ୍ୱ । ଏହି ବ୍ୟବସ୍ଥାପକ ପରିଷଦର ନିଷ୍ପତ୍ତି-

ଏମାନେହିଁ ସମୁଦ୍ରଗୁପ୍ତ ଚନ୍ଦ୍ରଗୁପ୍ତଙ୍କ ଉତ୍ତରାଧିକାରୀରୂପେ ମନୋନୀତ ହୋଇଥିଲେ ।

## ସମୁଦ୍ରଗୁପ୍ତ

ଚନ୍ଦ୍ରଗୁପ୍ତ (ପ୍ରଥମ)ଙ୍କ ରାଜତ୍ୱ କାଳ ଦଶ ବର୍ଷ ନପୂରୁଣୁ ଖ୍ରୀ: ୩୩୦ରେ ସମୁଦ୍ରଗୁପ୍ତ ଶାସନ କ୍ଷମତା ହାସଲ କରିଥିଲେ । ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ପରଠାରୁ ଅନ୍ୟ କୌଣସି ରାଜା ରାଜ୍ୟବସ୍ଥାର ଉପରେ ବିଶେଷ ଗୁରୁତ୍ୱ ଦେଇ ନ ଥିଲେ । ସମୁଦ୍ରଗୁପ୍ତଙ୍କ ରାଜତ୍ୱରେ ସେହି ପରମ୍ପରାର ପୁନରାବୃତ୍ତି ଘଟିଥିଲା ଏବଂ ସେ ବଙ୍ଗ, ପଞ୍ଜାବ ଓ ଆସାମ ସମେତ ମଧ୍ୟ ଉତ୍ତର ଭାରତର ଅଧିକାଂଶ ରାଜ୍ୟ ନିଜର ଶାସନ ଅଧୀନକୁ ଆଣିଥିଲେ । ଏହା ବ୍ୟତୀତ, ସମୁଦ୍ରଗୁପ୍ତ ତାଂକର ଦାକ୍ଷିଣାତ୍ୟ ଅଭିଯାନ କାଳରେ କୋଶଳ, କୁରାଳ, କୃଷ୍ଣା, ଗୋଦାବରୀ, ପିଠାପୁର, କାଞ୍ଚି, ନେଲ୍ଲୋର ପ୍ରଭୃତି ରାଜ୍ୟର ରାଜାମାନଙ୍କୁ ଯୁଦ୍ଧରେ ପରାଜିତ କରି ପୁଣି ସେମାନଙ୍କୁ ମୁକ୍ତିପ୍ରଦାନ କରିଥିବା ଜଣାଯାଏ । ରାଜ୍ୟାକ୍ରମଣ କ୍ଷେତ୍ରରେ ଅଶୋକ ଓ ସମୁଦ୍ରଗୁପ୍ତ ଉଭୟଙ୍କ ମଧ୍ୟରେ ଆଦର୍ଶଗତ ସାମ୍ୟ ପରିଲକ୍ଷିତ ହୁଏ । ତେବେ ଅଶୋକଙ୍କ ରାଜ୍ୟାକ୍ରମଣ ମୂଳରେ ନୈତିକ ଓ ଧାର୍ମିକ (ବୌଦ୍ଧଧର୍ମ ପ୍ରଚାର) ଅଭିପ୍ରାୟ ନିହିତ ଥିବାସ୍ଥଳେ ସମୁଦ୍ରଗୁପ୍ତଙ୍କ ଯୁଦ୍ଧାଭିଯାନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜାତୀୟତା ଚିନ୍ତାଧାରାର ପରିପ୍ରସାର ଓ ଆର୍ଯ୍ୟାବର୍ତ୍ତର ରାଜନୈତିକ ଏକୀକରଣ ।

ଏତଦ୍ଵ୍ୟତୀତ ସମୁଦ୍ରଗୁପ୍ତ ଥିଲେ ଜଣେ କଳା, ସଙ୍ଗୀତ ଓ ସାହିତ୍ୟ-ପ୍ରେମୀ । ବହୁ ବିଦ୍ୱାନ୍ ପଣ୍ଡିତ ଓ କବି ତାଂକ ଦରବାର ମଣ୍ଡନ କରୁଥିଲେ । ଏପରିକି ତାଂକ ରାଜତ୍ୱକାଳରେ ପ୍ରଚଳିତ ମୁଦ୍ରାଗୁଡ଼ିକରେ ମଧ୍ୟ ବୀଣା-ବାଦକର ପ୍ରତିଛବି ଅଂକିତ ହୋଇଥିବା । ସେ ଖ୍ରୀ: ୩୮୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଐତିହାସିକମାନଙ୍କଦ୍ୱାରା ସେ 'ଭାରତୀୟ ନେପୋଲିୟନ' ନାମରେ ଅଭିହିତ ।

## ଚନ୍ଦ୍ରଗୁପ୍ତ (ଦ୍ୱିତୀୟ) ବା ବିକ୍ରମାଦିତ୍ୟ

ସମୁଦ୍ରଗୁପ୍ତଂକ ପରେ ତାଂକ ପୁତ୍ର ଚନ୍ଦ୍ରଗୁପ୍ତ ଖ୍ରୀ: ୩୮୦ରେ ରାଜ-ସିଂହାସନ ଅଧିକାର କରିଥିଲେ । କିମ୍ବଦନ୍ତୀ ଅଛି, ସମୁଦ୍ରଗୁପ୍ତଙ୍କ ପରେ ତାଙ୍କ ଜ୍ୟେଷ୍ଠ ପୁତ୍ର ରାମଗୁପ୍ତ ରାଜଗାଦିରେ ଅଭିଷିକ୍ତ ହୋଇଥିବେ ଏବଂ ସେ ଅତି

ଦୁର୍ବଳ ରାଜା ଥିବାରୁ ନିଜ ପତ୍ନୀ ଧ୍ରୁବଦେବୀଙ୍କୁ ଜନୈକ ଶକ ଅଧିପତିଙ୍କ ହସ୍ତରେ ଅର୍ପଣ କରିଦେଇଥିଲେ । ସେଥିରେ ଉତ୍ତ୍ୟକ୍ତ ହୋଇ ରାମଗୁପ୍ତଙ୍କ କନିଷ୍ଠ ଭ୍ରାତା ଚନ୍ଦ୍ରଗୁପ୍ତ ଉକ୍ତ ଶକ ଅଧିପତିଙ୍କୁ ନିପାତ କରି ରାଜପଦରେ ଅଧିଷ୍ଠିତ ହୋଇଥିଲେ ଏବଂ ଗୁପ୍ତବଂଶୋଦ୍ଭବା ରାଣୀଙ୍କର ସମ୍ମାନ ରକ୍ଷା କରିବା ସଙ୍ଗେ ସଙ୍ଗେ ତାଙ୍କୁ ନିଜର ପତ୍ନୀରୂପେ ଗ୍ରହଣ କରିଥିଲେ । ତେବେ ଏହି କିମ୍ବଦନ୍ତୀ ମୂଳରେ କୌଣସି ପ୍ରାମାଣିକ ତଥ୍ୟ ନ ଥିବାରୁ ତାହାକୁ ଏକ ଐତିହାସିକ ସତ୍ୟରୂପେ ଗ୍ରହଣ କରାଯାଇ ନ ପାରେ ।

ସେ ଯାହାହେଉ, ଚନ୍ଦ୍ରଗୁପ୍ତ (ଦ୍ୱିତୀୟ)ଙ୍କ ରାଜତ୍ୱକାଳରେ ପୂର୍ବବର୍ତ୍ତୀ ବିଜୟାଭିଯାନ ମିତ ଅପରିବର୍ତ୍ତିତ ରହିଥିଲା । ପୁଣି ବିଭିନ୍ନ ରାଜପରିବାର ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ କରି ସେ ତାଙ୍କର ପ୍ରତିପତ୍ତି ବଜାୟ ରଖିଥିଲେ । ପାଟଳିପୁତ୍ର ଓ ଉଜ୍ଜୟିନୀ ଉଭୟ ନଗରୀର ଅଧୀଶ୍ୱରରୂପେ ସେ ପୂଜା ପାଇଥିଲେ । ଜନୈକ ଶକ ସେନାଧ୍ୟକ୍ଷଙ୍କୁ ସଂହାର କରିଥିବାରୁ ପୁରାଣକାରମାନେ ତାଙ୍କୁ 'ଶିକାରୀ' ନାମରେ ଅଭିହିତ କରନ୍ତି । ସେ ପ୍ରବଳ ପରାକ୍ରମଶାଳୀ ରାଜା ଥିବାରୁ ତାଙ୍କୁ 'ବିକ୍ରମାଦିତ୍ୟ' (ବିକ୍ରମରେ ସୂର୍ଯ୍ୟସମ) ଆଖ୍ୟା ଦିଆଯାଇଥିଲା ଏବଂ ସେ ସେହି ନାମରେ ପରିଚିତ ଥିଲେ । ଏତଦ୍-ବ୍ୟତୀତ, ସେ ଥିଲେ ଅସାମାନ୍ୟ ଗୁଣଗ୍ରାହୀ । କାଳିଦାସ, ବରାହମିହିର, ଧନ୍ୱନ୍ତରୀ, କ୍ଷପଣକ, ଅମରସିଂହ, ଶଙ୍କୁ, ବେତାଳଭଟ୍ଟ, ଘଟକର୍ପର ଓ ବରରୁଚି—ଏହି ନଅଜଣ ବିଶିଷ୍ଟ ପଣ୍ଡିତ 'ନବରତ୍ନ' ନାମରେ ବିଦିତ ହୋଇ ତାଙ୍କ ଦରବାରର ଶ୍ରୀବର୍ଦ୍ଧନ କରୁଥିଲେ । ସେହି ସମୟରେ ଚୀନ ପରିବ୍ରାଜକ ଫାହିୟାନ୍ ବିକ୍ରମାଦିତ୍ୟଙ୍କ ସୁଶାସନ ଅବଲୋକନ କରି ସେଥିରେ ବିମୋହିତ ହୋଇ ପଡ଼ିଥିଲେ ।

## ଗୁପ୍ତଯୁଗର ଶେଷକାଳ

ବିକ୍ରମାଦିତ୍ୟଙ୍କ ପରେ ତାଙ୍କ ପୁତ୍ର କୁମାରଗୁପ୍ତ (ପ୍ରଥମ) ବା ମହେନ୍ଦ୍ରାଦିତ୍ୟ ଖ୍ରୀ: ୪୧୫ରେ ଶାସନ କ୍ଷମତା ଗ୍ରହଣ କରିଥିଲେ ଏବଂ ଅଶ୍ୱମେଧାଦି ଯଜ୍ଞର ଆୟୋଜନ କରି ପିତାଙ୍କ ସାମ୍ରାଜ୍ୟକୁ ଅକ୍ଷୁର୍ଣ୍ଣ ରଖିବା ଲାଗି ଚେଷ୍ଟା କରିଥିଲେ । କିନ୍ତୁ ତାଙ୍କ ରାଜତ୍ୱ କାଳରେ ଏକ ଧନିକ ପ୍ରଜା-ଗୋଷ୍ଠୀ ମୁଣ୍ଡଟେକିବା ଫଳରେ ରାଜକାର୍ଯ୍ୟ ପ୍ରଭୃତି ଆଂଶିକ ପରିମାଣରେ ବାଧାପ୍ରାପ୍ତ ହୋଇଥିଲା ଏବଂ ସେହି ସମସ୍ୟାର ସମାଧାନ ପୂର୍ବରୁ ଖ୍ରୀ: ୪୫୫ରେ

ତାଙ୍କର ପରଲୋକ ଘଟିଥିଲା । କିନ୍ତୁ ତାଙ୍କ ପରେ ଯୁବରାଜ ସ୍କନ୍ଦଗୁପ୍ତ ରାଜ-ସିଂହାସନ ଆରୋହଣ କରି ସାର୍ବଭୌମ କ୍ଷମତା ବିସ୍ତାର କରିପାରିଥିଲେ । ବିତ୍ତଶାଳୀ ଓ କ୍ଷମତାସମ୍ପନ୍ନ ଜମିଦାରମାନଙ୍କୁ ନିଜର କରଗତ କରିବା ସଙ୍ଗେ ସଙ୍ଗେ ସେ ହୁନ୍‌ମାନଙ୍କ ତତ୍କାଳୀନ ଆକ୍ରମଣର ପ୍ରତିରୋଧ କରିଥିଲେ ଏବଂ 'ବିକ୍ରମାଦିତ୍ୟ' * ଉପାଧିରେ ଭୂଷିତ ହୋଇଥିଲେ । ସେ ଖ୍ରୀ: ୪୬୭ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଜଣାଯାଏ ।

ସ୍କନ୍ଦଗୁପ୍ତଙ୍କ ପରବର୍ତ୍ତୀ ରାଜାମାନଙ୍କ ସମ୍ବନ୍ଧରେ ସବିଶେଷ ଐତିହାସିକ ତଥ୍ୟ ହସ୍ତଗତ ନହେଲେ ମଧ୍ୟ ପ୍ରାୟ ଖ୍ରୀ: ୫୫୦ ପର୍ଯ୍ୟନ୍ତ ଉତ୍ତର ବଙ୍ଗରେ ଗୁପ୍ତବଂଶୀୟ ରାଜାମାନେ ପ୍ରଭୁତ୍ୱ ବିସ୍ତାର କରିଥିଲେ ବୋଲି ଐତିହାସିକମାନେ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଏହି ସମୟ ମଧ୍ୟରେ ପୁରୁଗୁପ୍ତ (୪୬୭-୪୭୦), ନରସିଂହଗୁପ୍ତ (୪୭୦-୪୭୩), କୁମାର ଗୁପ୍ତ (୪୭୩-୪୭୪), ବିଷ୍ଣୁ ଗୁପ୍ତ (୪୭୪-୪୭୫), ବୁଦ୍ଧ ଗୁପ୍ତ (୪୭୬-୪୯୫), ବୈନ୍ୟ ଗୁପ୍ତ (୪୯୫-୫୦୯), ଭାନୁଗୁପ୍ତ (୫୦୯-୫୧୧) ପ୍ରମୁଖ ଗୁପ୍ତବଂଶୀୟ ରାଜାମାନେ ରାଜତ୍ୱ କରୁଥିବା ଜଣାଯାଏ । ତେବେ ବୁଦ୍ଧଗୁପ୍ତଙ୍କ ପର୍ଯ୍ୟନ୍ତ ହିଁ ଗୁପ୍ତ ସାମ୍ରାଜ୍ୟର ସୁନାମ ଓ ସାର୍ବଭୌମତ୍ୱ ଉପଲବ୍ଧ ହୋଇଥିଲା । ତାଙ୍କ ପରେ ହୁନ୍‌ମାନଙ୍କ ଆକ୍ରମଣ ଫଳରେ ସେହି ସୁନାମ ଓ ପ୍ରତିପତ୍ତି ପ୍ରତିହତ ହେବାକୁ ଲାଗିଲା ।

## ହୁନ୍ ଆକ୍ରମଣ

ହୁନ୍‌ମାନେ କେନ୍ଦ୍ର-ଏସିଆ ଅନ୍ତର୍ଗତ ବିସ୍ତୃତ ପାହାଡ଼ିଆ ଅଞ୍ଚଳରେ ବାସ କରୁଥିବା ଏକ ଦୁର୍ଦ୍ଦାନ୍ତ ବର୍ବର ଜାତି । ସେମାନେ ପ୍ରଥମ ଥର ଭାରତ ଉପରେ ଆକ୍ରମଣ କରି ସ୍କନ୍ଦଗୁପ୍ତଙ୍କଦ୍ୱାରା ପରାଭୂତ ହେବା ପରେ ତାଙ୍କ ଆକ୍ର-ମଣ ଉଦ୍ୟମକୁ ଅବ୍ୟାହତ ରଖିଥିଲେ ସୁଦ୍ଧା ବୁଦ୍ଧଗୁପ୍ତଙ୍କ ପର୍ଯ୍ୟନ୍ତ ତାହା ବିଶେଷ ମାତ୍ରାରେ ଫଳବତୀ ହୋଇ ନଥିଲା । କିନ୍ତୁ ବୁଦ୍ଧଗୁପ୍ତଙ୍କ ପରେ ସେମାନେ ପଞ୍ଜାବର ସିଆଲକୋଟ ବାଟ ଦେଇ ଭାରତ ଭିତରକୁ ପଶି ଆସିଥିଲେ ।

---

* ସ୍କନ୍ଦଗୁପ୍ତ ( ବା ବିକ୍ରମାଦିତ୍ୟ ୨ୟ )ଙ୍କର କୃତିତ୍ୱ କାହାଣୀ ସୋମଦେବଙ୍କ ପ୍ରଣୀତ 'କଥାସରିତ ସାଗର' ଗ୍ରନ୍ଥରେ ବିସ୍ତୃତଭାବେ ବର୍ଣ୍ଣିତ ହୋଇଛି ।

ପଞ୍ଚମ ଶତାବ୍ଦୀର ଅନ୍ତିମ ଓ ଷଷ୍ଠ ଶତାବ୍ଦୀର ଆଦ୍ୟକାଳରେ ବଳିଷ୍ଠ ହୁନ୍‌ଶାସକ ତୋରମାନ ଓ ମିହିରଗୁଳଙ୍କ ଶାସନ କାଳରେ ସେମାନେ ଗୁପ୍ତ ସାମ୍ରାଜ୍ୟର ସମସ୍ତ ଅଞ୍ଚଳରେ ଆଧିପତ୍ୟ ବିସ୍ତାର କରିବାକୁ ସକ୍ଷମ ହୋଇ ପାରିଥିଲେ । ତେବେ ହୁନ୍‌ମାନଙ୍କ ଆଧିପତ୍ୟ ଦୀର୍ଘସ୍ଥାୟୀ ହୋଇ ପାରି ନଥିଲା । କେତେକ ପରିମାଣରେ ତାହା ଗୁପ୍ତବଂଶୀୟ ରାଜାମାନଙ୍କର ପ୍ରଭୁଭକ୍ତ ଜାଗିରଭୋଗୀ ଜମିଦାରମାନଙ୍କଦ୍ୱାରା ବ୍ୟାହତ ହୋଇଥିଲା ଏବଂ ଶେଷରେ ଷଷ୍ଠ ଶତାବ୍ଦୀର ପ୍ରଥମାର୍ଦ୍ଧରେ ହିଁ ଯଶୋଧର୍ମନ୍‌ଙ୍କଦ୍ୱାରା ହୁନ୍ ଆଧିପତ୍ୟ ଲୋପ ପାଇଥିଲା ।

ସମ୍ରାଟ୍ ଯଶୋଧର୍ମନ ଥିଲେ ଜଣେ ବଳିଷ୍ଠ ଶୈବ୍ୟ । ହିମାଳୟ ପାଦଦେଶଠାରୁ ବ୍ରହ୍ମପୁତ୍ର ଉପକୂଳ ଓ ଆରବସାଗର ସୀମାପର୍ଯ୍ୟନ୍ତ ସେ ଶାସନ କ୍ଷମତା ବିସ୍ତାର କରିଥିଲେ ଏବଂ ମହାପରାକ୍ରମଶାଳୀ ହୁନ୍ ନରପତି ମିହିରଗୁଳଙ୍କୁ ନିଜର ପଦାନତ କରିଥିଲେ । ତାଙ୍କ ରାଜତ୍ୱରେ ଗୁପ୍ତଯୁଗୀୟ ଆଦର୍ଶର ସ୍ପଷ୍ଟ ପ୍ରତିଫଳନ ଦୃଷ୍ଟିଗୋଚର ହୋଇଥିଲା ।

ଷଷ୍ଠ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପୁରାଣପ୍ରସିଦ୍ଧ ଅଶ୍ୱପତି ବଂଶୋଦ୍ଭବ ମୁଖରିମାନେ ଶାସନ କ୍ଷମତାକୁ ଆସିଥିଲେ । ଈଶାନ ବର୍ମନ ଥିଲେ ସେମାନଙ୍କ ମଧ୍ୟରେ ପ୍ରଥମ ଓ ପ୍ରଧାନ ନରପତି । ସେ ଖ୍ରୀ: ୫୫୪ରେ ମହାରାଜାଧିରାଜ ପଦରେ ଅଧିଷ୍ଠିତ ହୋଇ ଆନ୍ଧ୍ର, ଶୁଳିକା ଓ ଗଉଡ଼ମାନଙ୍କ ଉପରେ ପ୍ରତିପତ୍ତି ବିସ୍ତାର କରିଥିଲେ ।

ଈଶାନ ବର୍ମନଙ୍କ ପରେ ପୁରୁଷାନୁକ୍ରମେ ସର୍ବବର୍ମନ, ଅବନ୍ତୀବର୍ମନ ଓ ଗ୍ରହବର୍ମନ ନାମଧାରି ତିନିଜଣ ରାଜା ରାଜତ୍ୱ କରିଥିଲେ । ଗ୍ରହବର୍ମନ ପୁଷ୍ୟଭୂତି ପରିବାର ଅନ୍ତର୍ଗତ ପ୍ରଭାକରବର୍ଦ୍ଧନଙ୍କ କନ୍ୟା ରାଜ୍ୟଶ୍ରୀଙ୍କୁ ବିବାହ କରିଥିଲେ । ସେ ମାଳବର ରାଜା ଦେବଗୁପ୍ତଙ୍କଦ୍ୱାରା ନିହତ ହେବା ପରେ ତାଙ୍କ ଶାଳକ ରାଜ୍ୟବର୍ଦ୍ଧନ ଭଗିନୀଙ୍କ ବୈଧବ୍ୟର ପ୍ରତିଶୋଧ ନେଇଥିଲେ ଏବଂ ହୃତ ଗୌରବ ଫେରାଇ ଆଣିଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ସେ ମଧ୍ୟ ଗୌଡ଼ୀୟ ରାଜା ଶଶାଙ୍କଙ୍କ ହସ୍ତରେ ମୃତ୍ୟୁବରଣ କରିଥିଲେ । ଏହି ଐତିହାସିକ ସଙ୍କଟ ସମୟରେ ଖ୍ରୀ: ୬୦୬ରେ ରାଜ୍ୟଶ୍ରୀ ତଥା ରାଜ୍ୟବର୍ଦ୍ଧନଙ୍କ ଭ୍ରାତା ହର୍ଷବର୍ଦ୍ଧନ ରାଜପଦରେ ଅଭିଷିକ୍ତ ହୋଇଥିଲେ ।

## ହର୍ଷବର୍ଦ୍ଧନ

ରାଜକ୍ଷମତା ହାସଲ କରିବା ପରେ ହର୍ଷବର୍ଦ୍ଧନଙ୍କ ମୁଖ୍ୟ କର୍ତ୍ତବ୍ୟ ଥିଲା କାରାଗାରରୁ ଅନ୍ତର୍ହିତା * ଭଗିନୀ ରାଜ୍ୟଶ୍ରୀଙ୍କର ଅନୁସନ୍ଧାନ କରିବା ଓ ଭ୍ରାତା ରାଜ୍ୟବର୍ଦ୍ଧନଙ୍କ ହତ୍ୟାର ପ୍ରତିଶୋଧ ନେବା । ସେହି ଉଦ୍ଦେଶ୍ୟ ପୋଷଣ କରି ସେ ମଗଧର ରାଜା ମାଧବଗୁପ୍ତ ଓ କାମରୂପ ( ଆସାମ )ର ରାଜା ଭାସ୍କର ବର୍ମନଙ୍କ ସହିତ ମିତ୍ରତା ସ୍ଥାପନ କରିଥିଲେ ଏବଂ ନିଜ ଉଦ୍ୟମରେ ସଫଳ ହୋଇଥିଲେ । ସେ ସେନାବାହିନୀର ବିପୁଳ ସମ୍ପ୍ରସାରଣ କରି ଖ୍ରୀ: ୬୨୫ ବେଳକୁ ନିଜର ଅପରାଜେୟ କ୍ଷମତା ଯୋଗୁଁ ସାରା ଭାରତରେ ଶୃଙ୍ଖଳା ଖେଳାଇ ଦେଇଥିଲେ । ଖ୍ରୀ: ୬୪୧ ବେଳକୁ ଶିଳାଦିତ୍ୟ ** ( ହର୍ଷବର୍ଦ୍ଧନ ) କନୌଜ ବ୍ୟତୀତ ପଞ୍ଜାବ, ଅଉଧ, ପ୍ରୟାଗ, ମାଗଧ, ମାଳବ, ଏପରିକି ଓଡ଼ିଶାର ଗଞ୍ଜାମ ଅଞ୍ଚଳରେ ମଧ୍ୟ ଆଧିପତ୍ୟ ବିସ୍ତାର କରିଥିଲେ । ସୁଦୂର କାଶ୍ମୀର ଓ ସିନ୍ଧୁ ପ୍ରଦେଶର ଶାସକମାନେ ଶିଳାଦିତ୍ୟଙ୍କ ନାମ ଶ୍ରବଣ କରି ଭୟରେ ପ୍ରକମ୍ପିତ ହୋଇ ପଡୁଥିଲେ । ବାସ୍ତବିକ, ସେ ରାଜ୍ୟ ଶାସନ ଓ ସାମ୍ରାଜ୍ୟ ବିସ୍ତାର କ୍ଷେତ୍ରରେ ଗୁପ୍ତଯୁଗୀୟ ପରଂପରାର ପୁନରୁଦ୍ଧାର କରିଥିଲେ ଏବଂ ତାଙ୍କର ତିରୋଭାବ (ଖ୍ରୀ: ୬୪୭) ପରେ ଭାରତୀୟ ଇତିହାସରେ ଏକ ଯୁଗାନ୍ତର ସୃଷ୍ଟି ହୋଇଥିଲା ।

ଯୁଦ୍ଧାଭିଯାନ ଓ ସାମ୍ରାଜ୍ୟ ବିଜୟରେ ତାଙ୍କର ଅଧିକାଂଶ ସମୟ ଅତିବାହିତ ହୋଇଥିବା ଯୋଗୁଁ ହର୍ଷବର୍ଦ୍ଧନ ଏକ ସୁସ୍ଥ ଶାସନ ପରମ୍ପରା ପ୍ରତିଷ୍ଠା କରିବାପାଇଁ ସକ୍ଷମ ହୋଇପାରି ନଥିଲେ ସୁଦ୍ଧା ସେ ଥିଲେ ନିଃସନ୍ଦେହରେ ଜଣେ ସୁଶାସକ, ନିରପେକ୍ଷ, ନ୍ୟାୟପରାୟଣ, କର୍ତ୍ତବ୍ୟନିଷ୍ଠ, ବର୍ଣ୍ଣବିଦ୍ୱେଷଶୂନ୍ୟ ସହିଷ୍ଣୁ, ସ୍ୱାଧୀନ ଭାବାପନ୍ନ, କଳା ସାହିତ୍ୟାନୁରାଗୀ, ପ୍ରଜାପ୍ରିୟ ନରାଧୀଶ । ତେଣୁ ୟୁରୋପୀୟ, ଐତିହାସିକମାନେ ତାଙ୍କୁ 'ହିନ୍ଦୁ ଯୁଗର ଆକବର' ନାମରେ ଅଭିହିତ କରିଛନ୍ତି ।

---

* ଦେବଗୁପ୍ତ ରାଜ୍ୟଶ୍ରୀଙ୍କୁ ବନ୍ଦୀକରି କନୌଜ କାରାଗାରରେ ଆବଦ୍ଧ ରଖିଥିବା ସମୟରେ ସେ ସେଠାରୁ ଅନ୍ତର୍ହିତା ହୋଇଯାଇଥିଲେ ।

** ହର୍ଷବର୍ଦ୍ଧନ 'ଶିଳାଦିତ୍ୟ' ନାମରେ ପରିଚିତ ଥିଲେ ।

## * ଗୁପ୍ତଯୁଗୀୟ ଶାସନ ପ୍ରଣାଳୀ

ଆଲୋଚ୍ୟ ଯୁଗର ଶାସନପ୍ରଣାଳୀ ସମ୍ପର୍କରେ ବିଶେଷ ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ, ଚନ୍ଦ୍ରଗୁପ୍ତ (ପ୍ରଥମ)ଙ୍କ ପରଠାରୁ କେବଳ ରାଜତନ୍ତ୍ରର ହିଁ ବିକାଶ ସାଧନ ହୋଇଥିଲା ଏବଂ ସ୍ୱାୟତ୍ତ ଶାସନର ପ୍ରାଧାନ୍ୟ ହ୍ରାସ ଘଟିଥିଲା । ରାଜପଦ ନିମିତ୍ତ କେତେକ କ୍ଷେତ୍ରରେ ମନୋନୟନ ବା ନିର୍ବାଚନର ଦୃଷ୍ଟାନ୍ତ ରହିଥିଲେ ମଧ୍ୟ ରାଜତ୍ୱ ଥିଲା ମୁଖ୍ୟତଃ ବଂଶାନୁକ୍ରମିକ । ଏପରିକି କେତେକ ରାଜ୍ୟରେ ନାରୀମାନେ ମଧ୍ୟ ବଂଶାନୁକ୍ରମେ ଶାସନ କ୍ଷମତାର ଅଧିକାରିଣୀ ହୋଇଥିବା ଜଣାଯାଏ । ସେତେବେଳେ ରାଜାମାନଙ୍କୁ ନ୍ୟାୟର ପ୍ରତୀକ ତଥା ଦେବତାଙ୍କର ଅବତାରରୂପେ ପୂଜା କରାଯାଉଥିଲା । କେତେକ ଶିଳାଲେଖରେ ସମୁଦ୍ରଗୁପ୍ତ ଇନ୍ଦ୍ର, ବରୁଣ, କୁବେର, ଯମ ଏବଂ ସୃଷ୍ଟି ପାଳନକର୍ତ୍ତା ବିଷ୍ଣୁଙ୍କର ସମକକ୍ଷ ଥିଲେ ବୋଲି ଉଲ୍ଲେଖ ଅଛି ।

ଏହି ଯୁଗର ରାଜାମାନେ କଳା ଓ ସାହିତ୍ୟପ୍ରେମୀ ଥିଲେ । ତଥାପି ସେମାନେ ଥିଲେ ପ୍ରବଳ ପରାକ୍ରମଶାଳୀ ଯୋଦ୍ଧା ଏବଂ ବ୍ୟାଘ୍ର ଓ ସିଂହ ପ୍ରଭୃତି ହିଂସ୍ରଜନ୍ତୁ ସହିତ ଦ୍ୱନ୍ଦ୍ୱ ସଂଘର୍ଷରେ ପ୍ରବୃତ୍ତ ହୋଇ ନିଜ ସାହସିକତାର ପରୀକ୍ଷା କରୁଥିଲେ । ସେତେବେଳର ସେନାବାହିନୀ ସାଧାରଣତଃ ତିନିଭାଗରେ ବିଭକ୍ତ ଥିଲା, ଯଥା—ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ । ଯୁଦ୍ଧରେ ରଥର ବ୍ୟବହାର କମିଯାଇଥିଲା ।

ଶାସନଗତ ସୁବିଧା ଦୃଷ୍ଟିରୁ ରାଜ୍ୟକୁ ଭୁକ୍ତି, ଦେଶ, ରାଷ୍ଟ୍ର, ମଣ୍ଡଳ ପ୍ରଭୃତି କେତେକ ଏକକରେ ବିଭକ୍ତ କରାଯାଉଥିଲା । 'ଭାଗ' (ଶସ୍ୟୋତ୍ପାଦନର ଏକଷଷ୍ଠାଂଶ ) ଥିଲା ରାଜସ୍ୱର ମୁଖ୍ୟ ଅଙ୍ଗ ଏବଂ ତାହା ମୁଦ୍ରା ବା ପଦାର୍ଥ ଆକାରରେ ଗୃହୀତ ହେଉଥିଲା । ଏହା ବ୍ୟତୀତ ଖଣିଜ ପଦାର୍ଥ ଓ ସାମନ୍ତ ରାଜାମାନଙ୍କ ଦେୟରେ ମଧ୍ୟ ରାଜକୋଷ ବୃଦ୍ଧି ପାଉଥିଲା । ସର୍ବୋପରି ଜରୁରୀ ସମୟରେ ଅତିରିକ୍ତ କର ମଧ୍ୟ ଧାର୍ଯ୍ୟ କରାଯାଉଥିଲା । ତେବେ କର-ଭାର ଦୁର୍ବହ ହୋଇ ପଡ଼ୁ ନଥିଲା କିମ୍ବା ରାଜାମାନେ ଅର୍ଥଲୋଲୁପ ନ ଥିଲେ ।

---

* ରାଜନୈତିକ ଦୃଷ୍ଟିରୁ ଖ୍ରୀ: ୪୯୫ ପରେ ଗୁପ୍ତଯୁଗର କୌଣସି ପ୍ରାଧାନ୍ୟ ନଥିଲେ ମଧ୍ୟ ଶାସନ ପ୍ରଣାଳୀ, ସାମାଜିକ ଅବସ୍ଥା ତଥା ଧର୍ମ, କଳା ଓ ସାହିତ୍ୟର ସମନ୍ୱିତ ବିକାଶ ଦୃଷ୍ଟିରୁ ହର୍ଷବର୍ଦ୍ଧନଙ୍କ ଶାସନକାଳର ଶେଷ ପର୍ଯ୍ୟନ୍ତକୁ 'ଗୁପ୍ତଯୁଗ' ଆଖ୍ୟା ଦିଆଯାଇଛି ।

ସ୍ୱୟଂ ରାଜାମାନେ ହିଁ ଥିଲେ ନ୍ୟାୟବିଚାରକ । ତେବେ ଗ୍ରାମାଞ୍ଚଳରେ ଦାୟିତ୍ୱସମ୍ପନ୍ନ ରାଜକର୍ମଚାରୀମାନଙ୍କ ଦ୍ୱାରା ନ୍ୟାୟ ଶାସନ ପରିଚାଳିତ ହେଉଥିଲା । ସେହି ସମୟରେ ହିଁ କେତେକ ଅଞ୍ଚଳରେ ନିର୍ଣ୍ଣାୟକ ମଣ୍ଡଳ ପ୍ରଥା (Jury System) ପ୍ରବର୍ତ୍ତିତ ହୋଇଥିବା ଜଣାଯାଏ ।

## ସାମାଜିକ ଅବସ୍ଥା

ଏହି ସମୟରେ ଜାତିଭେଦ ପ୍ରଥା ଶିଥିଳ ହୋଇ ପଡ଼ିଥିଲା । ସମାଜରେ ବହୁସଂଖ୍ୟାରେ ଅସବର୍ଣ୍ଣ ବିବାହ ଦେଖା ଦେଇଥିଲା । ଏହି ଯୁଗରେ ବ୍ରାହ୍ମଣମାନେ ସେନାଧ୍ୟକ୍ଷ ନିଯୁକ୍ତ ହେବା ଓ କ୍ଷତ୍ରିୟମାନେ ବାଣିଜ୍ୟ ବ୍ୟବସାୟ କରିବା ମଧ୍ୟ ଦେଖିବାକୁ ମିଳିଥିଲା । ଏପରିକି କେତେକ ବୈଶ୍ୟ ଓ ଶୂଦ୍ର ମଧ୍ୟ ଶାସନ ଦାୟିତ୍ୱ ନିର୍ବାହ କରିଥିଲେ । ତେବେ ଆଲୋଚ୍ୟ କାଳରେ 'ଚଣ୍ଡାଳ' ନାମକ ଏକ ନୀଚ ଜାତି ସମାଜରେ ଘୃଣ୍ୟ ହେଉଥିଲେ ବୋଲି ଜଣାଯାଏ ।

ଚନ୍ଦ୍ରଗୁପ୍ତ (ଦ୍ୱିତୀୟ)ଙ୍କ ସମୟରେ ଭାରତ ପର୍ଯ୍ୟଟନରେ ଆସିଥିବା ଚୀନ ପରିବ୍ରାଜକ ଫାହିୟାନଙ୍କ ବିବରଣୀରୁ ଜଣାଯାଏ ଯେ, ସେତେବେଳେ ଲୋକମାନେ ଖୁବ୍ ଆନନ୍ଦରେ ଜୀବନଯାପନ କରୁଥିଲେ । ବିଶେଷ ପରିମାଣରେ ମାଲିମକଦ୍ଦମା ହେଉ ନ ଥିଲା । ରାଜାମାନେ ଶିରଚ୍ଛେଦ ବା ନିର୍ମମ ଶାରୀରିକ ଦଣ୍ଡ ଆଦେଶ ଦେଉ ନ ଥିଲେ । ଲୋକମାନେ ଥିଲେ ଧର୍ମପରାୟଣ । ସେମାନେ ପର୍ଯ୍ୟଟକମାନଙ୍କ ପାଇଁ ଧର୍ମଶାଳା ବ୍ୟବସ୍ଥା କରିଥିଲେ ଏବଂ ତାଙ୍କ ଲାଗି ବିନା ଦେୟରେ ଭୋଜନ ଓ ଶୟନର ସୁବିଧା କରାଇ ଦେଉଥିଲେ । ଗରିବ ଓ ନିରାଶ୍ରିତମାନଙ୍କୁ ସମସ୍ତପ୍ରକାର ସାହାଯ୍ୟ ମିଳୁଥିଲା । ଚିକିତ୍ସକମାନେ ରୋଗୀର ସେବାରେ ସଦା ତତ୍ପର ଥିଲେ ।

ସେହି ସମାଜରେ ବାଧ୍ୟତାମୂଳକ ଶ୍ରମ ବିନିଯୋଗ ବା 'ବିଷ୍ଟି' ସାଧାରଣ ଭାବରେ ପ୍ରଚଳିତ ଥିଲେ ମଧ୍ୟ ଶ୍ରମିକମାନଙ୍କଠାରୁ ବିନା ପାରିଶ୍ରମିକରେ କାର୍ଯ୍ୟ ଆଦାୟ କରାଯାଉ ନ ଥିଲା । ତେବେ ସ୍ଥଳ ବିଶେଷରେ କ୍ରୀତଦାସ ପ୍ରଥାର ପ୍ରଚଳନ ଅବ୍ୟାହତ ରହିଥିଲା ।

ତତ୍କାଳୀନ ସମାଜରେ ନାରୀମାନେ ଖୁବ୍ ଉଚ୍ଚସ୍ଥାନ ଅଧିକାର କରିଥିଲେ । ଏପରିକି କାଶ୍ମୀର, ଓଡ଼ିଶା ଓ ଆନ୍ଧ୍ର ପ୍ରଭୃତି ଅଞ୍ଚଳରେ ରାଜକନ୍ୟାମାନେ ବଂଶାନୁକ୍ରମେ ଶାସନଦାୟିତ୍ୱ ଗ୍ରହଣ କରିଥିବା ମଧ୍ୟ ଜଣାଯାଏ ।

ସେହି ସମାଜରେ ନାରୀ ଆଉ ଅସୂର୍ଯ୍ୟଂପଶ୍ୟା ହୋଇ ରହି ନ ଥିଲା । ସେତେବେଳେ ସାଧାରଣତଃ ସ୍ୱୟମ୍ବର ବିବାହ ପ୍ରଥା ପ୍ରଚଳିତ ଥିଲା । ନାରୀ ସ୍ୱଇଚ୍ଛାରେ ତାର ମନୋମତ ପୁରୁଷକୁ ପୁଷ୍ପମାଲ୍ୟ ପ୍ରଦାନପୂର୍ବକ ପତିରୂପେ ବରଣ କରୁଥିଲା । ତେବେ ବହୁଦାର ଗ୍ରହଣ ତାତ୍କାଳିକ ଆଭିଜାତ୍ୟର ଏକ ଅଙ୍ଗ ଥିଲା । ଆଲୋଚ୍ୟ ଯୁଗର ଶେଷାବସ୍ଥାରେ ସତୀଦାହ ପ୍ରଥା ପ୍ରଥମେ ପ୍ରବର୍ତ୍ତିତ ହୋଇଥିବା ଜଣାଯାଏ ।

ତତ୍କାଳୀନ ଭାରତର ଲୋକ-ଚରିତ୍ର, ବେଶଭୂଷା ଓ ସାମାଜିକ ଜୀବନ ସମ୍ବନ୍ଧରେ ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଏ ଯେ, ସେତେବେଳେ ଲୋକମାନେ ଦୃଢ଼ଚରିତ୍ର ଥିଲେ । ପୁଣ୍ୟଶୀଳ, ଦୃଢ଼ପ୍ରତିଜ୍ଞ ଓ ମିତବ୍ୟୟୀ ଥିଲେ । ସେମାନେ ଶଠ, ଭଣ୍ଡ ବା ବଞ୍ଚକ ନ ଥିଲେ । ସେମାନଙ୍କର ପୋଷାକ ପରିଚ୍ଛଦ ଥିଲା ଅତି ସାଧାରଣ ଧରଣର । ଉତ୍ତର ଭାରତର କେତେକ ଶୀତପ୍ରଧାନ ଅଞ୍ଚଳ ବ୍ୟତୀତ ଅନ୍ୟତ୍ର ସିଲେଇ ପୋଷାକର ବ୍ୟବହାର ଦୃଷ୍ଟିଗୋଚର ହେଉ ନ ଥିଲା । ଦୁଗ୍ଧ, ଘୃତ ଓ ନବାତ ଥିଲା ଲୋକଙ୍କର ପ୍ରିୟ ଓ ପ୍ରଧାନ ଖାଦ୍ୟ; ମାଛ, ମାଂସ, ପିଆଜ ଓ ରସୁଣ କ୍ୱଚିତ ବ୍ୟବହୃତ ହେଉଥିଲା ଏବଂ ଗୋମାଂସ ଭକ୍ଷଣ ନିଷିଦ୍ଧ ଥିଲା । ସେତେବେଳେ ମୁଖ୍ୟତଃ ମୃଣ୍ମୟ ପାତ୍ରର ଆସବାବ ସାମଗ୍ରୀ ପ୍ରଚଳିତ ଥିଲେ ମଧ୍ୟ କେତେକ ଗୃହରେ ପିତଳନିର୍ମିତ ବାସନକୁସନ ଦେଖିବାକୁ ମିଳୁଥିଲା ।

## ଧର୍ମ, ସାହିତ୍ୟ ଓ ସ୍ଥାପତ୍ୟକଳା

ଗୁପ୍ତ ଯୁଗୀୟ ଧାର୍ମିକ ଜୀବନର ଉଲ୍ଲେଖଯୋଗ୍ୟ ବିଭବ ହେଉଛି 'ଭକ୍ତିବାଦ' । ସେହି ସମାଜରେ ଜୈନ, ବୌଦ୍ଧ, ଶୈବ ଓ ବୈଷ୍ଣବ ଧର୍ମର ପ୍ରଭାବ ଅନୁଭୂତ ହେଉଥିଲେ ସୁଦ୍ଧା ସେତେବେଳେ ମିମାଂଶା, ସାଂଖ୍ୟ, ବେଦାନ୍ତ, ଯୋଗ, ନ୍ୟାୟ ଓ ବୈଶେଷିକ ଆଦି ହିନ୍ଦୁଧର୍ମର ଷଡ଼ବିଧ ଦର୍ଶନର ଅଭ୍ୟୁଦୟ ଘଟିଥିଲା । ଗୁପ୍ତଯୁଗର ଆଦ୍ୟାବସ୍ଥାରେ ଶିବ ଓ ବିଷ୍ଣୁଙ୍କର ଉପାସନା ଉପରେ ପ୍ରାଧାନ୍ୟ ଦିଆଯାଉଥିଲା ଏବଂ ସମୁଦ୍ରଗୁପ୍ତ ବୈଦିକ ରୀତିର ପୁନଃ ପ୍ରବର୍ତ୍ତନ ଦିଗରେ ପୂର୍ଣ୍ଣ ଜନସମର୍ଥନ ପାଇଥିଲେ ।

ତେବେ ଧର୍ମକ୍ଷେତ୍ରରେ ଗୁପ୍ତଯୁଗ ଥିଲା ଏକ ଚରମ ଉନ୍ନତି ଓ ବିକାଶର କାଳ, କିନ୍ତୁ ନବଜାଗରଣର ଯୁଗ ନୁହେଁ । ଏହି ସମୟରେ ପ୍ରାକ୍‌କାଳୀନ ନବଜାଗରଣ ସଞ୍ଜୀବିତ ହୋଇ ଶୀର୍ଷସ୍ତରରେ ଉପନୀତ ହୋଇଥିଲା ଏବଂ

ବିଭିନ୍ନ ସୂତ୍ର, ତନ୍ତ୍ର ଓ ପୁରାଣ ମାଧ୍ୟମରେ ହିନ୍ଦୁଧର୍ମର ଅଭ୍ୟୁତ୍ଥାନ ଓ ପ୍ରସାର ଘଟିଥିଲା । ପୁରାଣ ଗ୍ରନ୍ଥଗୁଡ଼ିକ ଥିଲା ସେତେବେଳର ଶ୍ରେଷ୍ଠ ଜନପ୍ରିୟ ସାହିତ୍ୟ । ଅନେକ ବିଶିଷ୍ଟ ସମାଲୋଚକଙ୍କ ମତରେ—

"Indeed, the Epics and the Puranas are the real Bible of the common people, whether literate or illiterate and they are the source of half the vernacular literature." *

ଅର୍ଥାତ୍, ପୁରାଣଗୁଡ଼ିକ ଶିକ୍ଷିତ ଓ ଅଶିକ୍ଷିତ ସମସ୍ତ ଜନତାର 'ବାଇବେଲ୍' ସଦୃଶ ଥିଲା, ଏବଂ ତାହା ଥିଲା ଅର୍ଦ୍ଧେକ ସ୍ୱଦେଶୀ ସାହିତ୍ୟର ମୂଳ ଉତ୍ସ ।

ବିଭିନ୍ନ ପୁରାଣ ବ୍ୟତୀତ ଆଲୋଚ୍ୟଯୁଗରେ କାବ୍ୟ ନାଟକାଦି ଅନେକ ସୁସାହିତ୍ୟ ମଧ୍ୟ ସୃଷ୍ଟି ହୋଇଥିଲା । ସମୁଦ୍ରଗୁପ୍ତ ଥିଲେ ଜଣେ ମହାନ୍ ସାହିତ୍ୟପ୍ରେମୀ । ତାଙ୍କ ପରେ ବିକ୍ରମାଦିତ୍ୟଙ୍କ ପୃଷ୍ଠପୋଷକତା ଫଳରେ କାଳିଦାସ, ବରାହମିହିର, ବୀରସେନ, ଭାରବୀ ପ୍ରମୁଖ ବିଖ୍ୟାତ କବି ଓ ପଣ୍ଡିତଙ୍କ କୃତିତ୍ୱରୁ ଉଚ୍ଚ କୋଟୀର ସାହିତ୍ୟ ବିକାଶ ଲାଭ କରି ପାରିଥିଲା । ସମ୍ରାଟ ହର୍ଷଙ୍କର † 'ରତ୍ନାବଳୀ' 'ପ୍ରିୟଦର୍ଶିକା' ଓ 'ନାଗାନନ୍ଦ', ଭରତ ମୁନିଙ୍କର 'ନାଟ୍ୟଶାସ୍ତ୍ର', ବିଷ୍ଣୁଶର୍ମାଙ୍କର 'ପଞ୍ଚତନ୍ତ୍ର', ଶୂଦ୍ରକଙ୍କ 'ମୃଚ୍ଛକଟିକ', ବିଶାଖାଦତ୍ତଙ୍କ 'ମୁଦ୍ରାରାକ୍ଷସ' ଏବଂ 'ମହାଭାରତ'ର ପରିମାର୍ଜିତ ସଂସ୍କରଣ ଏହି ଯୁଗର ଦାନ ।

ଶିଳ୍ପ, କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ମଧ୍ୟ ଏହି ଯୁଗରେ ଉଲ୍ଲେଖଯୋଗ୍ୟ ଉନ୍ନତି ଦେଖା ଦେଇଥିଲା । ଯୁଗ ଯୁଗ ଧରି କଳାର ବିକାଶ ନିମିତ୍ତ ଯେଉଁ ସାଧନା ଚାଲିଥିଲା, ତାହା ଏହି ଗୁପ୍ତଯୁଗରେ ପୂର୍ଣ୍ଣମାତ୍ରାରେ ରୂପାୟିତ ହୋଇଥିଲା । କଳା ପାଇଁ ଗୁପ୍ତଯୁଗ ଆଉ ନଥିଲା ଏକ ପରୀକ୍ଷା, ନିରୀକ୍ଷାର

* Farquhar ଙ୍କର "An Outline of the Religious Literature of India" ପୁସ୍ତକର ପୃ. ୧୩୬ ଦ୍ରଷ୍ଟବ୍ୟ ।

† ଅବଶ୍ୟ ହର୍ଷଙ୍କର ରଚନାବଳୀ ତାଙ୍କ ଦ୍ୱାରା ପ୍ରଣୀତ ନହୋଇ ତାଙ୍କ ନାମରେ ଅନ୍ୟ ଜଣେ ପଣ୍ଡିତଙ୍କ ଦ୍ୱାରା ରଚିତ ବୋଲି କେତେକ ମତ ବ୍ୟକ୍ତ କରନ୍ତି; କିନ୍ତୁ ଏହି ମତ ପ୍ରମାଣସିଦ୍ଧ ନୁହେଁ ।

ସମୟ; ସେତେବେଳକୁ କଳାକୃତିର ନିର୍ଦ୍ଦିଷ୍ଟ ଆକାର, ପ୍ରକାର, ଆଦର୍ଶ ଓ ସୌନ୍ଦର୍ଯ୍ୟବୋଧ ପ୍ରତିଷ୍ଠା ଲାଭ କରି ସାରିଥିଲା । ଏହି ସମୟରେ ବିଷ୍ଣୁ, ଶିବ ଓ ବୁଦ୍ଧଦେବଙ୍କ ମୂର୍ତ୍ତିମାନ ବହୁ ସଂଖ୍ୟାରେ ନିର୍ମିତ ହୋଇ ବଣ୍ଟି ହେଉଥିଲା ଏବଂ ଜାଭା, ସୁମାତ୍ରା, ମାଳୟ ପ୍ରଭୃତି ଦେଶରେ ଗୁପ୍ତଯୁଗୀୟ କଳାର ପ୍ରଭାବ ପଡ଼ିଥିଲା । ନାଳନ୍ଦାର ଅଶୀ ଫୁଟ ଦୈର୍ଘ୍ୟ ବିଶିଷ୍ଟ ତାମ୍ରନିର୍ମିତ ବିରାଟ ବୁଦ୍ଧମୂର୍ତ୍ତି, ଅଜନ୍ତାର ଗୁମ୍ଫାଗୁଡ଼ିକର କାନ୍ଥରେ ଅଙ୍କିତ ଚିତ୍ରାବଳୀ, ସାର୍ଥ ଓ ଦେବଗଡ଼ର ସୁନ୍ଦର ପ୍ରସ୍ତର ମନ୍ଦିର ଇତ୍ୟାଦି ଏହି ଗୁପ୍ତଯୁଗର ଦାନ । ଏହା ବ୍ୟତୀତ, ସେହି ସମୟରେ ପ୍ରଚଳିତ ସ୍ୱର୍ଣ୍ଣ ମୁଦ୍ରାଗୁଡ଼ିକରେ ମଧ୍ୟ କଳାର ପରାକାଷ୍ଠା ପରିଲକ୍ଷିତ ହୁଏ ।

## ଜାତୀୟତାବାଦର ଅଭ୍ୟୁଦୟ

ସର୍ବୋପରି, ଜାତୀୟ ଭାବନାର ଅଭ୍ୟୁଦୟ ଏହି ଯୁଗର ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଅବଦାନ । ଏଥି ପୂର୍ବରୁ ଭାରତୀୟମାନେ ବିଭିନ୍ନ ବିଦେଶୀ ରାଜ୍ୟ ସହିତ ବାଣିଜ୍ୟିକ ସମ୍ପର୍କ ଓ ବନ୍ଧୁତା ସ୍ଥାପନ କରିବାଦ୍ୱାରା ସଂକୀର୍ଣ୍ଣ ଜାତୀୟତାକୁ ବିସ୍ମୃତ ହୋଇ ଯାଇଥିଲେ । କିନ୍ତୁ ଯେତେବେଳେ କୁଶାନ୍, ହୁନ୍ ପ୍ରଭୃତି ବିଦେଶୀ ଆକ୍ରମଣକାରୀ ଭାରତ ଭିତରକୁ ପଶି ଆସି ଶାସନ କ୍ଷମତା ଦଖଲ କରିବାକୁ ବସିଲେ, ସେତେବେଳେ ଭାରତବାସୀଙ୍କ ମନରେ ଘୋର ପ୍ରତିକ୍ରିୟା ସୃଷ୍ଟି ହେଲା ଏବଂ ତାହା ଭାରତୀୟ ଇତିହାସରେ ଜାତୀୟ ଚେତନାର ବୀଜ ରୋପଣ କରିଥିଲା । ପଣ୍ଡିତ ନେହରୁଙ୍କ ଭାଷାରେ :

"The reaction was essentially a nationalist one, with the strength as well as the narrowness of nationalism. That mixture of religion and philosophy, history and tradition, custom and social structure, which in its wide fold included almost every aspect of the life of India and which might be called Brahminism or (to use a later word) Hinduism, became the symbol of nationalism". *

---

* Jawaharal Nehruଙ୍କ "The Discovery of India" ଗ୍ରନ୍ଥର (୧୯୬୦ ସଂସ୍କରଣ) ୧୨୨ ପୃଷ୍ଠା ଦ୍ରଷ୍ଟବ୍ୟ ।

ଅର୍ଥାତ୍, ସେହି ପ୍ରତିବିମ୍ବ ଥିଲା ଦେଶାତ୍ମବୋଧ ମୂଳକ । ସେଥିରେ ପୂରି ରହିଥିଲା ଜାତୀୟତାବାଦର ସମସ୍ତ ଶକ୍ତି ଓ ସଂକୀର୍ଣ୍ଣତା । ଧର୍ମ ଓ ଦର୍ଶନ, ଇତିହାସ ଓ ପରଂପରା, ଚଳଣି ଓ ସମାଜ ଗଠନର ସେହି ସମ୍ମିଶ୍ରଣରେ ବିକ୍ଷିପ୍ତ ହୋଇ ରହିଥିଲା ଭାରତୀୟ ଜୀବନର ସମସ୍ତ ବିଭବ । ତାହାକୁ ବ୍ରାହ୍ମଧର୍ମ ବା ହିନ୍ଦୁବାଦ ଆଖ୍ୟା ଦିଆଯାଇପାରେ ଏବଂ ତାହା ଥିଲା ଜାତୀୟତାବାଦର ପ୍ରତୀକ ।

ସଂକ୍ଷେପରେ ପ୍ରକାଶ କଲେ, ଏହି ଯୁଗରେ, ଶାସନ ପ୍ରଣାଳୀ ଓ ରାଜନୀତି, ଧର୍ମ ଓ ଦର୍ଶନ, ସାହିତ୍ୟ ଓ କଳା ସମସ୍ତ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଅଗ୍ରଗତି ସାଧିତ ହୋଇଥିଲା । ତେଣୁ ଐତିହାସିକମାନେ ଯଥାର୍ଥରେ ଗୁପ୍ତଯୁଗକୁ 'ସୁବର୍ଣ୍ଣଯୁଗ' ଆଖ୍ୟା ଦେଇଛନ୍ତି ।

---

## ନବମ ପର୍ଯ୍ୟାୟ

# ରାଜପୁତ ଯୁଗ

ହର୍ଷବର୍ଦ୍ଧନଙ୍କ ତିରୋଭାବ କାଳଠାରୁ ଆରମ୍ଭକରି ମୁସଲମାନମାନଙ୍କ ଆଧିପତ୍ୟ ବିସ୍ତାର ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀ ସମୟ ଥିଲା ଭାରତର ଇତିହାସରେ ଏକ ପରିବର୍ତ୍ତନର ଯୁଗ । ସେହି ସମୟ ମଧ୍ୟରେ ବହୁ ବିଦେଶୀ ଆକ୍ରମଣକାରୀ ଭାରତର ରାଜନୀତି କ୍ଷେତ୍ରରେ ପ୍ରବେଶ କରିଥିଲେ ଏବଂ ପୁରାତନ ଶାସନ-ପୀଠଗୁଡ଼ିକର ନୂତନ ରୂପ ପରିପ୍ରକାଶ ପାଇଥିଲା । ଆଲୋଚ୍ୟ ଯୁଗର ଉଲ୍ଲେଖଯୋଗ୍ୟ ଅବଦାନ ହେଉଛି ରାଜପୁତ ବଂଶର ଅଭ୍ୟୁଦୟ । ତେଣୁ ବିଶିଷ୍ଟ ଐତିହାସିକ ଭିନ୍‌ସେଣ୍ଟ ସ୍ମିଥ୍ ଏହି ଯୁଗକୁ ରାଜପୁତ ଯୁଗ * ଆଖ୍ୟା ଦେଇଥିନ୍ତି ।

ରାଜପୁତମାନଙ୍କର ବଂଶପରମ୍ପରା ସମ୍ପର୍କରେ ଐତିହାସିକମାନେ ଭିନ୍ନ ଭିନ୍ନ ମତ ପୋଷଣ କରନ୍ତି । କେତେକଙ୍କ ମତରେ, ସେମାନେ କ୍ଷତ୍ରିୟ-ମାନଙ୍କର ବଂଶଧର । ଯେହେତୁ ସେତେବେଳେ ଶୁଙ୍ଗ, କାଣ୍ୱ ପ୍ରଭୃତି ବ୍ରାହ୍ମଣ ରାଜପରିବାର ସହିତ କ୍ଷତ୍ରିୟମାନଙ୍କର ବୈବାହିକ ସମ୍ବନ୍ଧ ସ୍ଥାପିତ ହୋଇଥିଲା ଏବଂ ସେମାନଙ୍କ ମଧ୍ୟରେ ଜାତିଆଣ ଭାବ ଉଗ୍ର ଆକାର ଧାରଣ କରି ନ ଥିଲା, ସେହି ଅସବର୍ଣ୍ଣ ବିବାହ ଫଳରେ ଉତ୍ପତ୍ତି ଲାଭ କରିଥିବା ସନ୍ତାନ ସନ୍ତତିମାନେ ରାଜପୁତ ବଂଶର ସୂତ୍ରଧର ହୋଇଥିଲେ । ଅନ୍ୟ କେତେକଙ୍କ ମତରେ, ରାଜପୁତମାନେ (ବିଶେଷତଃ ରାଷ୍ଟ୍ରକୂଟ, ରାଠୋର ପ୍ରଭୃତି) ଏକ ସ୍ୱଦେଶଜାତ ଜାତି । କିନ୍ତୁ ବିପକ୍ଷୀୟଙ୍କ ମତରେ ସେମାନେ (ବିଶେଷତଃ, ପ୍ରତିହାର, ଚୌହାନ, ଚାଲୁକ୍ୟ ପ୍ରଭୃତି) ହୁନ୍, ଗୁର୍ଜର, ମୈତ୍ରକ ଆଦି ବିଦେଶୀମାନଙ୍କର ଉତ୍ତରାଧିକାରୀ । ସେ ଯାହାହେଉ, ଆଲୋଚ୍ୟ କାଳରେ ଭାରତର ଉଭୟ ଉତ୍ତର ଓ ଦକ୍ଷିଣାଞ୍ଚଳରେ ରାଜପୁତମାନେ ଶାସନ କ୍ଷମତା ବିସ୍ତାର କରିଥିଲେ ।

* 'Hinduism Through The Ages' ପୁସ୍ତକର ପୃଷ୍ଠା ୩୧ ଦ୍ରଷ୍ଟବ୍ୟ ।

## ହର୍ଷୋତ୍ତର ଶାସନାବସ୍ଥା

ହର୍ଷବର୍ଦ୍ଧନଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ଅବସାନ ପରେ ମଧ୍ୟଭାରତର ବିଭିନ୍ନ ଅଞ୍ଚଳରେ ରାଜନୈତିକ ଅସ୍ଥିରତା ଓ ବିଶୃଙ୍ଖଳା ଦେଖାଦେଇଥିଲା । ସେତେବେଳେ ଧରସେନ (ହର୍ଷବର୍ଦ୍ଧନଙ୍କ ଦୌହିତ୍ର) କନୌଜର ସୁନାମ ଓ ପ୍ରତିଷ୍ଠାକୁ ଅକ୍ଷୁର୍ଣ୍ଣ ରଖିବା ନିମନ୍ତେ ବ୍ୟର୍ଥ ପ୍ରୟାସ କରିଥିଲେ । ତେବେ ଖ୍ରୀ: ୬୭୨ ବେଳକୁ ମଧ୍ୟଦେଶ (ଗଙ୍ଗା ଉପତ୍ୟକା ଅଞ୍ଚଳ)ରେ ହର୍ଷବର୍ଦ୍ଧନଙ୍କ ମିତ୍ର ମାଧବ ଗୁପ୍ତଙ୍କର ପୁତ୍ର ଆଦିତ୍ୟସେନ ରାଜତ୍ୱ କରୁଥିଲେ ଏବଂ ଅଶ୍ୱମେଧ ଯଜ୍ଞାନୁଷ୍ଠାନ ଓ ବିଭିନ୍ନ ବିଶିଷ୍ଟ ରାଜବଂଶ ସହିତ ବୈବାହିକ ସମ୍ବନ୍ଧ ସ୍ଥାପନ ଦ୍ୱାରା ସେ ତାଙ୍କର ପ୍ରତିପତ୍ତି ବିସ୍ତାର କରିଥିଲେ ।

ଆଦିତ୍ୟସେନଙ୍କ ପରେ ଯଥାକ୍ରମେ ଦେବଗୁପ୍ତ, ବିଷ୍ଣୁଗୁପ୍ତ ଓ ଜୀବିତଗୁପ୍ତ ରାଜ୍ୟ ସିଂହାସନ ଆରୋହଣ କରିଥିଲେ । କିନ୍ତୁ ତାଂକ ପରେ ଅଷ୍ଟମ ଶତାବ୍ଦୀର ଆଦ୍ୟ ଭାଗରେ ମଗଧରେ ଜଣେ ଗୌଡ଼ବଂଶୀୟ ରାଜା ରାଜକ୍ଷମତା ହାସଲ କଲେ । ଅବଶ୍ୟ ଗୌଡ଼ ବଂଶୀୟ ରାଜାମାନଙ୍କୁ ଅଖଣ୍ଡ କ୍ଷମତା ବିସ୍ତାର କରିବା ସୁଯୋଗ ମିଳି ନ ଥିଲା । ଖ୍ରୀ ୭୩୦ ବେଳକୁ ଚନ୍ଦ୍ରବଂଶୀୟ ରାଜା ଯଶୋବର୍ମନ ଗୌଡ଼ବଂଶୀୟ ରାଜାଙ୍କୁ ଯୁଦ୍ଧରେ ନିହତ କରି କନୌଜର ହୃତ ଗୌରବ ଫେରାଇ ଆଣିଥିଲେ ଏବଂ ବଙ୍ଗୀୟ ରାଜାମାନଙ୍କୁ ପଦାନତ କରି ନର୍ମଦା ଉପକୂଳ ପର୍ଯ୍ୟନ୍ତ ବିଜୟାଭିଯାନ ଚଳାଇ-ଥିଲେ । ହର୍ଷଙ୍କ ଭଳି ସେ ମଧ୍ୟ ଚୀନ ସାମ୍ରାଜ୍ୟ ସହିତ କୂଟନୈତିକ ସମ୍ପର୍କ ସ୍ଥାପନ କରିଥିଲେ ଏବଂ ଭବଭୂତି ଓ ବାକ୍‌ପତିରାଜ ପ୍ରମୁଖ କବି ଓ ପଣ୍ଡିତ-ମାନଙ୍କୁ ପ୍ରୋତ୍ସାହିତ କରି ସୁସାହିତ୍ୟର ବିକାଶ ପ୍ରତି ଧ୍ୟାନ ଦେଇଥିଲେ । ପରିଶେଷରେ ସେ କାଶ୍ମୀରର ପରାକ୍ରମଶାଳୀ କର୍କୋଟ ବଂଶୀୟ ରାଜା ଲଳିତାଦିତ୍ୟଙ୍କଦ୍ୱାରା ପରାଜିତ ହୋଇଥିଲେ ।

ଲଳିତାଦିତ୍ୟଙ୍କ ପରେ ତାଂକ ପୌତ୍ର ଜୟାପିଡ଼ ବିନୟାଦିତ୍ୟ ରାଜତ୍ୱ କରି-ଥିଲେ । କ୍ଷୀରସ୍ୱାମୀ, ଉଦ୍‌ଭଟ, ଦାମୋଦରଗୁପ୍ତ, ବାମନ ପ୍ରମୁଖ ପଣ୍ଡିତଗଣ ତାଂକ ଦରବାର ମଣ୍ଡନ କରିଥିଲେ । ଖ୍ରୀ: ୮୫୫ ବେଳକୁ ଉତ୍ପଳ ବଂଶୀୟ ରାଜା ଅବନ୍ତୀବର୍ମନ ସିଂହାସନ ଆରୋହଣ କରିଥିଲେ । ଅବନ୍ତୀବର୍ମନଙ୍କ ପୁତ୍ର ଶଙ୍କରବର୍ମନ ଉତ୍କଟ ପ୍ରଜାପୀଡ଼କ ହେବାରୁ ପ୍ରଜାବୃନ୍ଦ ତାଂକ ପରିବର୍ତ୍ତେ ଯଶସ୍କର ନାମକ ଜନୈକ ବ୍ୟକ୍ତିଙ୍କୁ ରାଜପଦ ଅର୍ପଣ କରିଥିଲେ ।

ସେହିପରି ଯଶୋବର୍ମନଂକ ପରେ ବଙ୍ଗରେ ତଥାକଥିତ ସୂର୍ଯ୍ୟା-ବଂଶୋଦ୍ଭବ ରାଜା ଗୋପାଳ ବିଖ୍ୟାତ 'ପାଳ' ବଂଶର ପ୍ରତିଷ୍ଠା କରିଥିଲେ ଏବଂ ତାଂକ ରାଜତ୍ୱକାଳରେ ସେଠାରେ ଅଭୂତପୂର୍ବ ଉନ୍ନତି ପରିଲକ୍ଷିତ ହୋଇଥିଲା । ସେ 'ବଙ୍ଗପତି' ଓ 'ଗୌଡ଼େଶ୍ୱର' ନାମରେ ପରିଚିତ ଥିଲେ ଏବଂ ଉଭୟ ପୂର୍ବ ଓ ପଶ୍ଚିମ ବଙ୍ଗରେ ପ୍ରତିପତ୍ତି ବିସ୍ତାର କରିଥିଲେ ।

ଗୋପାଳଙ୍କ ପରେ ଧର୍ମପାଳ ଖ୍ରୀ: ୭୮୦ରୁ ଖ୍ରୀ: ୮୧୫ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଜଣାଯାଏ । ସେ ଇନ୍ଦ୍ରରାଜଙ୍କୁ ପରାସ୍ତ କରି କନୌଜରେ ପ୍ରଭୁତ୍ୱ ବିସ୍ତାର କରିଥିଲେ । ତେବେ ସେହି ସମୟରେ ଗଙ୍ଗା ଓ ଯମୁନା ଉପକୂଳ ଅଞ୍ଚଳରେ ରାଷ୍ଟ୍ରକୂଟମାନଂକ କ୍ଷମତା ପ୍ରସାର ଘଟିଥିଲା ।

ଧର୍ମପାଳଙ୍କ ପୁତ୍ର ଦେବପାଳଂକ ରାଜତ୍ୱକାଳରେ ଗୁର୍ଜର ଓ ପ୍ରତିହାରମାନଙ୍କ ପ୍ରଭାବ ବୃଦ୍ଧି ଘଟିଥିଲା ଓ କ୍ଷମତା ସଂଘର୍ଷ ଅନିବାର୍ଯ୍ୟ ହୋଇ-ପଡ଼ିଥିଲା । ଶେଷରେ ଖ୍ରୀ: ୮୩୬ ବେଳକୁ ପ୍ରତିହାରମାନେ କନୌଜ ଅଧିକାର କରିନେଇଥିଲେ । ଦେବପାଳଙ୍କ ପରେ 'ପାଳ' ବଂଶର ପତନ ଘଟି ନ ଥିଲେ ସୁଦ୍ଧା ପ୍ରାଧାନ୍ୟ କ୍ଷୁର୍ଣ୍ଣ ହୋଇଯାଇଥିଲା ।

ଏହିଭଳି ହର୍ଷବର୍ଦ୍ଧନଙ୍କ ପରଠାରୁ ପ୍ରତିହାରମାନଙ୍କ ପ୍ରଭୁତ୍ୱ ପ୍ରତିଷ୍ଠା କାଳ ପର୍ଯ୍ୟନ୍ତ (ଅର୍ଥାତ୍, ଖ୍ରୀ: ୬୪୭ରୁ ଖ୍ରୀ: ୮୩୬) ଗଙ୍ଗା ଉପକୂଳବର୍ତ୍ତୀ ଅଞ୍ଚଳ କ୍ଷମତା ସଂଘର୍ଷର ପୀଠସ୍ଥଳୀରେ ପରିଣତ ହୋଇଥିଲା ।

## ପ୍ରତିହାର ବଂଶ

କେତେକ ଶିଳାଲେଖରୁ ଜଣାଯାଏ, ପ୍ରତିହାରମାନେ ରାମାୟଣ-ପ୍ରସିଦ୍ଧ ସୂର୍ଯ୍ୟବଂଶୀୟ ରାଜା ଶ୍ରୀ ରାମଚନ୍ଦ୍ରଙ୍କ କନିଷ୍ଠ ଭ୍ରାତା କ୍ଷତ୍ରିୟ ବୀର ଲକ୍ଷ୍ମଣଙ୍କର ଉତ୍ତରାଧିକାରୀ । ତେବେ ଆଧୁନିକ ଐତିହାସିକମାନଙ୍କ ମତରେ ସେମାନେ ତଦାନୀନ୍ତନ ପଞ୍ଜାବରେ ପ୍ରତିଷ୍ଠା ଲାଭ କରିଥିବା ଗୁର୍ଜର ବଂଶା-ବତଂଶ । ଅଷ୍ଟମ ଶତାବ୍ଦୀର ମଧ୍ୟଭାଗରେ ନାଗଭଟ୍ଟ (୧ମ ଙ୍କ ସମୟରୁ ପ୍ରତିହାର ବଂଶ ପ୍ରତିଷ୍ଠିତ ହୋଇଥିଲେ ସୁଦ୍ଧା ଚାରି ଏକ ଶତାବ୍ଦୀ ପରେ ଖ୍ରୀ: ୮୩୬ରେ ନାଗଭଟ୍ଟ (୨ୟ)ଙ୍କ ପୌତ୍ର ଭୋଜ (୧ମ) କନୌଜ ଅଧିକାର କଲା ପରେ ହିଁ ପ୍ରତିହାରମାନଙ୍କର ଖ୍ୟାତି ପ୍ରସ୍ଫୁରିତ ହୋଇ ପାରିଥିଲା ।

ଭୋଜଙ୍କ ପରେ ତାଙ୍କ ପୁତ୍ର ମହେନ୍ଦ୍ରପାଳ ହର୍ଷବର୍ଦ୍ଧନଙ୍କ ଆଦର୍ଶରେ ରାଜ୍ୟ ଶାସନ ପରିଚାଳନା କରିଥିଲେ ଏବଂ କବି ରାଜଶେଖରଙ୍କର ପୃଷ୍ଠପୋଷକ ଥିଲେ । ମହେନ୍ଦ୍ରପାଳଙ୍କ ପରେ ତାଙ୍କର ତିନି ପୁତ୍ର ମହୀପାଳ, ଭୋଜ (୨ୟ) ଓ ବିନାୟକପାଳ ରାଜତ୍ୱ କରିଥିବା ଜଣାଯାଏ । ଖ୍ରୀ: ୧୦୧୮ରେ ମହମ୍ମଦ ଘଜନୀ କନୌଜ ଅଧିକାର କଲା ବେଳକୁ ସେଠାରେ ରାଜ୍ୟପାଳ । ନାମକ ଜଣେ ପ୍ରତିହାରବଂଶୀୟ ରାଜା ରାଜତ୍ୱ କରୁଥିଲେ ।

ଭାରତୀୟ ଇତିହାସରେ ପ୍ରତିହାର ବଂଶ ଏକ ଦୀର୍ଘସ୍ଥାୟୀ ରାଜବଂଶ କିନ୍ତୁ ଗଙ୍ଗାଉପତ୍ୟକା ଅଞ୍ଚଳରେ ସେମାନେ ସ୍ୱଳ୍ପକାଳ ପାଇଁ ପ୍ରଭୁତ୍ୱ ବିସ୍ତାର କରିଥିଲେ । ତଥାପି ପ୍ରତିହାରମାନଙ୍କର ଆଧିପତ୍ୟ କାଳରେ ସେମାନେ ଭାରତକୁ ଆରବୀୟ ଆକ୍ରମଣରୁ ସୁରକ୍ଷିତ ରଖିବା ଦିଗରେ ସଫଳ ଉଦ୍ୟମ କରିଥିଲେ ।

## ପଲ୍ଲବ ବଂଶ

ଷଷ୍ଠ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ମହାରାଜା ସିଂହ ବିଷ୍ଣୁ ଚୋଳ ଓ ସିଂହଳ ବିଜୟ କଲା ପର୍ଯ୍ୟନ୍ତ ପଲ୍ଲବମାନଙ୍କର ପ୍ରାଧାନ୍ୟ ଉପଲବ୍ଧ ହୋଇ ନ ଥିଲା । ତେବେ ଚତୁର୍ଥ ଶତାବ୍ଦୀର ମଧ୍ୟ ଭାଗରେ ସମୁଦ୍ରଗୁପ୍ତ ବିଷ୍ଣୁଗୋପ ନାମକ ଜନୈକ ରାଜାଙ୍କୁ ବନ୍ଦୀକରି ପୁଣି ମୁକ୍ତକରି ଦେଇଥିବା ଜଣାଯାଏ । କାଞ୍ଚି ଥିଲା ପଲ୍ଲବମାନଙ୍କର ପୀଠସ୍ଥଳ । ତଥାପି କେତେକ ପଲ୍ଲବ ବଂଶୀୟ ଶାସକ ଚୋଳ, କର୍ଣ୍ଣାଟ, ସିଂହଳ ପ୍ରଭୃତି ଅଞ୍ଚଳରେ ମଧ୍ୟ ପ୍ରଭୁତ୍ୱ ବିସ୍ତାର କରିଥିଲେ ।

ସିଂହ ବିଷ୍ଣୁଙ୍କ ପରେ ତାଙ୍କ ପୁତ୍ର ମହେନ୍ଦ୍ର ବର୍ମନ ରାଜକ୍ଷମତାର ଅଧିକାରୀ ହୋଇଥିଲେ । ତାଙ୍କ ସମୟରେ ପଲ୍ଲବ ଓ ଚାଲୁକ୍ୟମାନଙ୍କର ମଧ୍ୟରେ ସଂଘର୍ଷର ସୂତ୍ରପାତ ଘଟିଥିଲା ଏବଂ ଚାଲୁକ୍ୟ ରାଜା ପୁଲକେଶିନ (୨ୟ) ବିଜୟ ହାସଲ କରିଥିଲେ । କିନ୍ତୁ ତାହା ପରେ ମହେନ୍ଦ୍ର ବର୍ମନଙ୍କ ପୁତ୍ର ନରସିଂହ ବର୍ମନ (୧ମ) ପୁଲକେଶିନଙ୍କୁ ଯୁଦ୍ଧରେ ପରାଭୂତ କରିଥିଲେ ଓ ତାଙ୍କ ରାଜଧାନୀ ବାତାପି ଧ୍ୱଂସସ୍ତୂପରେ ପରିଣତ ହୋଇଥିଲା । ପରିଶେଷରେ, ପୁଲକେଶିନ (୨ୟ)ଙ୍କ ପୁତ୍ର ବିକ୍ରମାଦିତ୍ୟ (୧ମ) ପିତୃ ପରାଜୟର ପ୍ରତିଶୋଧ ନେଇଥିଲେ ଏବଂ କାଞ୍ଚିନଗରୀ ଅଧିକାର କରିଥିଲେ । କାଳକ୍ରମେ ଅଷ୍ଟମ ଶତାବ୍ଦୀ ଶେଷ ଆଡ଼କୁ ପଲ୍ଲବମାନଙ୍କର ଆଧିପତ୍ୟ ଲୋପ ପାଇଥିଲା ।

ପଲ୍ଲବମାନଂକ ଶାସନ କାଳରେ କାଞ୍ଚି ଏକ ବ୍ରାହ୍ମଣ ଓ ବୌଦ୍ଧ ଶିକ୍ଷାର ପୀଠରେ ପରିଣତ ହୋଇଥିଲା ଏବଂ କାଞ୍ଚି, ମାମଲ୍ଲପୁରମ ଓ ତୁଙ୍ଗଭଦ୍ରା ପ୍ରଭୃତି ସ୍ଥାନରେ ଦେବମନ୍ଦିର ଓ ସ୍ଥାପତ୍ୟ କଳାର ବିକାଶ ଘଟିଥିଲା ।

## ଚାଳୁକ୍ୟବଂଶ

ଷଷ୍ଠ ଶତାବ୍ଦୀରେ ଖ୍ରୀ: କର୍ଣ୍ଣାଟଠାରେ ଚାଳୁକ୍ୟମାନଂକର ଅଭ୍ୟୁଦୟ ଘଟିଥିଲା । ଅଯୋଧ୍ୟାରୁ ସେମାନଙ୍କର 'ଉତ୍ପତ୍ତି' ହୋଇଥିବା କଥା କେତେକ ଶିଳାଲେଖରୁ ଜଣାଯାଏ । ପୁଲକେଶିନ (୧ମ) ପ୍ରଥମେ ବାତାପି * ଠାରେ ଚାଳୁକ୍ୟମାନଙ୍କ ରାଜଧାନୀ ପ୍ରତିଷ୍ଠା କରିଥିଲେ । ପୁଲକେଶିନ (୨ୟ) ଓ ତାଂକ ପୌତ୍ର ବିକ୍ରମାଦିତ୍ୟ (୨ୟ) ଥିଲେ ଚାଳୁକ୍ୟମାନଂକର ଶ୍ରେଷ୍ଠ ପରାକ୍ରମଶାଳୀ ନରପତି ।

କାଞ୍ଚିର ପଲ୍ଲବମାନେ ଥିଲେ ଚାଳୁକ୍ୟମାନଂକର ପ୍ରଧାନ ଶତ୍ରୁ । ଅଷ୍ଟମ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଆରମ୍ଭରେ ରାଷ୍ଟ୍ରକୂଟମାନଙ୍କଦ୍ୱାରା ବିଜିତ ନହେବା ପର୍ଯ୍ୟନ୍ତ ଚାଳୁକ୍ୟମାନେ କର୍ଣ୍ଣାଟରେ ପ୍ରତିପତ୍ତି ବିସ୍ତାର କରିଥିଲେ । ପରେ ଖ୍ରୀ: ୯୭୩ରେ ତୈଳ (୨ୟ) କଲ୍ୟାଣୀଠାରେ ଅଳ୍ପ କାଳ ପୁଣି ଚାଳୁକ୍ୟବଂଶର ପ୍ରଭୁତ୍ୱ ପ୍ରତିଷ୍ଠା କରିଥିଲେ ।

## ରାଷ୍ଟ୍ରକୂଟ ବଂଶ

ରାଷ୍ଟ୍ରକୂଟମାନେ ପୁରାଣପ୍ରସିଦ୍ଧ ଯାଦବଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କର ସଖା ସାତ୍ୟକୀଂକର ବଂଶଧର ବୋଲି ପୌରାଣିକ ସୂତ୍ରରୁ ଜଣାଯାଏ । ତେବେ ଐତିହାସିକମାନଂକ ମତରେ; ସେମାନେ ଆନ୍ଧ୍ରର କୃଷକ ଶ୍ରେଣୀ ତଥା 'ତେଲୁଗୁ ରେଡ୍ଡି' † ପରିବାରରୁ ଉଦ୍ଭୂତ । ଖ୍ରୀ: ୭୫୫ ବେଳକୁ ଦନ୍ତୀଦୁର୍ଗ ନାମକ ଜନୈକ ପରାକ୍ରମଶାଳୀ ଯୋଦ୍ଧା ପ୍ରଥମେ କର୍ଣ୍ଣାଟଠାରେ ରାଷ୍ଟ୍ରକୂଟ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ରାଷ୍ଟ୍ରକୂଟମାନଂକର ପ୍ରଭୁତ୍ୱ କାଳରେ ସେମାନେ ଉତ୍ତରରେ ମାଳବଠାରୁ ଆରମ୍ଭକରି ଦକ୍ଷିଣରେ ତାଞ୍ଜୋର ପର୍ଯ୍ୟନ୍ତ ଆଧିପତ୍ୟ ବିସ୍ତାର କରିଥିଲେ ।

---

* ବାତାପିର ଆଧୁନିକ ନାମ ବାଦାମି ଏହା ବିଜାପୁର (ମହାରାଷ୍ଟ୍ର) ନିକଟରେ ଅବସ୍ଥିତ ।

† "An Advanced History of India" ପୁସ୍ତକର ପୃ ୧୬୬ ଦ୍ରଷ୍ଟବ୍ୟ ।

ରାଷ୍ଟ୍ରକୂଟମାନେ ଥିଲେ ସାହିତ୍ୟ, କଳା ଓ ସ୍ଥାପତ୍ୟର ପୃଷ୍ଠପୋଷକ । ଦନ୍ତିଦୁର୍ଗଙ୍କ ପରବର୍ତ୍ତୀ ରାଜା କୃଷ୍ଣ (୧ମ)ଙ୍କ ଶାସନ କାଳରେ ଏଲୋରାସ୍ଥ ସୁଖ୍ୟାତ କୈଳାସ ମନ୍ଦିର ନିର୍ମିତ ହୋଇଥିଲା । କୃଷ୍ଣଙ୍କ ପରେ ତାଙ୍କ ପୁତ୍ର ଧ୍ରୁବଙ୍କ ଶାସନ କାଳରେ ବତ୍ସରାଜ ପ୍ରତିହାର ଓ ଧର୍ମପାଳ ପରାଜୟ ସ୍ୱୀକାର କରିଥିଲେ । ଧ୍ରୁବଙ୍କ ପୁତ୍ର ଗୋବିନ୍ଦ ଗୁଜରାଟର ରାଜସିଂହାସନ ହସ୍ତଗତ କରିଥିଲେ । ଗୋବିନ୍ଦଙ୍କ ଉତ୍ତରାଧିକାରୀ 'ଅମୋଘବର୍ଷ' (୧ମ) ଥିଲେ ଜଣେ ବିଶିଷ୍ଟ ସାହିତ୍ୟିକ ଏବଂ ସେ ନିଜାମଙ୍କ ଅଧିକୃତ ମାନ୍ୟଖେତ (ବା ମାଲଖେଦ)କୁ ରାଜଧାନୀ ପରିବର୍ତ୍ତନ କରିଥିଲେ । ସେ ଖ୍ରୀ: ୮୧୫ରୁ ୮୭୭ ପର୍ଯ୍ୟନ୍ତ ରାଜତ୍ୱ କରିଥିବା ଜଣାଯାଏ ।

ଅମୋଘବର୍ଷଙ୍କ ପ୍ରପୌତ୍ର ଇନ୍ଦ୍ର (୩ୟ) ମଧ୍ୟ ଥିଲେ ଜଣେ ଅତି ପରାକ୍ରମଶାଳୀ ରାଜା । ସେ କନୌଜର ପ୍ରତିହାର ବଂଶୀୟ ରାଜା ମହୀପାଳଙ୍କୁ ପରାଜିତ କରିଥିଲେ । ତାଙ୍କ ଭଣଜା କୃଷ୍ଣ (୩ୟ) ଥିଲେ ରାଷ୍ଟ୍ରକୂଟମାନଙ୍କର ଶେଷ ରାଜା । ଖ୍ରୀ: ୯୭୩ରେ ଚାଲୁକ୍ୟ ରାଜା ତୈଳ (୨ୟ)ଙ୍କ ଦ୍ୱାରା ରାଷ୍ଟ୍ରକୂଟ ବଂଶର ପତନ ଘଟିଥିଲା । କିନ୍ତୁ ତାର ଅଳ୍ପ କାଳ ପରେ ଦ୍ୱିତୀୟ ସହସ୍ରାବ୍ଦୀର ପ୍ରାରମ୍ଭରେ ଘଜନୀର ସୁଲ୍‌ତାନ ମହମ୍ମଦଙ୍କ ଆକ୍ରମଣ ଫଳରେ ରାଜପୁତ ପ୍ରଭୁତ୍ୱର ଅବସାନ ଘଟିଥିଲା ।

## ତାତ୍କାଳୀନ ଶାସନ ପ୍ରଣାଳୀ

ରାଜ୍ୟ ଶାସନ ଓ ଅଞ୍ଚଳ ଶାସନର ସମନ୍ୱୟ ସ୍ଥାପନ ଆଲୋଚ୍ୟ ଯୁଗର ଏକ ବୈଶିଷ୍ଟ୍ୟପୂର୍ଣ୍ଣ ଐତିହାସିକ ଉପାଦାନ । ସେତେବେଳେ ସଭାସମିତି ମାଧ୍ୟମରେ ଗ୍ରାମ୍ୟ ଶାସନ ପରିଚାଳିତ ହେଉଥିଲା ଏବଂ ରାଜାମାନେ କେବଳ ସାଧାରଣ ଭାବରେ ସେମାନଙ୍କ ତତ୍ତ୍ୱାବଧାନ କରୁଥିଲେ । ଅଧ୍ୟାପକ ନୀଳକଣ୍ଠ ଶାସ୍ତ୍ରୀଙ୍କ ଭାଷାରେ—

" The more one reads the contemporary records, the more one begins admire the nice balance struck between centarlised control and local initiative, the clear distinction ever present between the functions of the State and those of the social group."*

---

* Administration in India—A Historical Review, Bharatiya Vidya Bhavan 1967, P. 27 ରୁ ଗୃହୀତ ।

ଅର୍ଥାତ୍, ଜଣେ ଯେତିକ ଅଧିକ ସମସାମୟିକ ଅଭିଲେଖ ଅନୁଧ୍ୟାନ କରେ ସେ ତଦାମାନ୍ତନ କେନ୍ଦ୍ରୀୟ ନିୟନ୍ତ୍ରଣ ଓ ଆଞ୍ଚଳିକ ଆଦ୍ୟାନୁଷ୍ଠାନ ମଧ୍ୟରେ ଥିବା ସୁସମତାରେ ସେତିକି ଅଧିକ ବିସ୍ମୟାଭିଭୂତ ହୁଏ । ସେ ସମସ୍ତ ସାମାଜିକ ସଙ୍ଘ ରାଜ୍ୟର କାର୍ଯ୍ୟକଳାପରେ ଅନ୍ତର୍ନିହିତ ଥିବା ସ୍ପଷ୍ଟ ତାରତମ୍ୟ ଅଭୂତପୂର୍ବ ।

ଗ୍ରାମ୍ୟ ସ୍ତରରେ କେତେକ ନିର୍ଦ୍ଦିଷ୍ଟ ସାମାଜିକ ସଙ୍ଘର ମଧ୍ୟ ଆଭ୍ୟନ୍ତରୀଣ ସ୍ୱାୟତ୍ତଶାସନ କ୍ଷମତା ରହିଥିଲା । ତେବେ ସେ ସମସ୍ତ ସାମାଜିକ ସଙ୍ଘ ଗ୍ରାମ-ସଭାର ନିଷ୍ପତ୍ତି ବିରୁଦ୍ଧରେ କାର୍ଯ୍ୟ କରି ପାରୁନଥିଲେ । ଗ୍ରାମସଭାଗୁଡିକ ହିଁ ଗ୍ରାମବାସୀଙ୍କର ସାମୂହିକ କଲ୍ୟାଣ ଦୃଷ୍ଟିରୁ ଶାସନ ନୀତି ନିର୍ଦ୍ଧାରଣ କରୁଥିଲେ । ବିଶିଷ୍ଟ ଶାସନଜ୍ଞ ଶ୍ରୀ ଏଇଚ୍. ଭି. ଆର୍. ଆୟଙ୍ଗାରଂକ ମତରେ—

"Village autonomy was thus an effective reality tampered by the advice and supervision of the Kings'·government only in matters of importance. †

ଅର୍ଥାତ୍, ଗ୍ରାମ୍ୟ ସ୍ୱାୟତ୍ତ ଶାସନ ଥିଲା ଏକ ଫଳସାଧନକ୍ଷମ ବାସ୍ତବତା; କେବଳ କେତେକ ମୁଖ୍ୟ ବିଷୟରେ ରାଜାଙ୍କ ସରକାର ତତ୍ତ୍ୱାବଧାନ ଓ ଉପଦେଶ ପ୍ରଦାନ କରୁଥିଲେ ।

ସେତେବେଳେ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ଭୂରାଜସ୍ୱ ନିର୍ଦ୍ଧାରିତ ହେଉଥିଲା ଏବଂ ଜମିଗୁଡିକ ସଠିକ୍ ପରିମାପ କରାଯାଇ ତତ୍‌ସମ୍ବନ୍ଧୀୟ ହିସାବ ତଥା ବ୍ୟକ୍ତିଗତ କର୍ତ୍ତୃତ୍ୱ ଆଦି ବିଷୟ ଲିପିବଦ୍ଧ ହୋଇ ରହୁଥିଲା । ଉର୍ବରତା ଦୃଷ୍ଟିରୁ ଜମିଗୁଡ଼ିକୁ ଅନ୍ୟୂନ ବାର ଭାଗରେ ବିଭକ୍ତ କରାଯାଉଥିଲା ।

## ସମାଜ, ସାହିତ୍ୟ ଓ କଳା

ଆଲୋଚ୍ୟ କାଳରେ ସାମାଜିକ କ୍ଷେତ୍ରରେ ମଧ୍ୟ ଉଲ୍ଲେଖଯୋଗ୍ୟ ଅଗ୍ରଗତି ପରିଲକ୍ଷିତ ହୋଇଥିଲା । ଓଦନ୍ତପୁର (ବିହାର) ମାଳଵ, ବିକ୍ରମଶିଳା (ଭାଗଲପୁର ନିକଟବର୍ତ୍ତୀ), ଧାରା, ନେବଗିରି, କାଞ୍ଚି, ଅମରାବତୀ, ବାହୁର୍ (ପଣ୍ଡିଚେରୀ) ପ୍ରଭୃତି ସ୍ଥାନରେ ବିଶିଷ୍ଟ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠିତ ହେବା-ଦ୍ୱାରା ଶିକ୍ଷାର ବ୍ୟାପକ ପ୍ରସାର ଘଟିଥିଲା । ସେତେବେଳେ ଆୟୁଗତ

---

† ତଦେବ ।

ବ୍ୟବଧାନ ଉତ୍କଟ ନଥିଲା । ଜଣେ ଉଚ୍ଚ ପରିବାର ଅନ୍ତର୍ଭୁକ୍ତ ବ୍ୟକ୍ତିର ହାରାହାରି ମାସିକ ଆୟ ଷୋହଳ ଟଙ୍କା ଥିବା ସ୍ଥଳେ ଜଣେ ନିମ୍ନସ୍ତରୀୟ ଭାରତୀୟର ମାସିକ ଆୟ ଆ୦ ଟଙ୍କା ଥିଲା । *

ସେହି ଯୁଗରେ ବିକାଶ ଲାଭ କରିଥିବା ଉଚ୍ଚକୋଟୀର ସାହିତ୍ୟ ଭାରତୀୟ ଇତିହାସରେ ଚିରଅବିସ୍ମରଣୀୟ । ସେତେବେଳେ କାବ୍ୟ, କବିତା, ନାଟକ-ସମସ୍ତ କ୍ଷେତ୍ରରେ ଉନ୍ନତ ସାହିତ୍ୟ ସୃଷ୍ଟି ହୋଇଥିଲା ଏବଂ 'ଛନ୍ଦ', 'ଅଳଙ୍କାର', 'ଧ୍ୱନି' ପ୍ରଭୃତି ବୈୟାକରଣିକ ତତ୍ତ୍ୱର ବିକାଶ ଘଟିଥିଲା । ସପ୍ତମ ଶତାବ୍ଦୀର ସାହିତ୍ୟିକ ବାଣଭଟ୍ଟଙ୍କର 'ହର୍ଷଚରିତ' ଓ 'କାଦମ୍ବରୀ', ଦଣ୍ଡୀଙ୍କର 'ଦଶକୁମାର ଚରିତ' ଓ 'କାବ୍ୟାଦର୍ଶ', ଭାମଙ୍କର 'କାବ୍ୟାଳଙ୍କାର'; ଭର୍ତ୍ତୃହରିଙ୍କର 'ନୀତିଶତକମ୍', କୁମାରଦାସଙ୍କର 'ଜାନକୀ ହରଣ',ଭାରବୀଙ୍କର 'କିରାତାର୍ଜ୍ଜୁନ', ମାଘଙ୍କର 'ଶିଶୁପାଳବଧ', ସନ୍ଧ୍ୟାକରଙ୍କର 'ରାମଚରିତ', ଭବଭୂତିଙ୍କର 'ମାଳତୀମାଧବ' ଓ 'ଉତ୍ତର ରାମଚରିତ' (୮ମ ଶତାବ୍ଦୀ), ଆନନ୍ଦବର୍ଦ୍ଧନଙ୍କର 'ଧ୍ୱନ୍ୟାଲୋକ' (୯ମ ଶତାବ୍ଦୀ) ଏବଂ ୧୧ ଶ ଶତାବ୍ଦୀରେ ରଚିତ କହ୍ଲଣଙ୍କର 'ରାଜତରଙ୍ଗିଣୀ' ଓ 'ଚୌରପଞ୍ଚାଶିକା' ବିହ୍ଲଣଙ୍କର 'ବିକ୍ରମାଙ୍କଦେବ ଚରିତ' ସୋମଦେବଙ୍କର 'କଥାସରିତ ସାଗର', ଭଟ୍ଟ ନାରାୟଣଙ୍କର 'ବେଣୀ ସଂହାର', ପଲ୍ଲବ ବଂଶୀୟରାଜା ମହେନ୍ଦ୍ର ବର୍ମନଙ୍କର ଏକାଙ୍କିକା 'ମତ୍ତବିଳାସ' ଆଲୋଚ୍ୟ ଯୁଗର ଶ୍ରେଷ୍ଠ ଅବଦାନ ।

ପୁଣି ସେହି ସମୟରେ ବିଷ୍ଣୁଶର୍ମାଙ୍କର 'ପଞ୍ଚତନ୍ତ୍ର' ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇଥିଲା ଏବଂ କ୍ଷେମେନ୍ଦ୍ର, ସୋମେଶ୍ୱର, ରାଜଶେଖର, କାମନ୍ଦକ, ଶାନ୍ତିଦେବ ପ୍ରମୁଖ କବି ଓ ପଣ୍ଡିତଙ୍କ ଉଲ୍ଲେଖନୀୟ ଅବଦାନ ରହିଥିଲା । ଏତଦ୍ବ୍ୟତୀତ ଶିଳା ଭଟ୍ଟାରିକା ପ୍ରମୁଖ ନାରୀକବିମାନେ ମଧ୍ୟ ସେତେବେଳେ ବେଶ୍ ସୁଖ୍ୟାତି ଅର୍ଜନ କରିଥିଲେ । ଏପରିକି 'କୌମିଦୀ ମହୋତ୍ସବ' ଜଣେ ନାରୀ ଲେଖିକାଙ୍କର କୃତି ରୂପେ ଅଭିହିତ ।

କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ମଧ୍ୟ ଏହି ଯୁଗ ବିଶେଷ ସମୃଦ୍ଧ ଥିଲା । ଭାରତର ଉତ୍ତରରେ କାଶ୍ମୀରଠାରୁ ଆରମ୍ଭ କରି ଦକ୍ଷିଣରେ ରାମେଶ୍ୱର ପର୍ଯ୍ୟନ୍ତ

* "An Advanced History of India ପୁସ୍ତକର ୧୯୨ ପୃଷ୍ଠା ଦ୍ରଷ୍ଟବ୍ୟ ।"

ସବୁଠୁ ଉନ୍ନତ କାରୁକାର୍ଯ୍ୟ ସମ୍ପନ୍ନ ମନ୍ଦିରମାନ ନିର୍ମିତ ହୋଇଥିଲା । ତାହା ତହାମିଳମାନଙ୍କ ଶିଳ୍ପ ଐଶ୍ୱର୍ଯ୍ୟ ଓ ସ୍ଥାପତ୍ୟକଳାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ତାତ୍କାଳିକ ଆର୍ଯ୍ୟ (ବା ଉତ୍ତର ଭାରତୀୟ) କଳା ଓ ଦ୍ରାବିଡ (ବା ଦକ୍ଷିଣ ଭାରତୀୟ) କଳା ମଧ୍ୟରେଥିବା ରୁଚିଗତ ପାର୍ଥକ୍ୟର ପ୍ରମାଣ ଦିଏ । (ଉତ୍ତର ଭାରତର ମନ୍ଦିରଗୁଡ଼ିକ ଗୋଲାକାର ଏବଂ ସେଥିରେ ଖଚିତ ହୋଇଥିବା ସ୍ତମ୍ଭ ସଂଖ୍ୟା ନଗଣ୍ୟ । ଅନ୍ୟ ପକ୍ଷରେ, ଦକ୍ଷିଣ ଭାରତର ମନ୍ଦିରଗୁଡ଼ିକ ଚତୁଷ୍କୋଣୀ କୋଠରୀ ଆକାରରେ କ୍ରମଶଃ ଶୀର୍ଷ ବିନ୍ଦୁ ସ୍ପର୍ଶ କରିଥାଏ ଏବଂ ସେଗୁଡ଼ିକରେ ବହୁସଂଖ୍ୟକ ସ୍ତମ୍ଭ ଖଚିତ ହୋଇଥାଏ ) । ଏହା ବ୍ୟତୀତ, ତାଞ୍ଜୋର ମନ୍ଦିରରୁ ଆବିଷ୍କୃତ ହୋଇଥିବା ଚିତ୍ରାଙ୍କନଗୁଡ଼ିକରୁ ତୈଳ ଅଙ୍କନ-କଳା (Paintings)ର ଉତ୍କୃଷ୍ଟତାର ପରିଚୟ ମିଳେ ।

## ଧର୍ମ ଓ ପୁରାଣ

ସର୍ବୋପରି, ଆଲୋଚ୍ୟ ଯୁଗରେ ଧର୍ମ ଓ ପୁରାଣ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଦୃଷ୍ଟିଗୋଚର ହୋଇଥିଲା । ଗୁପ୍ତ ଯୁଗ ପରେ ଶୈବ ଓ ବୈଷ୍ଣବ-ବାଦ ସକ୍ରିୟ ହୋଇ ଉଠିବା ଫଳରେ ବୌଦ୍ଧ ଓ ଜୈନଧର୍ମର ପ୍ରାଧାନ୍ୟ ହ୍ରାସ ଘଟିଥିଲା । ତାହା ବ୍ୟତୀତ, ସେତେବେଳେ ରକ୍ଷଣଶୀଳ ହିନ୍ଦୁବାଦ ତଥା ଅଦ୍ୱୈତ ଦର୍ଶନର ଅଭ୍ୟୁଦୟ ହୋଇଥିଲା । ଗଉଡ଼ପାଦ ଥିଲେ ପ୍ରଥମ ଅଦ୍ୱୈତବାଦୀ ଦାର୍ଶନିକ । ତାଙ୍କ ଶିଷ୍ୟ ଗୋବିନ୍ଦ ଥିଲେ ବିଖ୍ୟାତ ହିନ୍ଦୁ ଦାର୍ଶନିକ ଶଙ୍କରାଚାର୍ଯ୍ୟଙ୍କର ଗୁରୁ । ନମ୍ବୁଦ୍ରିପରିଯ଼ୁଣ ବେଦାନ୍ତୀ ବ୍ରାହ୍ମଣ ଶଙ୍କର * କେବଳ ଅଦ୍ୱୈତବାଦର ପ୍ରଖ୍ୟାପକ ନଥିଲେ, ତାହା ସଙ୍ଗେ ସଙ୍ଗେ ଥିଲେ ଜଣେ ଅପ୍ରତିଦ୍ୱନ୍ଦୀ ସଂଗଠକ ତଥା ଧର୍ମପ୍ରଚାରକ । ତାଙ୍କ ଉଦ୍ୟମରେ ଶ୍ରୀ ଶୃଙ୍ଗେରୀ, ପୁରୀ, ଦ୍ୱାରକା ଓ ବଦ୍ରିନାଥଠାରେ ଚାରୋଟି ଧର୍ମପୀଠ ସ୍ଥାପିତ ହୋଇ ପାରିଥିଲା । ଶଙ୍କରାଚାର୍ଯ୍ୟଙ୍କ ମତ, ଦର୍ଶନ ତଥା ଉପଦେଶର ସାରତତ୍ତ୍ୱ ** ହେଉଛି—

(୧)—ଅସୀମ, ଅପରିଜ୍ଞେୟ ଓ ଅପୌରୁଷେୟ ପରମ ଶକ୍ତି, ଯାହା ଉପନିଷଦରେ 'ବ୍ରହ୍ମ' ନାମରେ କଥିତ, ତା ହେଉଛି ଚରମ ସତ୍ୟ ।

---

* ଖ୍ରୀ: ୭୮୮ ରେ ଶଙ୍କରଙ୍କ ଆବିର୍ଭାବ ଘଟିଥିଲା ।

** "Hinduism through the Ages" ପୁସ୍ତକର ୩୫ ପୃଷ୍ଠା ଦ୍ରଷ୍ଟବ୍ୟ ।

(୨)—ପରିବର୍ତ୍ତନଶୀଳ ଜଗତରେ ମାୟା ବଳରେ ସେହି ପରମ ଶକ୍ତିର ପରିବର୍ତ୍ତିତ ରୂପ ପ୍ରତୀୟମାନ ହୁଏ; କିନ୍ତୁ ପ୍ରକୃତରେ ତାହା ଅପରିବର୍ତ୍ତନୀୟ ।

(୩)—ବିଶ୍ୱର ସମସ୍ତ ବିକାଶ ମୂଳ ସେହି ପରମ ଶକ୍ତି ପ୍ରତି ପ୍ରଯୁଜ୍ୟ ନୁହେଁ ।

(୪)—ଉପନିଷଦର ମତ ହେଉଛି ଅହଂ ବ୍ରହ୍ମ, ଅର୍ଥାତ୍, ଆତ୍ମା ଓ ପରମାତ୍ମା ଏକ ।

(୫)—ଏହି ଏକତ୍ୱର ଅଜ୍ଞତାହିଁ ଆମ ପାପ ଓ କଷଣର କାରଣ ।

(୬)—କର୍ମ ବା ଉପାସନାଦ୍ୱାରା ମୋକ୍ଷ ଲାଭ କରାଯାଇ ନ ପାରେ, କେବଳ ଜ୍ଞାନ ତଥା ଧ୍ୟାନ ବଳରେ ହିଁ ତାହା ପ୍ରାପ୍ତ ହୁଏ ।

କିନ୍ତୁ ଶଙ୍କରଙ୍କ ପରେ ରାମାନୁଜ ବିଶିଷ୍ଟ ଦ୍ୱୈତବାଦ ଉପରେ ଗୁରୁତ୍ୱ ଆରୋପ କରି ଭକ୍ତିମାର୍ଗକୁ ମୁକ୍ତିମାର୍ଗ ରୂପେ ଗ୍ରହଣ କରିଥିଲେ । କାଞ୍ଚି ଓ ଶ୍ରୀରଙ୍ଗ ଥିଲା ତାଙ୍କର ପ୍ରଧାନ ପୀଠ ।

ଶଙ୍କରଙ୍କ ପୂର୍ବରୁ ଦକ୍ଷିଣଭାରତରେ ତାମିଲ ବିଷ୍ଣୁଭକ୍ତମାନଙ୍କର 'ଆଲବାର' ସଂପ୍ରଦାୟ ମୁଣ୍ଡ ଟେକି ଥିଲା । ସେମାନଙ୍କ ମଧ୍ୟରେ ନାମାଲବାର ଓ ତିରୁମଙ୍ଗି ଆଲ୍‌ବାରଙ୍କ ନାମ ଉଲ୍ଲେଖଯୋଗ୍ୟ । ଆଲ୍‌ବାରଙ୍କ ମତରେ ଭଗବାନ ସମସ୍ତଙ୍କର; ଏକାଗ୍ର ଆତ୍ମସମର୍ପଣ ବଳରେ ମୋକ୍ଷ ପ୍ରାପ୍ତି ଘଟେ । ସେହି ସମୟରେ 'ଆଲ୍‌ବାର୍' ସଂପ୍ରଦାୟର ବିକାଶ ସଙ୍ଗେ ସଙ୍ଗେ ଆଚାର୍ଯ୍ୟ-ମାନଙ୍କର ମଧ୍ୟ ଆବିର୍ଭାବ ଘଟିଥିଲା । ରାମାନୁଜ ଥିଲେ ଜଣେ ବିଶିଷ୍ଟ ଆଚାର୍ଯ୍ୟ । ତାଙ୍କ ପୂର୍ବବର୍ତ୍ତୀ ଆଚାର୍ଯ୍ୟମାନଙ୍କ ମଧ୍ୟରେ ନାଥମୁନି ଓ ଯମୁନାଚାର୍ଯ୍ୟ ପ୍ରଧାନ । ଆଲବାର୍‌ମାନେ ବୈଷ୍ଣବବାଦର ଭାବାତ୍ମକ ବିକାଶ ଉପରେ ଗୁରୁତ୍ୱ ଦେଇଥିଲେ; ଆଚାର୍ଯ୍ୟମାନେ ବୁଦ୍ଧି ବା ଜ୍ଞାନମାର୍ଗର ପ୍ରଚାର କରିଥିଲେ । ଏହା ବ୍ୟତୀତ, ସେତେବେଳେ ଶୈବମାନଙ୍କର ପ୍ରାଧାନ୍ୟ ମଧ୍ୟ ଉପଲବ୍ଧ ହୋଇଥିଲା । ବୈଷ୍ଣବମାନଙ୍କ ମଧ୍ୟରେ ଆଲବାର୍‌ମାନଙ୍କ ଭଳି ଶୈବମାନଙ୍କ ମଧ୍ୟରେ 'ନୟନମାର୍' ସଂପ୍ରଦାୟ ଗଢ଼ିଉଠିଥିଲା । ସେମାନଂକ ମଧ୍ୟରେ ଆପ୍‌ପାର, ଜ୍ଞାନ ସମ୍ବନ୍ଧର, ସୁନ୍ଦରମୂର୍ତ୍ତି ଓ ମଣିକାବଚକର୍ ପ୍ରଧାନ ।

କିନ୍ତୁ ଦଶମ ଶତାବ୍ଦୀରେ ହରିବଂଶ ଓ ବିଷ୍ଣୁ ପୁରାଣର ଆଧାରରେ ରଚିତ ଭାଗବତ ପୁରାଣରେ ଅଦ୍ୱୈତବାଦ ଓ ଭକ୍ତିବାଦର ସଂଯୋଗ

ଘଟିଥିଲା । ତାହା ରାମାୟଣ ଓ ମହାଭାରତ ଭଳି ଭାରତୀୟ ଧର୍ମ ସାହିତ୍ୟରେ ଏକ ପ୍ରଧାନ ଗ୍ରନ୍ଥ ଏବଂ ପରବର୍ତ୍ତୀ ଯୁଗର ଭକ୍ତି ଆନ୍ଦୋଳନକୁ ଗଭୀର ଭାବରେ ପ୍ରଭାବିତ କରିଥିଲା ।

## ଏକ ଐତିହାସିକ ସମୀକ୍ଷା

ଆଲୋଚ୍ୟ ଯୁଗରେ ଧର୍ମ, ଶାସନ, କଳା, ସାହିତ୍ୟ ପ୍ରତ୍ୟେକ କ୍ଷେତ୍ରରେ ବିଶେଷ ଅଗ୍ରଗତି ସାଧିତ ହୋଇଥିଲେ ମଧ୍ୟ ସହସ୍ରାବ୍ଦୀର ଶେଷ ଆଡ଼କୁ ଭାରତୀୟ ଇତିହାସରେ ବିପର୍ଯ୍ୟୟ ଅପରିହାର୍ଯ୍ୟ ହୋଇ ପଡ଼ିଥିଲା । ଆରବ-ମାନଙ୍କର ଧାରାବାହିକ ଆକ୍ରମଣ ଫଳରେ କ୍ରମଶଃ ପ୍ରାଚୀନ ହିନ୍ଦୁ ରାଜ୍ୟଗୁଡ଼ିକର ପତନ ଘଟିଲା ଏବଂ ଭାରତରେ ମୁସଲମାନ ଶାସନ ପ୍ରତିଷ୍ଠା ଲାଭ କଲା । ଏହି ଯୁଗର ସୁଚିନ୍ତିତ ସମାଲୋଚନା ତଥା ଐତିହାସିକ ସମୀକ୍ଷା କରି ପଣ୍ଡିତ ନେହେରୁ ଯଥାର୍ଥରେ କହିଛନ୍ତି—

"During the first thousand years of the Christian era, there are many ups and downs in India, many conflicts with invading elements and internal troubles. Yet it is a period of vigorous national life, bubbling over with energy and spreading out in all directions. Culture develops into a rich civilization flowering out in philosophy, literaure, drama, art, science and mathematics. India's economy expands, the Indian horizon widens and other countries come within its scope. × × × Yet, as the millennium approached its end, all this appears to be the afternoon of a civilisation; the glow of the morning had long faded away, high noon was past. × × × India had all along been a curious combination of conservatism in practice and explosive thought. × × But when thought lost its explosiveness and creative power and became a tame attendant on-outworn and meaningless practice, mumbling old phrases and fearful of everything new, then life became stagnant and tied and contrained in

a prison of its own making, × × × Because of this there was decline all along the line—intellectual, philosophical, political, in technique, and methods of warfare in knowledge of and contacts with the outide world." ✳

ଅର୍ଥାତ୍, ଖ୍ରୀଷ୍ଟୀୟ ପ୍ରଥମ ସହସ୍ରବର୍ଷ କାଳରେ ଭାରତରେ ଅନେକ ଉତ୍‌ଥାନ ପତନ ଘଟିଛି, ବହୁ ଦ୍ୱନ୍ଦ୍ୱ, ଆକ୍ରମଣ ଓ ସଂଘର୍ଷ ଦେଖାଦେଇଛି । ତଥାପି ଏହି ଯୁଗ ଏକ ସର୍ବବ୍ୟାପୀ ଓ ସବଳ ଜାତୀୟ ଜୀବନର ଉତ୍ସ ଅଟେ । ଦର୍ଶନ, ସାହିତ୍ୟ, ନାଟକ, କଳା, ବିଜ୍ଞାନ, ଗଣିତ ପ୍ରତ୍ୟେକ କ୍ଷେତ୍ରରେ ସଂସ୍କୃତିର ବହୁମୁଖୀ ପ୍ରସାର ଫଳରେ ଏକ ସମୃଦ୍ଧ ସଭ୍ୟତାର ବିକାଶ ଘଟିଛି ଭାରତୀୟ ଅର୍ଥନୀତିର ସମ୍ପ୍ରସାରଣ ଘଟିଛି; ଭାରତୀୟ ଦିଗ୍‌ବିଜୟର ବିସ୍ତୃତି ଫଳରେ ଅନ୍ୟାନ୍ୟ ଦେଶ ତାର ପରିସର ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଛନ୍ତି । × × × ତଥାପି ସହସ୍ରାବ୍ଦୀର ଶେଷ ଆଡକୁ ସଭ୍ୟତାର ସାୟଂକାଳ ଉପସ୍ଥିତ ହେଲାଭଳି ମନେହୁଏ । ପ୍ରଭାତର ଶୁଭ୍ରାଲୋକ ଅପସାରିତ ହୋଇଥିଲା; ପ୍ରଖର ମଧ୍ୟାହ୍ନ ଅତୀତ ହୋଇଥିଲା । × × × ଯୁଗ ଯୁଗଧରି ଭାରତରେ ଅଭ୍ୟାସଗତ ରକ୍ଷଣଶୀଳତା ଓ ଚିନ୍ତାଗତ ବିସ୍ଫୋରଣରେ ବିଚିତ୍ର ସଂଯୋଗ ଘଟି ଆସିଛି । × ମାତ୍ର ଚିନ୍ତାଶକ୍ତି ଯେତେବେଳେ ତାର ବିସ୍ଫୋରଣୀପ୍ରବୃତା ଓ ସୃଜନଶୀଳତା ହରାଇ ଏକ ଜୀର୍ଣ୍ଣ ଓ ନିରର୍ଥକ ଅଭ୍ୟାସର ଅନୁଧାବନ କଲା ଏବଂ ପ୍ରାଚୀନ ବାଣୀ ଗୁଞ୍ଜନ କରି ନୂତନତାର ନାମରେ ଭୟଭୀତ ହେଲା, ସେତେବେଳେ ଜୀବନ ନିଶ୍ଚଳ ହୋଇ ପଡ଼ିଲା ଏବଂ ସ୍ୱକୃତ ବନ୍ଦୀଶାଳାରେ ଆବଦ୍ଧ ହେଲା । × × × ସେଥିଯୋଗୁଁ ସେତେବେଳେ ବୌଦ୍ଧିକ, ଦାର୍ଶନିକ, ରାଜନୈତିକ, ଯୁଦ୍ଧକୌଶଳ, ବୈଦେଶିକ ସମ୍ପର୍କ ଆଦି ସମସ୍ତ କ୍ଷେତ୍ରରେ ଅଧଃପତନ ଘଟିଥିଲା ।

---

✳ The Discovory of India" ଗ୍ରନ୍ଥର ପୃ ୨୧୫ ରୁ ୨୨୦ ଦ୍ରଷ୍ଟବ୍ୟ ।

# ଦଶମ ପର୍ଯ୍ୟାୟ

# ମୁସଲମାନ ଯୁଗ (କ)

## ମୁସଲମାନ ଶକ୍ତିର ଅଭ୍ୟୁଦୟ

ଖ୍ରୀ: ୫୭୦ରେ ମକ୍କାଠାରେ ଇସଲାମ ଧର୍ମର ପ୍ରତିଷ୍ଠାତା ମହାପୁରୁଷ ମହମ୍ମଦଙ୍କର ଆବିର୍ଭାବ ଘଟିବା ପରେ କ୍ରମଶଃ ତାଙ୍କର ଶିଷ୍ୟ ଖଲିଫାମାନଙ୍କର ପ୍ରଭାବ ବିଭିନ୍ନ ଦେଶରେ ଉପଲବ୍ଧ ହେବାକୁ ଲାଗିଲା । ଅଷ୍ଟମ ଶତାବ୍ଦୀର ଆରମ୍ଭ ବେଳକୁ ଆରବମାନେ ଆଫଗାନିସ୍ଥାନ ଓ କାବୁଲରେ ଆଧିପତ୍ୟ ବିସ୍ତାର କରିଥିଲେ ଓ ପଶ୍ଚିମ ଭାରତର ଉନ୍ନତ ଅଞ୍ଚଳଗୁଡ଼ିକ ଉପରେ ଲୋଲୁପ ଦୃଷ୍ଟି ପକାଇଥିଲେ । ଖ୍ରୀ: ୭୧୨ରେ ସିନ୍ଧୁ ଆକ୍ରମଣ ଲାଗି ତାଙ୍କୁ ସୁଯୋଗ ମିଳିଲା । ସେତେବେଳେ ହଜ୍ଜାଜ ଥିଲେ ଇରାକର ଶାସକ । ତାଙ୍କ ପାଖକୁ ସିଂହଳର ତାତ୍କାଳିକ ରାଜା ଗୋଟିଏ ଜାହାଜରେ ପଠାଇଥିବା ବହୁ ମୂଲ୍ୟବାନ ଉପହାର ସିନ୍ଧୁ ଉପକୂଳରେ ଜଳଦସ୍ୟୁମାନେ ଲୁଣ୍ଠନ କରିନେବାରୁ ହଜ୍ଜାଜ ସେଥିପାଇଁ ସିନ୍ଧୁର ହିନ୍ଦୁ ରାଜା ଦାହିରଙ୍କୁ ଦାୟୀ କରି କ୍ଷତିପୂରଣ ଦାବୀ କରିଥିଲେ ଏବଂ ସେହି ଦାବୀ ଦାହିର ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ସେଥିରେ ଉତ୍ୟକ୍ତ ହୋଇ ହଜ୍ଜାଜ ସିନ୍ଧୁ ରାଜାଙ୍କ ବିରୋଧରେ ଯେଉଁ ଯୁଦ୍ଧବାହିନୀ ପଠାଇଥିଲେ, ସେମାନେ ମଧ୍ୟ ଦୟନୀୟ ଭାବେ ପରାସ୍ତ ହୋଇଥିଲେ । ତାପରେ ଅଧିକ ଉତ୍କ୍ଷିପ୍ତ ହୋଇ ହଜ୍ଜାଜ ନିଜର ଜାମାତା ମହମ୍ମଦ ବିନ୍ କାଶିମଙ୍କୁ ସିନ୍ଧୁ ଆକ୍ରମଣ ନିମନ୍ତେ ପ୍ରେରଣ କଲେ । ସେ ଯୁଦ୍ଧରେ ଦାହିରଙ୍କୁ ନିହତ କରି ସିନ୍ଧୁ ବିଜୟ କରିଥିଲେ ।

ତେବେ ଆରବ-ମୁସଲମାନମାନଙ୍କର ସିନ୍ଧୁ ବିଜୟ ଥିଲା ଏକ ନିଷ୍ଫଳ କୃତିତ୍ୱ । ସେମାନେ ଭାରତରେ ମୁସଲମାନ ଶାସନର ଭିତ୍ତି ସ୍ଥାପନ କରିଥିଲେ ଯଦିଓ, କିନ୍ତୁ ତୁର୍କ-ମୁସଲମାନମାନେହିଁ ସାମ୍ରାଜ୍ୟ ବିସ୍ତାର କରିବା ଲାଗି ସକ୍ଷମ ହୋଇଥିଲେ । ଖ୍ରୀ: ୯୬୨ରେ ତୁର୍କୀର ଆଲପ୍ତିଗିନ୍ ସ୍ୱାଧୀନ ଭାବେ ଗଜନୀ

ସ୍ୱରାଜ୍ୟ ପ୍ରତିଷ୍ଠା କରି ଆଫଗାନିସ୍ଥାନ ଓ କାବୁଲର କେତେକ ଅଞ୍ଚଳ ନିଜ ଶାସନର ଅନ୍ତର୍ଭୁକ୍ତ କରିଥିଲେ । ଆଲପ୍ତିଗିନ୍‌ଙ୍କ ପରେ- ତାଙ୍କ ଜାମାତା ସାବୁକ୍ତିଗିନ୍‌ଙ୍କ ଶାସନକାଳ (୯୭୩-୯୯୭)ରେ ଶାହିୟ ବଂଶୀୟ ହିନ୍ଦୁ ରାଜା ଜୟପାଳ ଆରବମାନଙ୍କ ପ୍ରସାରକୁ ପ୍ରତିରୋଧ କରିବା ଲାଗି ଯଥାସାଧ୍ୟ ଉଦ୍ୟମ କରିଥିଲେ । କିନ୍ତୁ ସାବୁକ୍ତିଗିନ୍‌ଙ୍କ ପୁଅ ମାମୁଦ ଜୟପାଳ ଓ ତାଙ୍କ ପୁଅ ଆନନ୍ଦପାଳଙ୍କୁ ପରାଜିତ କରି ପଞ୍ଜାବ ଜୟକରିବା ସଙ୍ଗେ ସଙ୍ଗେ କାଶ୍ମୀରପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ ଏବଂ ହିନ୍ଦୁ ଦେବଦେବୀ ଓ ମନ୍ଦିର ଦେଉଳ ଧ୍ୱଂସ କରିବାରେ ପ୍ରବୃତ୍ତ ହୋଇ କନୌଜ, ମଥୁରା, କାଥିଆବାଡ ପ୍ରଭୃତି ସ୍ଥାନରେ ନୃଶଂସ ଆକ୍ରମଣ ଚଳାଇଥିଲେ । ତାଙ୍କର ସେହି ଆକ୍ରମଣ ଫଳରେ ପଶ୍ଚିମ ଓ ମଧ୍ୟ ଭାରତର ମହାନ୍ ରାଜପୁତ ଶକ୍ତି ଦୁର୍ବଳ ହୋଇ ପଡ଼ିଥିଲା ଏବଂ ତାଙ୍କ ମୃତ୍ୟୁ (୧୦୩୦) ପରେ ଗଜନୀ ସାମ୍ରାଜ୍ୟର ପତନ ଘଟିଥିଲେ ମଧ୍ୟ ହିନ୍ଦୁ ରାଜାମାନେ ସେହି ସୁଯୋଗ ନେଇ ପୁନର୍ବାର କ୍ଷମତା ହାସଲ କରିବା ନିମନ୍ତେ ସକ୍ଷମ ହୋଇ ପାରି ନ ଥିଲେ ।

କିନ୍ତୁ ଗଜନୀ ସାମ୍ରାଜ୍ୟ ଅନ୍ତର୍ଗତ ଘୁର୍‌ର ସାମନ୍ତ ରାଜାମାନେ ସେହି ସୁଯୋଗ ନେଇଥିଲେ ଏବଂ ସେମାନଙ୍କ ମଧ୍ୟରେ କ୍ଷମତା ସଂଘର୍ଷର ସୂତ୍ରପାତ ହୋଇଥିଲା । ସେହି ସଂଘର୍ଷରେ କୁତବୁଦ୍ଦିନ ମହମ୍ମଦ ଓ ତାଙ୍କ ଭ୍ରାତା ସଇଫୁଦ୍ଦିନଙ୍କୁ ହତ୍ୟା କରି ବହ୍‌ରାମଶାହ, ଆଲାଉଦ୍ଦିନ ହୁସେନଙ୍କ ହାତରେ ନିହତ ହୋଇଥିଲେ । ତାର ଦଶ ବର୍ଷ ପରେ ଆଲାଉଦ୍ଦିନଙ୍କ ପୁଅ ମଧ୍ୟ କ୍ଷମତା ସଂଘର୍ଷରେ ତୁର୍କୀୟ ଗୁଜମାନଙ୍କର ଶିକାର ହୋଇଥିଲେ । କିନ୍ତୁ ତାଙ୍କର ଜ୍ଞାତିଭ୍ରାତା ଗିୟାସୁଦ୍ଦିନ ମହମ୍ମଦ ଗୁଜ୍‌ମାନଙ୍କୁ ବିତାଡ଼ିତ କରି ୧୧୭୩ରେ ନିଜ କନିଷ୍ଠ ଭ୍ରାତା ଶାହାବୁଦ୍ଦିନ ବା ମୁଇଜୁଦ୍ଦିନ ମହମ୍ମଦଙ୍କୁ ଶାସନ ଦାୟିତ୍ୱରେ ନିଯୁକ୍ତ କଲେ । ସେ ମହମ୍ମଦ ଘୋରୀ ନାମରେ ପରିଚିତ ଏବଂ ତାଙ୍କ ସମୟରୁହିଁ ଭାରତର ଇତିହାସରେ ମୁସଲମାନ ଶକ୍ତିର ଉଲ୍ଲେଖ-ଯୋଗ୍ୟ ପ୍ରସାର ଘଟିଥିଲା ।

## ମହମ୍ମଦ ଘୋରୀ

ମହମ୍ମଦ ପ୍ରଥମେ ଖ୍ରୀ: ୧୧୭୫ରେ ଭାରତ ଅଭିମୁଖେ ବିଜୟାଭିଯାନ ଆରମ୍ଭ କରି ମୁଲତାନମାନଙ୍କର ଦୁର୍ଭେଦ୍ୟ ଦୁର୍ଗ ଅଧିକାର କରିଥିଲେ । ତା'ପରେ ତାଙ୍କର ୧୧୭୮ର ଗୁଜରାଟ ଅଭିଯାନ ଫଳବତୀ ହୋଇ ପାରି ନଥିଲା ।

କିନ୍ତୁ ପରବର୍ତ୍ତୀ ବର୍ଷ ସେ ପେଶାଓ୍ୱାର ଅଧିକାର କରି ନେଇଥିଲେ ଏବଂ ୧୧୮୧ରେ ସିଆଲକୋଟଠାରେ ଏକ ଦୁର୍ଗ ନିର୍ମାଣ କରିଥିଲେ । ପଞ୍ଜାବରେ ଆଧିପତ୍ୟ ବିସ୍ତାର କଲାପରେ ଉତ୍ତର ଭାରତର ଅନ୍ୟାନ୍ୟ ଅଞ୍ଚଳ ଆକ୍ରମଣ କରିବା ତାଙ୍କ ପକ୍ଷେ ସୁବିଧାଜନକ ହୋଇଥିଲେ ମଧ୍ୟ ମହମ୍ମଦଙ୍କୁ ଦିଲ୍ଲୀ ଓ ଆଜମିର୍‌ର ଅଧୀଶ୍ୱର ଚୌହାନ ବଂଶୀୟ ରାଜପୁତ ବୀର ପୃଥ୍ୱୀରାଜଙ୍କ ସହିତ ରଣକ୍ଷେତ୍ରରେ ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ସେତେବେଳେ କନୌଜର ରାଜା ଜୟଚନ୍ଦ୍ର ପରାକ୍ରମଶାଳୀ ପୃଥ୍ୱୀରାଜଙ୍କର ପ୍ରତିଦ୍ୱନ୍ଦ୍ୱୀ ଥିଲେ । ପୁଣି ପ୍ରେମବିହ୍ୱଳ ପୃଥ୍ୱୀରାଜ ଜୟଚନ୍ଦ୍ରଙ୍କର ଅନନ୍ୟାସୁନ୍ଦରୀ କନ୍ୟା ସଂଯୁକ୍ତାଙ୍କୁ ସ୍ୱୟମ୍ବର ସଭାରୁ ଅପହରଣ କରି ଆଣିଥିଲେ । ଏଭଳି ବିଭିନ୍ନ କାରଣରୁ ଉଭୟଙ୍କ ମଧ୍ୟରେ ସଦ୍‌ଭାବ ନଥିଲା । ସେଥିଯୋଗୁଁ † ୧୧୯୦ରେ ମହମ୍ମଦଙ୍କ ଆକ୍ରମଣର ପ୍ରତିରୋଧ କରିବା ନିମନ୍ତେ ପୃଥ୍ୱୀରାଜଙ୍କୁ ସାହାଯ୍ୟ କରି ନଥିଲେ; ବରଂ ପରୋକ୍ଷରେ ମହମ୍ମଦଙ୍କୁ ସମର୍ଥନ ଜଣାଇଥିଲେ । ତଥାପି ସେଥିରେ ପୃଥ୍ୱୀରାଜ ମହମ୍ମଦଙ୍କୁ ପରାସ୍ତ କରିଥିଲେ । କିନ୍ତୁ † ୧୧୯୨ରେ ମହମ୍ମଦ ପୂର୍ଣ୍ଣପ୍ରସ୍ତୁତିପୂର୍ବକ ପୁନର୍ବାର ଆକ୍ରମଣ କରି ପୃଥ୍ୱୀରାଜଙ୍କୁ ବନ୍ଦୀ ଭାବରେ ଆଣି ପ୍ରାଣଦଣ୍ଡାଦେଶ ଦେଇଥିଲେ ଏବଂ ଯୁଦ୍ଧରେ ତାଙ୍କର ବଂଶଧରମାନଙ୍କୁ ପରାଭୂତ କରିଥିଲେ । ତା ଫଳରେ ଦିଲ୍ଲୀ ସିଂହାସନ ହିନ୍ଦୁମାନଙ୍କ ହସ୍ତରୁ ଚାଲିଗଲା ଏବଂ ଭାରତରେ ମୁସଲମାନ ଶାସନ ପ୍ରତିଷ୍ଠିତ ହେଲା । ଏହା ପରେ ମହମ୍ମଦ ଜୟଚନ୍ଦ୍ରଙ୍କୁ ପରାସ୍ତ କରି କନୌଜ ମଧ୍ୟ ଅଧିକାର କରିଥିଲେ ।

ଅବଶ୍ୟ ଭାରତର ସମଗ୍ର ଅଞ୍ଚଳରେ ମହମ୍ମଦ ଘୋରୀ କ୍ଷମତା ବିସ୍ତାର କରି ନଥିଲେ । ଦକ୍ଷିଣ ଭାରତରେ ଚୋଳମାନେ ପ୍ରଭୁତ୍ୱ ବଜାୟ ରଖିଥିଲେ ଏବଂ ଅନେକ ରାଜ୍ୟ ସ୍ୱାଧୀନ ଭାବରେ ରହିଥିଲେ । ସେ ଯାହାହେଉ, ମହମ୍ମଦଙ୍କ ଦିଲ୍ଲୀ ସିଂହାସନ ଅଧିକାର ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ଘଟଣା, ଏହା ନିଃସନ୍ଦେହ ।

---

† ୧୧୯୦-୯୧ ଓ ୧୧୯୨ରେ ପୃଥ୍ୱୀରାଜ ଓ ଜୟଚନ୍ଦ୍ରଙ୍କ ମଧ୍ୟରେ ତିରୋରୀ-ଠାରେ ଯୁଦ୍ଧ ସଂଘଟିତ ହୋଇଥିବାରୁ ଇତିହାସରେ ତାହା ଯଥାକ୍ରମେ 'ପ୍ରଥମ ତିରୋରୀ ଯୁଦ୍ଧ' ଓ 'ଦ୍ୱିତୀୟ ତିରୋରୀ ଯୁଦ୍ଧ' ନାମରେ ଅଭିହିତ ।

ଖ୍ରୀ: ୧୨୦୩ରେ ଜ୍ୟେଷ୍ଠଭ୍ରାତାଂକ ପରଲୋକ ପରେ ମହମ୍ମଦ ଅଧିବନ୍ଧ ଭାବେ ନିଜକୁ ଗଜନୀ, ଘୁର୍ ଓ ଦିଲ୍ଲୀର ସମ୍ରାଟ ବୋଲି ଘୋଷଣା କରିଥିଲେ । ମାତ୍ର ତାର ତିନିବର୍ଷ ହେବା ପୂର୍ବରୁ ୧୨୦୫ର ଖୋକାର ବିଦ୍ରୋହ ଦମନର ଅବ୍ୟବହିତ ପରେ ମାର୍ଚ୍ଚ ୧୨୦୬ରେ ସେ ଏକ ଅଜ୍ଞାତ ଆତତାୟୀ ଦଳ * ଦ୍ୱାରା ନିହତ ହେଲେ ।

## ଦାସ ବଂଶ

ମହମ୍ମଦ ଘୋରୀଙ୍କର କେହି ପୁତ୍ରସନ୍ତାନ ନଥିବାରୁ ତାଂକର ବିଶ୍ୱସ୍ତ ସେନାପତି କୁତବୁଦ୍ଦିନ ଆଇବାକ୍ ଦିଲ୍ଲୀ ସିଂହାସନରେ ଅଧିଷ୍ଠିତ ହୋଇ-ଥିଲେ । ତାଂକ ପରେ ଇଲ୍‌ତୁତ୍‌ମିସ୍ ଓ ଗିୟାସୁଦ୍ଦିନ ବଲବନ୍ ଦିଲ୍ଲୀ ସିଂହାସନ ମଣ୍ଡନ କରିଥିଲେ । ଏମାନେ ସମସ୍ତେ ଆଦ୍ୟ ଜୀବନରେ କ୍ରୀତଦାସ ଥିବାରୁ ସେମାନଙ୍କ ବଂଶ ଦାସବଂଶ ନାମରେ ପରିଚିତ ।

କୁତବୁଦ୍ଦିନଙ୍କୁ ମହମ୍ମଦ ଘୋରୀ ଜଣେ ବଣିକଙ୍କଠାରୁ କ୍ରୟ କରି ପୁତ୍ର ଭଳି ପାଳିଥିଲେ ଏବଂ ପରେ ତାଙ୍କୁ ସେନାପତି ଭାବରେ ନିଯୁକ୍ତ କରିଥିଲେ । ମହମ୍ମଦଙ୍କର ମୃତ୍ୟୁ ପରେ ସେ ଦିଲ୍ଲୀର ସୁଲତାନ ହୋଇଥିଲେ । ମହମ୍ମଦଙ୍କର ଅନ୍ୟ ଦୁଇ ଜଣ କ୍ରୀତଦାସ ନାସିରୁଦ୍ଦିନ ଓ ତାଜୁଦ୍ଦିନ ଯଥାକ୍ରମେ ମୁଲତାନ ଓ କର୍‌ମାନର ରାଜା ହୋଇଥିଲେ । ତାଜଦ୍ଦିନ କୁତବୁଦ୍ଦିନଙ୍କୁ ଦିଲ୍ଲୀର ସୁଲତାନରୂପେ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ ନ କରିବାରୁ ସେ ଅଗ୍ରନିକ ଆକ୍ରମଣ କରି ତାଜୁଦ୍ଦିନଙ୍କୁ କ୍ଷମତାଚ୍ୟୁତ କରିଥିଲେ । କୁତବୁଦ୍ଦିନ ଥିଲେ ଜଣେ ଉଚ୍ଚ ବିଚ୍ଛୁରବୁଦ୍ଧି ସମ୍ପନ୍ନ ସ୍ପଷ୍ଟବାଦୀ ସୁଲତାନ । କିନ୍ତୁ ସେ ମାତ୍ର ଚାରିବର୍ଷ ରାଜତ୍ୱ କଲାପରେ ଲାହୋରଠାରେ ଆକସ୍ମିକ ଭାବେ ପରଲୋକ ଯାତ୍ରା କରିଥିଲେ ।

---

* ପୃଥ୍ୱୀରାଜ ମରି ନ ଥିଲେ ଏବଂ ତାଂକ ପ୍ରତି ହୋଇଥିବା ଅତ୍ୟାଚାରର ପ୍ରତିଶୋଧ ନେବାକୁ ଯାଇ ଗୁପ୍ତଭାବରେ ମହମ୍ମଦଙ୍କୁ ହତ୍ୟା କରିଥିଲେ ବୋଲି କେତେକ ଐତିହାସିକ ଯେଉଁ ମତ ଦିଅନ୍ତି ତାହା ଯଥାର୍ଥ ମନେ ହୁଏ ନାହିଁ । ଏହା କେବଳ ଖୋକାରମାନଂକ କାଣ୍ଡ ବୋଲି ଅନୁମାନ କରାଯାଇପାରେ ।

କୁତବୁଦ୍ଦିନଙ୍କ ପରେ ଲାହୋରରେ ଅମିର ଓ ମାଲିକମାନେ ତାଂକର ସମ୍ପର୍କୀୟ * ଆରାମଶାହଙ୍କୁ ସୁଲତାନ ପଦ ଅର୍ପଣ କରିଥିଲେ । କିନ୍ତୁ ବର୍ଷକ ପରେ ତାଂକ ରାଜତ୍ୱରେ ସନ୍ତୁଷ୍ଟ ନହୋଇ ସେମାନେ ଷଡ଼ଯନ୍ତ୍ର କରି କୁତବୁଦ୍ଦିନଙ୍କ ଜାମାତା ଶାମସୁଦ୍ଦିନ ଇଲ୍‌ତୁତ୍‌ମିସ୍‌ଙ୍କୁ ରାଜଗାଦୀରେ ବସାଇଥିଲେ ।

ଖ୍ରୀ: ୧୨୧୧ରେ ଦିଲ୍ଲୀ ସିଂହାସନ ଅଳଂକୃତ କରିବା ପରେ ଇଲ୍‌ତୁତ୍‌ମିସ୍‌ଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ନାସିରୁଦ୍ଦିନ ଓ ତାଜୁଦ୍ଦିନ ଦିଲ୍ଲୀର ସିଂହାସନ ଉପରେ ଲୋଲୁପ ଦୃଷ୍ଟି ପକାଇଥିଲେ ଏବଂ ବଙ୍ଗର ଶାସକ ଆଲି ମର୍ଦ୍ଦାନ ତାଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ ନକରି ନିଜକୁ ସୁଲତାନ ଆଲାଉଦ୍ଦିନ ନାମରେ ଅଭିହିତ କରିଥିଲେ । ତେଣେ ରାଜ୍ୟଚ୍ୟୁତ ହିନ୍ଦୁ ରାଜାମାନେ ପ୍ରତିଶୋଧ ନେବା ପାଇଁ ସୁଯୋଗ ଖୋଜୁଥିଲେ । ସର୍ବୋପରି ଦିଲ୍ଲୀର କେତେକ ଅମିର ଇଲ୍‌ତୁତ୍‌ମିସ୍‌ଙ୍କ ବିରୋଧୀ ଥିଲେ । କିନ୍ତୁ ଇଲ୍‌ତୁତ୍‌ମିସ୍ ଅସାମାନ୍ୟ ବୀରତ୍ୱ ଓ ବିଚକ୍ଷଣତାର ସହିତ ସେସବୁ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ପ୍ରଥମେ ଅମିରମାନଙ୍କ ବିଦ୍ରୋହ ଦମନକରି ୧୨୧୬ରେ ସେ ତାଜୁଦ୍ଦିନଙ୍କୁ ବନ୍ଦୀକଲେ ଏବଂ ତାର ପରବର୍ଷ ନସିରୁଦ୍ଦିନଙ୍କୁ ଲାହୋରରୁ ବିତାଡ଼ିତ କରି ନିଜ ଶାସନକୁ ସୁଦୃଢ଼ କଲେ । ଇତ୍ୟବସରେ ଦୁର୍ଦ୍ଧର୍ଷ ମଙ୍ଗୋଲମାନେ ଚଙ୍ଗିଜ ଖାଁଙ୍କ ନେତୃତ୍ୱରେ ମଧ୍ୟ ଓ ପଶ୍ଚିମ ଏସିଆରେ ଆତଙ୍କ ସୃଷ୍ଟି କରି ସିନ୍ଧୁ ଉପତ୍ୟକା ଅଞ୍ଚଳରେ ପହଞ୍ଚିଥିଲେ । ତାଙ୍କ ଭୟରେ ଖିବାରର ରାଜା ଜଲାଲୁଦ୍ଦିନ ଇଲ୍‌ତୁତ୍‌ମିସ୍‌ଙ୍କୁ ଆଶ୍ରୟ ଭିକ୍ଷା କଲେ । କୌଶଳ କରି ତାଙ୍କୁ ଆଶ୍ରୟ ନ ଦେଇ ସେ ମାଙ୍ଗୋଲ ଆକ୍ରମଣ ଏଡ଼ାଇ ପାରିଥିଲେ । ପରେ ବଙ୍ଗ ମଧ୍ୟ ତାଙ୍କର ଶାସନାଧୀନ ହୋଇଥିଲା । ତାଙ୍କର କୃତିତ୍ୱରୁ ଭାରତରେ ତୁର୍କ ସାମ୍ରାଜ୍ୟ ସୁଦୃଢ଼ ହୋଇ ପାରିଥିଲା । ଇଲ୍‌ତୁତ୍‌ମିସ୍ ୨୬ ବର୍ଷ ରାଜତ୍ୱ କରି ଏପ୍ରିଲ ୨୯, ୧୨୩୬ରେ ଇହଧାମ ତ୍ୟାଗ କରିଥିଲେ ।

---

* ଐତିହାସିକମାନେ ଆରାମଶାହଙ୍କୁ କୁତବୁଦ୍ଦିନଂକ ପୁତ୍ର, ଭ୍ରାତା, ଜ୍ଞାତି, ବନ୍ଧୁ ଇତ୍ୟାଦି ବିଭିନ୍ନ ଭାବରେ ଗ୍ରହଣ କରିଥାନ୍ତି; ତେଣୁ ତାଂକର ସଠିକ ସମ୍ପର୍କ ନିରୂପଣ କରିବା ସମ୍ଭବ ନୁହେଁ ।

ଇଲ୍‌ତୁତ୍‌ମିସ୍‌ଙ୍କ ଜ୍ୟେଷ୍ଠପୁତ୍ର ନାସିରୁଦ୍ଦିନ ମାମୁଦ ପିତାଂକର ପ୍ରତିନିଧିରୂପେ ବଙ୍ଗରେ ରାଜତ୍ୱ କରୁଥିବା ସମୟରେ ମୃତ୍ୟୁ ବରଣ କରିଥିବାରୁ ଏବଂ ତାଂକର ଅନ୍ୟ ପୁତ୍ରମାନେ ଶାସନ ଭାର ଗ୍ରହଣ କରିବା ପାଇଁ ଯୋଗ୍ୟ ବିବେଚିତ ନ ହେବାରୁ ସୁଲତାନ ଇଲ୍‌ତୁତ୍‌ମିସ୍ ମୃତ୍ୟୁ ଶଯ୍ୟାରେ ନିଜର ସୁଯୋଗ୍ୟକନ୍ୟା ରେଜିୟାଙ୍କୁ ଉତ୍ତରାଧିକାରିଣୀରୂପେ ମନୋନୀତ କରିଥିଲେ । କିନ୍ତୁ ସେତେବେଳେ ଅମିରମାନେ ଜଣେ ରମଣୀଙ୍କୁ ଦିଲ୍ଲୀ ସିଂହାସନରେ ବସାଇବା ଉଚିତ ମନେ ନକରି ଇଲ୍‌ତୁତ୍‌ମିସ୍‌ଙ୍କ ପୁତ୍ର ରୁକନୁଦ୍ଦିନଙ୍କୁ ସିଂହାସନ ଅର୍ପଣ କରିଥିଲେ । କିନ୍ତୁ ସେ ନିଜକୁ ଅତି ଅଯୋଗ୍ୟ ପ୍ରମାଣିତ କରିବାରୁ ସେହି ଅମିରମାନେ ପ୍ରାୟ ଛମାସପରେ ପୁଣି ରେଜିୟାଙ୍କୁ ଆଣି ସୁଲତାନା ପଦରେ ଭୂଷିତ କଲେ ।

ସୁଲତାନା ରେଜିୟା ଖୁବ୍ କ୍ଷମତାର ସହିତ ରାଜକାର୍ଯ୍ୟ ସଂପାଦନ କରିବା ପାଇଁ ସକ୍ଷମ ହୋଇଥିଲେ ସୁଦ୍ଧା ରକ୍ଷଣଶୀଳ ଅମିରମାନେ ତାଙ୍କୁ ଅଧିକ କାଳ କ୍ଷମତାସୀନା କରି ରଖାଇ ଦେଇ ନ ଥିଲେ । ଖ୍ରୀ: ୧୨୪୦ରେ ସେମାନେ ଇଲ୍‌ତୁତ୍‌ମିସ୍‌ଙ୍କ ପୁତ୍ର ମୁଇଜୁଦ୍ଦିନଙ୍କୁ ସୁଲତାନ ରୂପେ ଅଧିଷ୍ଠିତ କରିଥିଲେ । ତାର ଦୁଇ ବର୍ଷ ପରେ ରୁକନୁଦ୍ଦିନଙ୍କ ପୁତ୍ର ଆଲାଉଦ୍ଦିନ ମାସୁଦ ଶାସନ ଭାର ଗ୍ରହଣ କରିଥିଲେ । ତାତ୍କାଳୀନ ରାଜନୈତିକ ଅସ୍ଥିରତା ଓ ବିଶୃଙ୍ଖଳାର ସୁଯୋଗ ନେଇ ମାଙ୍ଗୋଲମାନେ ୧୨୪୧ରେ ଲାହୋର ଅଧିକାର କରି ୧୨୪୫ ବେଳକୁ ମୁଲତାନ୍ ରାଜ୍ୟ ଅତିକ୍ରମ କରିସାରିଥିଲେ । ସେହି ପରିପ୍ରେକ୍ଷୀରେ ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ବିଚାର କରି ଅମିରମାନେ ୧୨୪୬ରେ ଇଲତୁତ୍‌ମିସ୍‌ଙ୍କ କନିଷ୍ଠ ପୁତ୍ର ନାସିରୁଦ୍ଦିନ ମାମୁଦ (୨ୟ)ଙ୍କୁ ଦିଲ୍ଲୀ ସିଂହାସନରେ ବସାଇଥିଲେ ।

ଗିୟାସୁଦ୍ଦିନ ବଲବନ୍ ଥିଲେ ନାସିରୁଦ୍ଦିନ ମାମୁଦଂକର ପ୍ରଧାନ ମନ୍ତ୍ରୀ ଓ ଉପଦେଷ୍ଟା । ତାଂକ ସାହାଯ୍ୟରେ ହିଁ ସେ ମାଙ୍ଗୋଲ ଆକ୍ରମଣକୁ ପ୍ରତିହତ କରିଥିଲେ ଏବଂ ରାଜ୍ୟରେ ଆଭ୍ୟନ୍ତରୀଣ ଶୃଙ୍ଖଳା ବଜାୟ ରଖିଥିଲେ । ନାସିରୁଦ୍ଦିନଙ୍କର କୌଣସି ପୁତ୍ର ସନ୍ତାନ ନଥିବାରୁ ତାଂକ ମୃତ୍ୟୁପରେ ୧୨୬୬ରେ ଗିୟାସୁଦ୍ଦିନ ବଲବନ ନାସିରୁଦ୍ଦିନଙ୍କ ଉତ୍ତରାଧିକାରୀ ରୂପେ ସିଂହାସନ ଆରୋହଣ କରିଥିଲେ । ଦୃଢ଼ ସାମରିକ ସଙ୍ଗଠନ ଓ ଶାସନ ସଂସ୍କାର ପ୍ରବର୍ତ୍ତନ କରି ସେ ଦାସବଂଶର ଶ୍ରେଷ୍ଠ ଶାସକରୂପେ ଅନ୍ୟୂନ ୨୧ ବର୍ଷ ରାଜତ୍ୱ କରି ୧୨୮୭ ରେ ଇହଲୀଳା ସାଙ୍ଗ କରିଥିଲେ ।

ବଲବନ୍‌ଙ୍କ ପରେ ମଇଜୁଦ୍ଦିନ କାଇକୁବାଦ ନାମକ ଜଣେ ତରୁଣ ଦିଲ୍ଲୀ ସିଂହାସନରେ ଅଧିଷ୍ଠିତ ହୋଇଥିଲେ । କିନ୍ତୁ ତାରୁଣ୍ୟ ବିକାରଗ୍ରସ୍ତ ହୋଇ ବିଳାସବ୍ୟସନରେ ମାତି ରାଜକାର୍ଯ୍ୟରେ ଚରମ ଅବହେଳା କରିବାରୁ ତାର ପରିଣାମରେ ସେ ୧୨୯୦ରେ ଖିଲଜୀ ବଂଶାବତଂଶ ଜଲାଲୁଦ୍ଦିନଂକ ହସ୍ତରେ ନିହତ ହେଲେ ଏବଂ ସେଇଠାରେ ଦାସ ବଂଶର ପତନ ଘଟିଲା ।

## ଖିଲଜୀ ବଂଶ

ଦାସବଂଶୀୟ ସୁଲତାନମାନଂକ ଭଳି ଖିଲଜୀବଂଶୀୟ ରାଜାମାନେ ମଧ୍ୟ ତୁର୍କ ଥିଲେ । ତେବେ ସେମାନଂକ ପୂର୍ବପୁରୁଷମାନେ ଆଫଗାନିସ୍ଥାନରେ ବାସ କରୁଥିଲେ ବୋଲି ସେମାନେ ଆଫଗାନ୍ ରୂପେ ପରିଚିତ । ଆଲାଉଦ୍ଦିନ ଥିଲେ ଖିଲଜୀ ବଂଶର ଶ୍ରେଷ୍ଠ ରାଜା ।

ଜଲାଲୁଦ୍ଦିନ ଅତି ପରିଣତ ବୟସରେ ସିଂହାସନ ଆରୋହଣ କରିଥିବା ଯୋଗୁଁ ସମସ୍ତ ରାଜ୍ୟର ଶାସନ କାର୍ଯ୍ୟ ପରିଚାଳନା କରି ନ ପାରି ନିଜର ପିତୃଚ୍ଛେଉଣ୍ଡ ପୁତୁରା ଆଲାଉଦ୍ଦିନଙ୍କୁ କର ଓ ଅଯୋଧ୍ୟାର ଶାସନ ଦାୟିତ୍ୱରେ ନିଯୁକ୍ତ କରିଥିଲେ ଏବଂ ତାଂକ ହସ୍ତରେ ନିଜର କନ୍ୟାକୁ ମଧ୍ୟ ଅର୍ପଣ କରିଥିଲେ । କିନ୍ତୁ ଆଲାଉଦ୍ଦିନ ଦିଲ୍ଲୀର କେତେକ ଅମିର ଓ କେତେକ ଅଧସ୍ତନ କର୍ମଚାରୀଙ୍କର ପ୍ରରୋଚନାରେ ପଡ଼ି ନିଜର ପିତୃବ୍ୟ ତଥା ଶ୍ୱଶୁର ଏବଂ ତାଙ୍କର ଅନ୍ୟାନ୍ୟ ଆତ୍ମୀୟସ୍ୱଜନଙ୍କୁ ହତ୍ୟାକରି ୧୨୯୬ରେ ସିଂହାସନ ଅଧିକାର କରିଥିଲେ ।

ଆଲାଉଦ୍ଦିନ ଦୃଢ଼ତାର ସହିତ ଏକାଧିକବାର ମଙ୍ଗୋଲ ଆକ୍ରମଣର ପ୍ରତିରୋଧ କରିଥିଲେ ଏବଂ ରାଜ୍ୟଭିତରେ ଆଶ୍ରୟ ନେଇଥିବା ମାଙ୍ଗୋଲ ତଥା 'ନବମୁସଲମାନ'ମାନଙ୍କ ପ୍ରତି ଦୃଢ଼ କାର୍ଯ୍ୟାନୁଷ୍ଠାନ କରିବାକୁ ଯାଇ ସେମାନଙ୍କୁ ହଜାର ହଜାର ସଂଖ୍ୟାରେ ହତ୍ୟା କରିଥିଲେ । ପ୍ରତିରକ୍ଷା ବ୍ୟବସ୍ଥାକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ପୁରାତନ ଦୁର୍ଗର ସଂସ୍କାର ଓ ନୂତନ ଦୁର୍ଗ ନିର୍ମାଣକରିବା ସଙ୍ଗେ ସଙ୍ଗେ ସେନାବାହିନୀର ସଂପ୍ରସାରଣ ଘଟାଇଥିଲେ । ତାଙ୍କ ରାଜତ୍ୱ-କାଳରେ ସେ ଗୁଜରାଟ, ରଣଥମ୍ବୋର, ମେବାର, ମାଳବ, ଉଜ୍ଜୟିନୀ, ଦେବଗିରି, ଓ୍ୱାରଙ୍ଗଲ ପ୍ରଭୃତି ରାଜ୍ୟ ଅଧିକାର କରିବା ଫଳରେ ସମଗ୍ର ଭାରତରେ ମୁସଲମାନ ଆଧିପତ୍ୟ ବିସ୍ତାର ଘଟିଥିଲା । ଆଲାଉଦ୍ଦିନ୍ ନିଜକୁ

'ଦ୍ୱିତୀୟ ଆଲେକଜାଣ୍ଡର' * ବୋଲି ତାଙ୍କ ମୁଦ୍ରାମାନଙ୍କରେ ଲିପିବଦ୍ଧ କରି-ଥିଲେ । ଜେନିକ † ଐତିହାସିକଙ୍କ ମତରେ, ତାଙ୍କ ସମୟରୁହିଁ ଭାରତରେ ସୁଲତାନୀ ଶାସନର ପରମ୍ପରା ପ୍ରତିଷ୍ଠିତ ହୋଇଥିଲା ।

ତେବେ ଆଲାଉଦ୍ଦିନ ଖୁବ୍ ଉଚ୍ଚାଭିଳାଷୀ ଓ ସ୍ୱେଚ୍ଛାଚାରୀ ହୋଇପଡି-ଥିଲେ ଏବଂ ପ୍ରଜାମତକୁ ଭ୍ରୂକ୍ଷେପ ନକରି ସେମାନଙ୍କ ପ୍ରତି ଦୃଢ଼ ଓ କଠୋର ଶାସନ ବ୍ୟବସ୍ଥା କରିଥିଲେ । ତେଣୁ ତାଂକ ଶାସନକାଳର ଅନ୍ତିମ ପର୍ଯ୍ୟାୟ ବେଳକୁ ସେ ପ୍ରଜାମାନଙ୍କର ବିରାଗଭାଜନ ହୋଇଥିଲେ ।

ଖ୍ରୀ: ୧୩୧୬ରେ ଆଲାଉଦ୍ଦିନଙ୍କ ମୃତ୍ୟୁ ପରେ ତାଙ୍କର ବିଶ୍ୱସ୍ତ ସେନାପତି କାଫୁର ସିଂହାସନ ଅଧିକାର କରିଥିଲେ ଏବଂ କ୍ଷମତା ମୋହର ବଶବର୍ତ୍ତୀ ହୋଇ ଆଲାଉଦ୍ଦିନଙ୍କ ଦୁଇପୁତ୍ର ଖିଜର ଖାଁ ଓ ସାଦୀ ଖାଁଙ୍କ ଚକ୍ଷୁ ନଷ୍ଟକରି ତୃତୀୟପୁତ୍ର ମୁବାରକଙ୍କୁ ଅନ୍ଧକରିବା ଉଦ୍ଦେଶ୍ୟରେ କାରାକକ୍ଷରେ ନିକ୍ଷେପ କରିଥିଲେ ଏବଂ ରାଣୀମାତାଙ୍କର ସମସ୍ତ ଅଧିକାର ଅପହରଣ କରି ବନ୍ଦୀ ଆଦେଶ ଦେଇଥିଲେ । କିନ୍ତୁ ତାଙ୍କର ଅତ୍ୟାଚାର ଦୀର୍ଘସ୍ଥାୟୀ ହୋଇ ନ ଥିଲା । ମାତ୍ର ୩୫ ଦିନ ପରେ ଜଣେ ଅଙ୍ଗରକ୍ଷୀଦ୍ୱାରା ସେ ନିହତ ହେଲେ ଏବଂ ଆଲାଉଦ୍ଦିନଙ୍କ ଚତୁର୍ଥ ପୁତ୍ରଙ୍କୁ ସିଂହାସନ ମିଳିଥିଲା । ତେବେ ସେ ନାବାଳକ ଥିବାରୁ ମୁବାରକଙ୍କୁ ତାଙ୍କର ତତ୍ତ୍ୱାବଧାରକ ନିଯୁକ୍ତ କରାଯାଇଥିଲା । କିନ୍ତୁ ଦୁଇମାସ ପରେ ମୁବାରକ ନିଜ କନିଷ୍ଠ ସହୋଦରର ଚକ୍ଷୁ ନଷ୍ଟକରି କୁତ-ବୁଦ୍ଦିନ ମୁବାରକଶାହ ନାମରେ ନିଜକୁ ପରିଚିତକରାଇ ସିଂହାସନ ଆରୋହଣ କଲେ ।

ମୁବାରକଙ୍କ ରାଜତ୍ୱ ମଧ୍ୟ ଦୀର୍ଘ ସ୍ଥାୟୀ ହୋଇ ପାରି ନଥିଲା । ସେ ଅତି କ୍ରୂର, କଠୋର ଓ ବିଳାସପ୍ରିୟ ହୋଇ ପଡ଼ିଥିଲେ । ତାର ପରିଣାମରେ ଖୁସ୍ରୁ ନାମକ ଜଣେ ଭିନ୍ନବଂଶୀୟ ବ୍ୟକ୍ତି ତାଙ୍କୁ ହତ୍ୟାକରି ୧୩୨୦ ରେ ନାସିରୁଦ୍ଦିନ ଖୁସ୍ରୁଶାହ ଉପାଧି ଧାରଣ ପୂର୍ବକ ଦିଲ୍ଲୀ ସିଂହାସନ ଆରୋହଣ କଲେ । ଫଳରେ ଖିଲଜୀ ବଂଶୀୟ ଶାସନର ଅବସାନ ହେଲା ।

* Wright: Catalogue of the Coins in the Indian Museum (Vol. II) P. 8 ଦ୍ରଷ୍ଟବ୍ୟ ।

† Sir Wolseley Haig.

ଖୁସ୍ରୁ ହିନ୍ଦୁ ଭାବରେ ଜନ୍ମ ହୋଇ ପରେ ଇସଲାମ ଧର୍ମ ଗ୍ରହଣ କରିଥିବାରୁ ହିନ୍ଦୁମାନଙ୍କ ପ୍ରତି ସାମାନ୍ୟ ଦୁର୍ବଳ ଥିଲେ । ସେ ସୁଲତାନଙ୍କର ବଂଶଧର ଓ ଆତ୍ମୀୟଙ୍କ ପ୍ରତି ଅତି ନିର୍ମମ ହୋଇପଡ଼ିଥିଲେ । ତାଙ୍କ ଆଚରଣ ତୁର୍କ ଅମିରମାନଙ୍କ ପକ୍ଷରେ ଅସହ୍ୟ ହେବାରୁ ସେମାନେ ପଞ୍ଜାବ ସୀମାନ୍ତର ଶାସକ ଗାଜି ମାଲିକଙ୍କ ସାହାଯ୍ୟ ନେଇଥିଲେ । ସେ ଖୁସ୍ରୁଙ୍କୁ ରାଜ୍ୟଚ୍ୟୁତ ଓ ନିହତ କରି ୧୩୨୦ ମସିହା ସେପ୍ଟେମ୍ବର ୫ ତାରିଖରେ ଗିୟାସୁଦ୍ଦିନ ତୋଗଲକ ଉପାଧିରେ ଭୂଷିତ ହୋଇ ସିଂହାସନ ଅଧିକାର କରିଥିଲେ ।

## ତୋଗଲକ ବଂଶ

ଗାଜି ମାଲିକ ବା ଗିୟାସୁଦ୍ଦିନ ତୋଗଲକଙ୍କୁ ସ୍ୱଦେଶୀରୂପେ ଧରି-ଯାଇପାରେ, କାରଣ ତାଙ୍କର ପିତା ଗିୟାସୁଦ୍ଦିନ ବଲବନଙ୍କ ସମୟରେ ଭାରତକୁ ଆସିଥିଲେ ଏବଂ ଜଣେ ପଞ୍ଜାବୀ କନ୍ୟାକୁ ବିବାହ କରିଥିଲେ । ତେଣୁ ତୋଗଲକ ବଂଶଧରମାନେ ବିଶେଷ ମାତ୍ରାରେ ବିଜାତୀୟ ନଥିଲେ ।

ଗିୟାସୁଦ୍ଦିନ ୧୩୨୦ ରେ ଦିଲ୍ଲୀ ସିଂହାସନରେ ଆରୋହଣ କରିବା ସଙ୍ଗେ ସଙ୍ଗେ ପୂର୍ବ ପୁରୁଷଙ୍କ ରାଜତ୍ୱ କାଳରେ ଦେଖାଦେଇଥିବା କୁସଂସ୍କାର ଦୂରକରି ଶାନ୍ତି ଶୃଙ୍ଖଳା ପ୍ରତିଷ୍ଠା କରିବା ନିମନ୍ତେ ପ୍ରୟାସ କରିଥିଲେ । ମୁବାରକ ଓ ଖୁସ୍ରୁ ବିଳାସବ୍ୟସନରେ ନିମଜ୍ଜିତ ରହି ଓ ଅପାତ୍ରରେ ଦାନ କରି ରାଜକୋଷକୁ ଶୂନ୍ୟକରି ଦେଇଥିବାରୁ ଗିୟାସୁଦ୍ଦିନ ତାର ଦୃଢ଼ ନିୟନ୍ତ୍ରଣ ଓ ପୁନରୁଦ୍ଧାର ବ୍ୟବସ୍ଥା କରିଥିଲେ । ସେତେବେଳେ ବଙ୍ଗର ଆଭ୍ୟନ୍ତରୀଣ ବିବାଦର ସୁଯୋଗ ନେଇ ସେ ବଙ୍ଗ ଆକ୍ରମଣ କରିଥିଲେ । କିନ୍ତୁ ୧୩୨୫ ରେ ବଙ୍ଗ ବିଜୟ କରି ଫେରୁଥିବା ବେଳେ ରାସ୍ତାରେ ତାଙ୍କ ପୁତ୍ର ଜୌନାଙ୍କଦ୍ୱାରା ନିର୍ମିତ ଏକ କାଷ୍ଠ ଅଟ୍ଟାଳିକା * ଭାଙ୍ଗି ପଡିବା ଫଳରେ ତାଙ୍କର ମୃତ୍ୟୁ ଘଟିଥିଲା ।

* 'ଇବନ୍‌ବତୁତା' ଅନୁସାରେ ଜୌନା ପିତାଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ଷଡ଼ଯନ୍ତ୍ର କରି ସେହି କାଷ୍ଠ ଅଟ୍ଟାଳିକା ନିର୍ମାଣ କରିଥିଲେ । କିନ୍ତୁ ସମସାମୟିକ ଐତିହାସିକ ବର୍ଣ୍ଣୀଙ୍କ ମତରେ ଗିୟାସୁଦ୍ଦିନଙ୍କ ମୃତ୍ୟୁ ଏକ ଆକସ୍ମିକ ଦୁର୍ଘଟଣା ମାତ୍ର ।

ନୌନା ପିତାଙ୍କ ମୃତ୍ୟୁର ଭିନଦିନ ପରେ ମହମ୍ମଦବିନ୍ ତୋଗଲକ ଉପାଧି ଧାରଣ କରି ନିଜକୁ ସୁଲତାନ ବୋଲି ଘୋଷଣା କଲେ । ମହମ୍ମଦ ତୋଗଲକ ଚତୁର ନା ଅର୍ଦ୍ଧପାଗଳ, ଆଦର୍ଶବାଦୀ ନା କଳ୍ପନାବାଦୀ, ରକ୍ତ-ପିପାସୁ ନା ଶୁଭେଚ୍ଛୁ ତାହା ନିରୂପଣ କରିବା ସେତେ ସହଜ ନୁହେଁ । ତେବେ ସେ ଜଣେ ବିଦ୍ୱାନ୍ ଥିଲେ ଏବଂ ଧର୍ମ, ଦର୍ଶନ, ବିଜ୍ଞାନ, ଗଣିତ, ଜ୍ୟୋତିଷ, କାବ୍ୟ, କବିତା, ଯୁଦ୍ଧବିଦ୍ୟାଦି ସର୍ବଶାସ୍ତ୍ରନିପୁଣ ଥିଲେ । ସେ ନଥିଲେ ବିଳାସବ୍ୟସନୀ ବା ନିଶାସକ୍ତ; କିନ୍ତୁ ଶାସ୍ତ୍ରଜ୍ଞାନରେ ଭାସିଯାଇ ବାସ୍ତବତା ପ୍ରତି ବିଶେଷ ଦୃଷ୍ଟି ଦେଇ ନଥିଲେ । ପୋଥି ବାଇଗଣ ଓ ବାଡ଼ି ବାଇଗଣ ମଧ୍ୟରେ ଥିବା ତଫାତ୍ ହୃଦୟଙ୍ଗମ ନ କରି କପୋଳକଳ୍ପିତ ଯୋଜନାମାନ ଗଢ଼ିଥିଲେ । ଫଳରେ ୧୩୨୭ ରେ ଦିଲ୍ଲୀରୁ ଦେବଗିରି (ଦୌଲତାବାଦ) କୁ ରାଜଧାନୀ ବଦଳାଇ ପୁଣି ୧୩୩୧ ରେ ତାହା ଦିଲ୍ଲୀକୁ ଉଠାଇ ଆଣିଥିଲେ । ଚୀନ ଓ ପେର୍ସିଆର ଅନୁକରଣରେ ସେ ୧୩୨୩ରେ ତାମ୍ରମୁଦ୍ରା ପ୍ରଚଳନ କରିଥିଲେ କିନ୍ତୁ ତା ଫଳରେ ନକଲି ମୁଦ୍ରାର ପ୍ରସାର ଘଟିବାରୁ ବର୍ଷକ ପରେ ଉଚିତ ମୂଲ୍ୟ ଦେଇ ତାହା ପୁଣି ପ୍ରତ୍ୟାହୃତ କରି ନେଇଥିଲେ । ଅନୁର୍ବର ପଡ଼ିଆ ଜମିକୁ କୃଷୋପଯୋଗୀ କରିବା ଉଦ୍ଦେଶ୍ୟରେ ପ୍ରଭୂତ ଅର୍ଥ ବରବାଦ୍ କରିଥିଲେ । ସେହିଭଳି ତାଙ୍କର ଉତ୍କଟ ବିଜୟାଭିଳାଷ ବ୍ୟର୍ଥ ହୋଇଥିଲା ଏବଂ ହିମାଚଳର ପାଦଦେଶରେ ତାଙ୍କ ସେନାବାହିନୀର ତୁଷାର ସମାଧି ଘଟିଥିଲା । ଏସବୁ ମାନସିକ ଅଶାନ୍ତି ଭିତରେ ଜ୍ୱରଗ୍ରସ୍ତ ହୋଇ ୧୩୫୧ରେ ସେ ପ୍ରାଣ ହରାଇ-ଥିଲେ । ସ୍ଥାନ କାଳ ନ ବିଚାରି ବିଭିନ୍ନ ପ୍ରଗତିଶୀଳ କାର୍ଯ୍ୟପନ୍ଥା ଗ୍ରହଣ କରିଥିବାରୁ ହିଁ ସେ କୌଣସି କ୍ଷେତ୍ରରେ କୃତକାର୍ଯ୍ୟ ହୋଇପାରି ନଥିଲେ ।

ସିଂହାସନ ଆରୋହଣ କରିବା ଲାଗି ମହମ୍ମଦଙ୍କର କେହି ପୁତ୍ର ସନ୍ତାନ ନଥିବା ଯୋଗୁଁ ତାଙ୍କ ମୃତ୍ୟୁ ପରେ ଦୁଇଦିନ ପାଇଁ ରାଜ୍ୟରେ ଘୋର ଅରାଜକତା ବ୍ୟାପିଗଲା । ତେଣୁ ସୁଲତାନଙ୍କର ବିଶ୍ୱସ୍ତ ମନ୍ତ୍ରୀ ଖ୍ୱାଜା-ଇ-ଜହାଁ ମହମ୍ମଦଙ୍କର ଜ୍ଞାତିଭ୍ରାତା * ଫିରୋଜଙ୍କୁ ସିଂହାସନରେ ବସାଇଥିଲେ । ସେତେ-ବେଳେ ଅଧଃପତିତ ସମାଜର ପୁନରୁଦ୍ଧାର ଥିଲା ତାଙ୍କର ପ୍ରଧାନ କର୍ତ୍ତବ୍ୟ । କିନ୍ତୁ ସେଥିଲାଗି ସେ ସମର୍ଥ ନଥିଲେ । ପୁଣି ବଙ୍ଗ, ଓଡ଼ିଶା ଓ ତେଲେଙ୍ଗାନା

* କେତେକ ଐତିହାସିକଙ୍କ ମତରେ ଫିରୋଜ ଖ୍ୱାଜା-ଇ-ଜହାଁଙ୍କର ଅବୈଧ ସନ୍ତାନ ।

ଆକ୍ରମଣରେ ବିଫଳତା ତାଙ୍କ ଦୁର୍ବଳତାର ପ୍ରମାଣ ଦେଇଥିଲା । ଏହା ବ୍ୟତୀତ ସେ ଥିଲେ ଜଣେ ଧର୍ମାନ୍ଧ ମୁସଲମାନ । ତାଙ୍କର ଜନନୀ ଜଣେ ହିନ୍ଦୁ ରାଜପୁତ ମହିଳା ଥିଲେ ସୁଦ୍ଧା ଫିରୋଜ ହିନ୍ଦୁମାନଙ୍କ ପ୍ରତି ବିଦ୍ୱେଷ ଭାବ ପୋଷଣ କରିଥିଲେ ଏବଂ ହିନ୍ଦୁ ମନ୍ଦିର ଓ ଦେବାଳୟର ଧ୍ୱଂସ ସାଧନ ନିମିତ୍ତ କୁଣ୍ଠା ପ୍ରକାଶ କରୁ ନଥିଲେ । ହିନ୍ଦୁ ବ୍ରାହ୍ମଣମାନଙ୍କ ଉପରେ ସେ ଜିଜିୟା କର ବସାଇଥିଲେ ଏବଂ ଯେଉଁମାନେ ମୁସଲମାନ ଧର୍ମ ଗ୍ରହଣ କରୁଥିଲେ ତାଙ୍କୁ ସେଥିରୁ ଅବ୍ୟାହତି ଦେଉଥିଲେ । ସେ ଥିଲେ ମିଶର ଖଲିଫାଙ୍କର ଚରମ ସମର୍ଥକ । ତାଂକ ସମୟରେ କ୍ରୀତଦାସଙ୍କ ସଂଖ୍ୟା ବୃଦ୍ଧି ଘଟିଥିଲା । ଫିରୋଜଙ୍କ ଦରବାରର ବିଶିଷ୍ଟ ଐତିହାସିକ ଶାମସି ସିରାଜ ଅଫିଫ୍‌ଙ୍କ † ମତରେ ତାଙ୍କ ରାଜଧାନୀ ଓ ପ୍ରଦେଶଗୁଡ଼ିକରେ ଅନ୍ୟୂନ ୧୮୦୦୦୦ କ୍ରୀତଦାସ ଥିଲେ । କିନ୍ତୁ ଏହା ସତ୍ତ୍ୱେ ସେ କେତେକ ଜନହିତକର କାର୍ଯ୍ୟ କରିଥିଲେ । କୋରାନ୍‌ସମ୍ମତ କର-ପ୍ରଥା ପ୍ରଚଳନ କରି ଶୁଳ୍କଭାର ଲାଘବ କରିଥିଲେ । କୃଷି ଓ ବାଣିଜ୍ୟର ଅଭିବୃଦ୍ଧି ଦିଗରେ ଦୃଷ୍ଟି ଦେଇଥିଲେ । ନ୍ୟାୟ ଶାସନକୁ ଅଧିକ ମାନବଧର୍ମୀ କରିବାକୁ ଯାଇ ପୂର୍ବରୁ ପ୍ରଚଳିତ ଥିବା ନିର୍ମମ ଓ କଠୋର * ଦଣ୍ଡବିଧିକୁ କୋହଳ କରିଦେଇଥିଲେ । ସଂକ୍ଷେପରେ କହିବାକୁ ଗଲେ, ତାଙ୍କ ରାଜତ୍ୱରେ ପ୍ରଜାବୃନ୍ଦ ଅପେକ୍ଷାକୃତ ଅଧିକ ସୁଖଶାନ୍ତି ଓ ସମୃଦ୍ଧିମୟ ଜୀବନ ଯାପନ କରିଥିଲେ ।

ଫିରୋଜଙ୍କ ଶେଷ ଜୀବନ ଅଶାନ୍ତି ମଧ୍ୟରେ ଅତିବାହିତ ହୋଇଥିଲା । ତାଂକ ଜ୍ୟେଷ୍ଠ ପୁତ୍ର ଫତେଖାଁଙ୍କର ଅକାଳ ବିୟୋଗ ଘଟିଥିଲା ଏବଂ କନିଷ୍ଠ ପୁତ୍ର ମହମ୍ମଦ ଖାଁ ବିଳାସବ୍ୟସନରେ ନିମଜ୍ଜିତ ରହି ପିତାଂକ ବିରୋଧରେ ଗୃହଯୁଦ୍ଧ ଭିଆଇଥିଲେ । ତେଣୁ ଫିରୋଜ ଫତେ ଖାଁଙ୍କର ପୁତ୍ର ତୋଗଲକ ଖାଁଙ୍କୁ ନିଜର ଉତ୍ତରାଧିକାରୀ ମନୋନୀତ କରି ଖ୍ରୀ: ୧୩୮୮ରେ ପରଲୋକ ଯାତ୍ରା କରିଥିଲେ ।

ତୋଗଲକ ଖାଁ ଗିୟାସୁଦ୍ଦିନ ତୋଗଲକଶାହ (୨ୟ) ଉପାଧି ଧାରଣ କରି ସିଂହାସନ ଆରୋହଣ କରିବାର ପାଞ୍ଚମାସ ପରେ ଏକ ଚକ୍ରାନ୍ତର ଶିକାର

---

† Futuhat-i-Firuz Shahi—Elliot & Dowson—Vol, III. P. 341 ଦ୍ରଷ୍ଟବ୍ୟ ।

* ଫିରୋଜଙ୍କ ପୂର୍ବରୁ ହସ୍ତପଦନାସାକର୍ଣ୍ଣାଦି ଛେଦନ, ନୟନୋତ୍ପାଟନ, କଣ୍ଟକବେଧ ପ୍ରଭୃତି ଦଣ୍ଡ ବିଧାନ ପ୍ରଚଳିତ ଥିଲା ।

ହେଲେ ଏବଂ ତାଂକର ଜ୍ଞାତି ଭ୍ରାତା ଆବୁ ବେକର୍ ସିଂହାସନ ଅଧିକାର କଲେ । କିନ୍ତୁ ତାର ଦେଢ଼ବର୍ଷ ପରେ ଆତ୍ମଗୋପନ କରିଥିବା ମହମ୍ମଦ (ଫିରୋଜଂକପୁତ୍ର) ଆସି ତାଂକଠାରୁ ଶାସନଭାର ଛଡ଼ାଇନେଲେ । ୧୩୯୪ରେ ମହମ୍ମଦଙ୍କ ପରଲୋକ ପରେ ତାଂକ ପୁତ୍ର ହୁମାୟୁନ ଦୁଇମାସ ରାଜତ୍ୱ କରି ପିତାଂକ ପଶ୍ଚାଦ୍ଧାବନ କରିଥିଲେ । ହୁମାୟୁନଂକ ପରେ ମହମ୍ମଦଂକର କନିଷ୍ଠ ପୁତ୍ର ନାସିରୁଦ୍ଦିନ ମାମୁଦ ଦିଲ୍ଲୀ ସିଂହାସନ ଅଧିକାର କଲେ ।

ଫିରୋଜଂକ ମୃତ୍ୟୁ ପରେ ତୋଗଲକ ସାମ୍ରାଜ୍ୟର ଅଧଃପତନ ଆରମ୍ଭ ହୋଇଥିଲା । ଗୁଜରାଟ, ମାଳବ, ଜୌନପୁର, ଖାନ୍ଦେଶ ପ୍ରଭୃତି ରାଜ୍ୟ ସ୍ୱାଧୀନଭାବରେ ମୁଣ୍ଡ ଟେକିଥିଲେ । ପୁଣି ତୋଗଲକ ବଂଶର ଉତ୍ତରାଧିକାରୀଙ୍କ ମଧ୍ୟରେ କଳହ ଲାଗି ରହିଥିଲା । ଏତାଦୃଶ ପରିସ୍ଥିତିର ସୁଯୋଗ ନେଇ ତୁର୍କ ବିଦ୍ରୋହୀ ତୈମୁରଲଙ୍ଗ ସମରକନ୍ଦରୁ ଆସି ଭାରତ ଆକ୍ରମଣ କରିଥିଲେ । ନାସିରୁଦ୍ଦିନଙ୍କ ପ୍ରତିରୋଧ ଉଦ୍ୟମକୁ ପ୍ରତିହତ କରି ସେ ଦିଲ୍ଲୀସିଂହାସନ ଅଧିକାର କରିନେଲେ । ମାତ୍ର ୧୫ ଦିନ ଦିଲ୍ଲୀରେ ରହିବା ପରେ ଜନୈକ ଆଫଗାନ୍ ଖିଜର ଖାଁଙ୍କୁ ମୁଲତାନ, ଲାହୋର ଓ ଦିପାଳପୁରର ଶାସକ ନିଯୁକ୍ତ କରି ସେ ଫେରିଯାଇଥିଲେ, କିନ୍ତୁ ଯିବା ରାସ୍ତାରେ ମିରଟ, କାଂଗ୍ରା, ଜାମ୍ମୁ ପ୍ରଭୃତି ସ୍ଥାନରେ ରକ୍ତସ୍ରୋତ ବୁହାଇ ଦେଇଥିଲେ । ସେ ମୋଗଲ ଆକ୍ରମଣ ପାଇଁ ପଥ ପରିଷ୍କାରକରି ଦେଇଗଲେ । ତାଙ୍କ ପ୍ରତ୍ୟାବର୍ତ୍ତନ ପରେ ନାସିରୁଦ୍ଦିନ ମାମୁଦ ଦିଲ୍ଲୀ ଫେରିଥିଲେ ସତ୍ୟ କିନ୍ତୁ ତୋଗଲକ ବଂଶର ଲୁପ୍ତ ଶକ୍ତି ପୁନରୁଜ୍ଜୀବିତ ହୋଇ ନଥିଲା ।

## ସୈୟଦ ଓ ଲୋଦୀ ବଂଶ

ଖ୍ରୀ: ୧୪୧୩ରେ ମାମୁଦଙ୍କ ପରଲୋକ ପରେ ଦୌଲତ ଖାଁ ଲୋଦୀ ଦିଲ୍ଲୀର ସୁଲତାନରୂପେ ଘୋଷିତ ହେଲେ । କିନ୍ତୁ ବର୍ଷେ ନ ପୂରୁଣୁ ଖିଜର ଖାଁ ଆସି ତାଂକୁ ରାଜ୍ୟଚ୍ୟୁତ କଲେ ଏବଂ 'ସୈୟଦ' ଉପାଧିରେ ଭୂଷିତ ହୋଇ ଏକ ନୂତନ ରାଜବଂଶକୁ ଜନ୍ମଦେଲେ । ତାଂକ ପରେ ସୈୟଦବଂଶର ତିନିଜଣ ରାଜା ମୁବାରକ ଶାହ, ମହମ୍ମଦ ଶାହ ଓ ଆଲାଉଦ୍ଦିନ ଆଲମ ଶାହ ପୁରୁଷାନୁକ୍ରମେ ଶାସନ କରିଥିଲେ । ଶେଷୋକ୍ତ ଶାସକ ଆଲମ ଶାହ ୧୪୫୧ରେ ବହଲୁଲ୍ ଲୋଦୀ ନାମକ ଜଣେ ଅମିରଙ୍କ ହାତରେ ରାଜ୍ୟ ଭାର

ଅର୍ପଣକର ଶାସନ ଦାୟିତ୍ୱରୁ କ୍ଷାନ୍ତ ହୋଇଥିଲେ । ବହଲୁଲ ହିଁ ଥିଲେ ଲୋଦୀବଂଶର ପ୍ରତିଷ୍ଠାତା ।

ଲୋଦୀବଂଶରେ ତିନଜଣ ଶାସକ ବହଲୁଲ୍, ସିକନ୍ଦର ଓ ଇବ୍ରାହିମ ପୁରୁଷାନୁକ୍ରମେ ୧୪୫୧ରୁ ୧୫୨୬ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେମାନଙ୍କ ମଧ୍ୟରେ ସିକନ୍ଦର ଲୋଦୀ ଥିଲେ ଶ୍ରେଷ୍ଠ ସୁଲତାନ । ତାଂକ ପରେ ଇବ୍ରାହିମ ଲୋଦୀ ନିଜର ଔଦ୍ଧତ୍ୟ ଓ ନିଷ୍ଠୁର ପ୍ରକୃତି ପାଇଁ ଅମିରମାନଙ୍କର ବିରାଗଭାଜନ ହୋଇଥିଲେ । ଫଳରେ ସେମାନେ ପଞ୍ଜାବର ଶାସକ ଦୌଲତ ଖାଁ ଓ ଇବ୍ରାହିମଙ୍କ ପିତୃବ୍ୟ ଆଲମଖାଁଙ୍କ ସହିତ ମିଳିତ ଷଡ଼ଯନ୍ତ୍ର କରିଆଇ କାବୁଲ ସୁଲତାନ ବାବରଙ୍କୁ ଆମନ୍ତ୍ରଣ କରି ଆଣିଲେ । ବାବର ବିଖ୍ୟାତ ପାନିପଥ ଯୁଦ୍ଧରେ ଇବ୍ରାହିମଙ୍କୁ ପରାସ୍ତ କରି ଦିଲ୍ଲୀ ସିଂହାସନ ଆରୋହଣ କଲେ । ଭାରତର ଇତିହାସରେ ତୁର୍କ-ଆଫଗାନ ଶାସନର ଅବସାନ ଘଟିଲା ଏବଂ ମୋଗଲ ରାଜତ୍ୱ ଆରମ୍ଭ ହେଲା ।

—୪୦୫—

# ଏକାଦଶ ପର୍ଯ୍ୟାୟ

# ମୁସଲମାନ ଯୁଗ (ଖ)

## ଦିଲ୍ଲୀ ସୁଲତାନୀ ସାମ୍ରାଜ୍ୟର ବିଲୟ ଓ ବିଭିନ୍ନ ସ୍ୱାଧୀନ ରାଜ୍ୟର ଅଭ୍ୟୁଦୟ

ପ୍ରକୃତରେ ଦେଖିବାକୁ ଗଲେ, ମହମ୍ମଦ ତୋଗଲକଙ୍କ ଶାସନ କାଳରେ ହିଁ ଦିଲ୍ଲୀ ସୁଲତାନୀ ସାମ୍ରାଜ୍ୟର ଅଧଃପତନ ଆରମ୍ଭ ହେଲା । ସୁଲତାନ ମହମ୍ମଦଙ୍କର ଅନିଶ୍ଚିତ ଓ ଅବିବେଚିତ କାର୍ଯ୍ୟକଳାପ ଯୋଗୁଁ ଅଖଣ୍ଡ ସୁଲତାନୀ ସାମ୍ରାଜ୍ୟରେ ବିଭାଜକ ଶକ୍ତିର ଅଭ୍ୟୁଦୟ ଘଟିଲା ଏବଂ ସାମ୍ରାଜ୍ୟର ଏକାଗ୍ରତା ବିନଷ୍ଟ ହେଲା । ମହମ୍ମଦଙ୍କ ଉତ୍ତରାଧିକାରୀ ଫିରୋଜ ଶାହଙ୍କର କ୍ରୀତଦାସ ପ୍ରଥା, ଜାଗିର୍ ଓ ଜିଜିୟାକର ପ୍ରଚଳନାଦି ପ୍ରତିକୂଳାଚରଣ ଦ୍ୱାରା ସୁଲତାନ ସାମ୍ରାଜ୍ୟର ବିଲୟ ପ୍ରକ୍ରିୟା ଅଧିକ ତ୍ୱରାନ୍ୱିତ ହୋଇଥିଲା ଏବଂ ସୟଦ ଓ ଲୋଦୀ ବଂଶୀୟ ଶାସକମାନଙ୍କର ଦୁର୍ବଳ ନୀତି ତାକୁ ସଙ୍ଗଠିତ କରିପାରି ନ ଥିବା । ତା ଫଳରେ କେନ୍ଦ୍ରାପସାରୀ ପ୍ରବୃତ୍ତି ବୃଦ୍ଧି ପାଇଥିଲା ଏବଂ କାଳକ୍ରମେ ସୁଲତାନୀ ସାମ୍ରାଜ୍ୟର ଭଗ୍ନ ସ୍ତୂପ ଉପରେ ବଙ୍ଗ, ମାଳବ, ଗୁଜରାଟ, ଖାନ୍ଦେଶ, ବାହମନୀ, ବିଜୟନଗର, ନେପାଳ ପ୍ରଭୃତି ବହୁ ସ୍ୱାଧୀନ ରାଜ୍ୟ ଗଢ଼ି ଉଠିଥିଲା ।

### ବଙ୍ଗ

ଖ୍ରୀ: ୧୩୩୬ରେ ମହମ୍ମଦ ବିନ୍ ତୋଗଲକଙ୍କ ଶାସନ କାଳରେ ଯେତେବେଳେ ଫକରୁଦ୍ଦିନ ନିଜକୁ ପୂର୍ବବଙ୍ଗର ରାଜା ବୋଲି ଘୋଷଣା କଲେ, ସେହି ସମୟରୁ ହିଁ ସ୍ୱାଧୀନ ବଙ୍ଗର ମୂଳଦୁଆ ପଡ଼ିଥିଲା । ଏହାର ଅଳ୍ପକାଳ ପରେ ଆଲାଉଦ୍ଦିନ ଶାହ ପଶ୍ଚିମ ବଙ୍ଗର ସ୍ୱାଧୀନ ରାଜା ରୂପେ ପ୍ରଭୁତ୍ୱ ପ୍ରତିଷ୍ଠା କରିଥିଲେ ଏବଂ ଖ୍ରୀ: ୧୩୦୫ରେ ହାଜି ଇଲିୟାସ 'ଶାମସୁଦ୍ଦିନ ଇଲିୟାସ ଶାହ' ନାମରେ ସମଗ୍ର ବଙ୍ଗରେ ଆଧିପତ୍ୟ ବିସ୍ତାର କରିବା ପର୍ଯ୍ୟନ୍ତ

ବଙ୍ଗପ୍ରଦେଶ ପୂର୍ବବଙ୍ଗ ଓ ପଶ୍ଚିମବଙ୍ଗ ଦୁଇଟି ସ୍ୱାଧୀନ ରାଜ୍ୟରେ ବିଭକ୍ତ ହୋଇଥିଲା । ୧୩୫୭ରେ ଇଲୟାସଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ସିକନ୍ଦର ଶାହ ଶାସନଭାର ଗ୍ରହଣ କରିଥିଲେ ଏବଂ ୧୩୯୩ରେ ଉତ୍ତରାଧିକାର କ୍ରମେ ତାଙ୍କ ପୁତ୍ର ଗିୟାସୁଦ୍ଦିନ ଆଜମ ତାହା ହସ୍ତଗତ କଲେ । ପ୍ରାୟ ଅଠର ବର୍ଷ ରାଜତ୍ୱ କରି ସେ ମୃତ୍ୟୁବରଣ କଲା ପରେ ତାଙ୍କ ପୁତ୍ର ସାଇଫୁଦ୍ଦିନ ଶାହ ରାଜପଦ ଲାଭ କରିଥିଲେ । କିନ୍ତୁ ସେହି ସମୟରେ ଦିନାଜପୁରର ଗଣେଶ * ନାମକ ଜଣେ ବ୍ରାହ୍ମଣ ଜମିଦାର ବଳାତ୍କାର ପୂର୍ବକ ସାଇଫୁଦ୍ଦିନଙ୍କୁ ଗାଦିଚ୍ୟୁତ କରି ବଙ୍ଗର ସ୍ୱାଧୀନ ରାଜା ରୂପେ ଅଧିଷ୍ଠିତ ହୋଇଥିଲେ । ୧୪୧୮ରେ ଗଣେଶଙ୍କ ମୃତ୍ୟୁ ପରେ ତାଙ୍କର କନିଷ୍ଠ ପୁତ୍ର ମହେନ୍ଦ୍ରଦେବ ସ୍ୱଳ୍ପକାଳ ଶାସନ କଲାପରେ ତାଙ୍କର ଅନ୍ୟ ଜଣେ ପୁତ୍ର ଯଦୁସେନ ଇସଲାମ ଧର୍ମ ଗ୍ରହଣପୂର୍ବକ ଜଲାଲୁଦ୍ଦିନ ମହମ୍ମଦ ଉପାଧି ଧାରଣକରି ବଙ୍ଗ ସିଂହାସନ ଆରୋହଣ କରିଥିଲେ ।

ଜଲାଲୁଦ୍ଦିନଙ୍କ ପରେ ରାଜତ୍ୱ କରିଥିବା ଶାମସୁଦ୍ଦିନ ଅହମ୍ମଦ (୧୪୩୧-୩୬) ନିଜର ନିଷ୍ଠୁର ନୀତି ଯୋଗୁଁ ପ୍ରଜାବର୍ଗର ଅପ୍ରିୟ ହୋଇ ଷଡ଼ଯନ୍ତ୍ରର ଶିକାର ହେଲେ ଏବଂ ହାଜି ଇଲୟାସଙ୍କର ପୌତ୍ର ନାସିରୁଦ୍ଦିନ ସିଂହାସନ ଅଧିକାର କଲେ । ତାଙ୍କ ପରେ ସେଠାରେ ରୁକୁନୁଦ୍ଦିନ ଶାହ (୧୪୫୯-୭୪), ଶାମସୁଦ୍ଦିନ ୟୁସୁଫ (୧୪୭୪-୮୧) ଓ ଦ୍ୱିତୀୟ ସିକନ୍ଦର (୧୪୮୧) ପ୍ରୁ କ୍ରମାନୁକ୍ରମେ ରାଜା ହୋଇଥିଲେ । କିନ୍ତୁ ସିକନ୍ଦରଙ୍କୁ ଅଳ୍ପଦିନ ମଧ୍ୟରେ ଅଯୋଗ୍ୟ ବୋଲି ବିତାଡ଼ିତ କରି ନାସିରୁଦ୍ଦିନଙ୍କ ପୁତ୍ର ଜଲାଲୁଦ୍ଦିନ ଫତେ ଶାହଙ୍କୁ ଶାସନ ଭାର ଅର୍ପଣ କରିଯାଇଥିଲା । ସେ ମାତ୍ର ପାଞ୍ଚବର୍ଷ ରାଜତ୍ୱ କଲାପରେ ଆବିସିନିଆର ଜଣେ ନପୁଂସକ ତାଙ୍କୁ ହତ୍ୟାକରି 'ବାରବକ୍ ଶାହ' ଉପାଧିରେ ଭୂଷିତ ହୋଇ ରାଜ ସିଂହାସନ ଅଧିକାର କରିଥିଲେ । ୧୪୮୯ ରେ ତାଙ୍କ ମୃତ୍ୟୁ ପରେ ଅନ୍ୟ ଜଣେ ଆବିସିନିଆନ୍ 'ଶାମସୁଦ୍ଦିନ ଆବୁ ନାସାର ମୁଜାଫର ଶାହ' ଉପାଧି ଗ୍ରହଣପୂର୍ବକ ସିଂହାସନ ଆରୋହଣ କରିଥିଲେ ।

---

* ପାର୍ସିଭାଷାରେ ଲିଖିତ ପାଣ୍ଡୁଲିପିଗୁଡ଼ିକ ଭ୍ରମପାଠ କରି କେତେକ 'ଗଣେଶ'ଙ୍କୁ 'କଂସ' ନାମରେ ଗ୍ରହଣ କରିଛନ୍ତି । ବଙ୍ଗ ଅଞ୍ଚଳର ପ୍ରାପ୍ତ ମୁଦ୍ରାଗୁଡିକରେ ଉଲ୍ଲେଖିଥିବା 'ଦନୁଜମର୍ଦ୍ଦନ ଦେବ' ଉପାଧି ଏହି ଗଣେଶ ହିଁ ଗ୍ରହଣ କରିଥିଲେ ବୋଲି ଅନେକ ଐତିହାସିକ ମତ ବ୍ୟକ୍ତ କରନ୍ତି ।


ମୁସଲମାନ ଭାରତ
ପାମିର
କାଶ୍ମୀର
କାବୁଲ
ଗଜନୀ
କାନ୍ଦାହାର
ଲାହୋର
ମୁଲ୍ତାନ୍
ଦିଲ୍ଲୀ
ଆଜମୀର
ସିନ୍ଧ
ତିବ୍ବତ
ହିମାଳୟ
ନେପାଳ
ଅଯୋଧ
କନୌଜ
ବିହାର
ଆସାମ
ବଙ୍ଗ
ଓଡ଼ିଶା
ଚିତୋର
ମାଳବ
କାଲଞ୍ଜର
ଗୁଜରାଟ
ଗଣ୍ଡୱାନା
ଦୌଲତାବାଦ
ଯାଦବ
ଆରବ
ସାଗର
ବଙ୍ଗୋପସାଗର
ବରଙ୍ଗଲ
କାକତୀୟ
ନେଲୋର
କାଞ୍ଚି
ତାଞ୍ଜୋର
ମଦୁରା
ସିଂହଳ
ମୁସଲମାନଅଧିକୃତରାଜ୍ୟ
ସ୍ୱାଧୀନରାଜ୍ୟ

ତଥାପି, ୧୪୯୩ରେ ସୟଦ ହୁସେନ୍ ଶାହ ବଙ୍ଗାଧିପତି ହେବା ପର୍ଯ୍ୟନ୍ତ ରାଜ୍ୟର ପ୍ରାଧାନ୍ୟ ଅନୁଭୂତ ହୋଇ ନଥିଲା । ସେ ମଗଧ, କଛ, ବିହାର, ଆସାମ ଜୟକରି, ହିନ୍ଦୁମାନଙ୍କ ପ୍ରତି ଦୟାଶୀଳ ହୋଇ, ବଙ୍ଗଳା ସାହିତ୍ୟ ପ୍ରତି ଅନୁରକ୍ତ ରହି ସ୍ୱାଧୀନ ବଙ୍ଗର ଶ୍ରେଷ୍ଠ ମୁସଲମାନ ରାଜା ରୂପେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ପରେ ନୁସରତ ଶାହ (୧୫୧୯-୩୨) ମଧ୍ୟ ପିତାଙ୍କ ସୁନାମ ଅକ୍ଷୁର୍ଣ୍ଣ ରଖିଥିଲେ । କିନ୍ତୁ ନୁସରତଙ୍କ ପୁତ୍ର ଆଲାଉଦ୍ଦିନ ଫିରୋଜ ଶାହ ମାତ୍ର ତିନିମାସ ଶାସନ କରିବା ପୂର୍ବରୁ ସ୍ୱମାତୁଳ ଗିୟାସୁଦ୍ଦିନ ମହମ୍ମଦ ଶାହଙ୍କ ଦ୍ୱାରା ନିହତ ଓ ଗାଦିଚ୍ୟୁତ ହୋଇଥିଲେ । ସେ ଥିଲେ ସ୍ୱାଧୀନ ବଙ୍ଗର ଶେଷ ରାଜା । ୧୫୩୮ରେ ଶେରଶାହ ତାଙ୍କୁ କ୍ଷମତାଚ୍ୟୁତ କରି ବଙ୍ଗକୁ ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ ।

## ଜୋନପୁର

ଫିରୋଜ ଶାହ ନିଜର ଜ୍ଞାତି ତଥା ସାହାଯ୍ୟକର୍ତ୍ତା ମହମ୍ମଦ ଜୋନା (ମହମ୍ମଦ ବିନ୍ ତୋଗଲକ)ଙ୍କର ସ୍ମୃତିକୁ ଅମର ରଖିବା ଉଦ୍ଦେଶ୍ୟରେ ଜୋନପୁର୍ ନଗରୀ ନିର୍ମାଣ କରିଥିଲେ ତୈମୁରଙ୍କ ଭାରତ ଆକ୍ରମଣ କାଳରେ ଖ୍ୱାଜା-ଇ-ଜହାଁ ଦିଲ୍ଲୀ ସାମ୍ରାଜ୍ୟ ସହ ସମ୍ପର୍କ ଛିନ୍ନ କରି ନିଜର 'ମାଲିକ-ଉସ୍-ସାର୍କୀ' ନାମାନୁସାରେ ଜୋନପୁରରେ ଏକ ସ୍ୱତନ୍ତ୍ର 'ସାର୍କୀ' ରାଜବଂଶ ପ୍ରତିଷ୍ଠା କଲେ । ୧୩୯୯ ରେ ତାଙ୍କର ମୃତ୍ୟୁ ପରେ ମୁବାରକ ଶାହ ସାର୍କୀ ପୈତୃକ ସିଂହାସନ ଗ୍ରହଣ କରିଥିଲେ ଏବଂ ୧୪୦୨ରେ ତାଙ୍କର ମୃତ୍ୟୁ ଘଟିବାରୁ ତାଙ୍କ କନିଷ୍ଠ ଭ୍ରାତା ଇବ୍ରାହିମ ଶାହ ସାର୍କୀ ରାଜଗାଦିରେ ଅଧିଷ୍ଠିତ ହୋଇଥିଲେ । ଜୋନପୁରର ବିଖ୍ୟାତ 'ଅତଳ ମସ୍‌ଜିଦ' ଇବ୍ରାହିମଙ୍କର କୃତି । ତାଙ୍କ ଉତ୍ତାରେ ଉତ୍ତରାଧିକାର ସୂତ୍ରରେ ମାମୁଦ (୧୪୩୬-୫୭) ଦୀର୍ଘ ଏକୋଇଶ ବର୍ଷ ରାଜତ୍ୱ କଲା ପରେ ମାମୁଦଙ୍କ ଜ୍ୟେଷ୍ଠ ପୁତ୍ର ମହମ୍ମଦ ଶାହ ସିଂହାସନ ଅଧିକାର କରିଥିଲେ । କିନ୍ତୁ ତାଙ୍କର ବିବେଚନାହୀନ ଶାସନରେ ଉତ୍‌କ୍ଷିପ୍ତ ହୋଇ ସମ୍ଭ୍ରାନ୍ତ ସମ୍ପ୍ରଦାୟ ତାଙ୍କୁ ହତ୍ୟାକରି ମାମୁଦଙ୍କର କନିଷ୍ଠ ପୁତ୍ର ହୁସେନ୍ ଶାହଙ୍କୁ ସିଂହାସନ ଅର୍ପଣ କରିଥିଲେ । ହୁସେନ୍ ଶାହ ଥିଲେ ଜୋନପୁରର ଶେଷ ସ୍ୱାଧୀନ ରାଜା । ୧୪୭୭ ରେ ତାଙ୍କୁ ବହିଷ୍କାର କରି ବହ୍ଲୁଲ୍ ଲୋଦୀ ଜୋନପୁରକୁ ଦିଲ୍ଲୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ ।

## ମାଳବ

ଖ୍ରୀ: ୧୩୧୦ ରେ ଆଲାଉଦ୍ଦିନ ଖିଲଜୀ ମାଳବକୁ ଜୟକରି ଦିଲ୍ଲୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ ଏବଂ ୧୪୦୧ ପର୍ଯ୍ୟନ୍ତ ତାହା ସୁଲତାନଙ୍କ ଦ୍ୱାରା ନିଯୁକ୍ତ ଗଭର୍ଣ୍ଣରମାନଙ୍କ ଶାସନ ଦାୟିତ୍ୱରେ ରହିଥିଲା । ୧୪୦୧ ରେ ତୈମୁରଙ୍କ ଆକ୍ରମଣର ଅବ୍ୟବହିତ ପରେ ମାଳବର ଗଭର୍ଣ୍ଣର ଦିଲବାର ଖାଁ ନିଜକୁ ସ୍ୱାଧୀନ ରାଜା ରୂପେ ଘୋଷଣା କରିଥିଲେ ଏବଂ ତା ପରଠାରୁ ୧୫୩୧ ପର୍ଯ୍ୟନ୍ତ ତାହା ଏକ ସ୍ୱାଧୀନ ରାଜ୍ୟ ଭାବରେ ଶାସିତ ହୋଇଥିଲା । ଖ୍ରୀ: ୧୫୩୧ ରେ ବାହାଦୁର ଶାହ ତାତ୍କାଳୀନ ମାଳବ ସୁଲତାନ ଦ୍ୱିତୀୟ ମାମୁଦଙ୍କୁ ଯୁଦ୍ଧରେ ପରାସ୍ତ ଓ ନିହତ କରି ମାଳବକୁ ଗୁଜରାଟରେ ଅନ୍ତର୍ଭୁକ୍ତ କରିଥିଲେ । ଏହାପରେ ୧୫୩୫ରେ ହୁମାୟୁନ କିଛି କାଳ ପାଇଁ ଦିଲ୍ଲୀ ଅଧୀନକୁ ଆଣିଥିଲେ; ତେବେ ୧୫୬୪ରେ ଆକବରଙ୍କ ଅମଳରେ ହିଁ ମାଳବ ପୁରାପୂରି ଦିଲ୍ଲୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା ।

୧୪୦୧ ଠାରୁ ୧୫୩୧ ପର୍ଯ୍ୟନ୍ତ ମାଳବରେ ଶାସନ କରିଥିବା ସାତ ଜଣ ରାଜା—ଦିଲବାର ଖାଁ (୧୪୦୧-୦୬), ହୁସଙ୍ଗ ଶାହ (୧୪୦୬-୩୫), ମହମ୍ମଦ ଶାହ (୧୪୩୫-୩୬), ମାମୁଦ ଖିଲଜୀ (୧୪୩୬-୬୯), ଗିଆସୁଦ୍ଦିନ (୧୪୬୯-୧୫୦୧), ନାସିରୁଦ୍ଦିନ (୧୫୦୧-୧୦), ଦ୍ୱିତୀୟ ମାମୁଦ (୧୫୧୦-୩୧)ଙ୍କ ମଧ୍ୟରୁ ମାମୁଦ ଖିଲଜୀଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ଥିଲେ ଏକାଧାରରେ ଜଣେ ଜ୍ଞାନୀ, ବୀର, ଭଦ୍ର, ପ୍ରଜାବତ୍ସଳ ଓ ଧର୍ମନିରପେକ୍ଷ ଶାସକ ।

## ଗୁଜରାଟ

ଖ୍ରୀ: ୧୨୯୭ରେ ଆଲାଉଦ୍ଦିନ ଖିଲଜୀଙ୍କ ରାଜତ୍ୱକାଳରେ ଗୁଜରାଟ ଦିଲ୍ଲୀ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ୧୪୦୧ରେ ପରିସ୍ଥିତିରେ ସୁଯୋଗ ନେଇ ଗୁଜରାଟର ତଦାନୀନ୍ତନ ଗଭର୍ଣ୍ଣର ଜାଫର ଖାଁ ନିଜକୁ 'ମୁଜାଫର ଶାହ' ଉପାଧିରେ ଭୂଷିତ କରି ସ୍ୱାଧୀନ ରାଜା ରୂପେ ଘୋଷଣା କରିଥିଲେ । ତେବେ ୧୪୧୧ରେ ତାଙ୍କ ମୃତ୍ୟୁ ପରେ ସେଠାରେ ରାଜା ହୋଇଥିବା ଜାଫରଙ୍କ ପୌତ୍ର ଅହମ୍ମଦ ଶାହଙ୍କୁ ହିଁ ସ୍ୱାଧୀନ ଗୁଜରାଟର ପ୍ରତିଷ୍ଠାତା କୁହାଯାଏ; କାରଣ ସେ ଥିଲେ ଜଣେ ଅପରାଜେୟ ଯୋଦ୍ଧା ଓ ବିଖ୍ୟାତ ଅହମଦାବାଦ ନଗରୀର ନିର୍ମାତା । ଅହମ୍ମଦ ୧୪୪୧ ପର୍ଯ୍ୟନ୍ତ ସୁଶାସନ କରି ମୃତ୍ୟୁ ବରଣ କରିଥିଲେ ।

ଗୁଜରାଟର ପରବର୍ତ୍ତୀ ବଶିଷ୍ଟ ଶାସକ ଥିଲେ ଅହମ୍ମଦଙ୍କ ପୌତ୍ର ମାମୁଦ ବାଗ୍ରା (୧୪୫୮-୧୫୧୧) । ସେ ଦ୍ୱାରକା ଜଳଦସ୍ୟୁଙ୍କ ଉପଦ୍ରବ, ମାଳବ ଆକ୍ରମଣ ଓ ପର୍ତ୍ତୁଗୀଜ ଅଭିଯାନକୁ ପ୍ରତିହତ କରିଥିଲେ । ତାଙ୍କ ପରେ ପୁରୁଷାନୁକ୍ରମେ ମୁଜାଫର (୨ୟ), ସିକନ୍ଦର ଓ ତାଙ୍କ ଭ୍ରାତା ନାସିର ଖାଁ ମାମୁଦ ଗୁଜରାଟର ରାଜା ହୋଇଥିଲେ । କିନ୍ତୁ ତତ୍ପରବର୍ତ୍ତୀ ରାଜା ବାହାଦୁର ଶାହ (୧୫୨୬-୩୭)ଙ୍କ କୃତିତ୍ୱ ଉଲ୍ଲେଖ ଯୋଗ୍ୟ । ସେ ମାଳବ ଜୟ କରି ଚିତୋର ଦୁର୍ଗ ହସ୍ତଗତ କରିଥିଲେ । ୧୫୩୫ରେ ସେ ହୁମାୟୁନଙ୍କ ଦ୍ୱାରା ପରାଜିତ ହୋଇଥିଲେ ସତ, କିନ୍ତୁ ୧୫୭୨ରେ ଆକବର ମୁଜାଫର ଶାହଙ୍କୁ ପରାସ୍ତ କରି ଗୁଜରାଟକୁ ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ନକଲା ପର୍ଯ୍ୟନ୍ତ ଗୁଜରାଟ ତାର ସ୍ୱାଧୀନତା ହରାଇ ନଥିଲା ।

## କାଶ୍ମୀର

ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ * କାଶ୍ମୀରର ତଦାନୀନ୍ତନ ହିନ୍ଦୁ ରାଜାଙ୍କ ମହାମନ୍ତ୍ରୀ ଶାହ ମିର୍ଜା ଶାମସୁଦ୍ଦିନ ଶାହ ଉପାଧି ଧାରଣକରି ରାଜଗାଦି ଅଧିକାର କରିଥିଲେ । ୧୩୪୯ରେ ଶାହ ମୀର୍ଜାଙ୍କର ମୃତ୍ୟୁ ପରେ ତାଂକର ଦୁଇ ଜଣ ପୁତ୍ର ଏବଂ ଜନୈକ ପୌତ୍ର କାଳକ୍ରମେ ୧୪୧୭ ପର୍ଯ୍ୟନ୍ତ ଶାସନ କରିଥିଲେ । ତେବେ ଜୈନ୍-ଉଲ୍-ଅବଦ୍ଦିନ (୧୪୨୦-୧୪୭୦) ଥିଲେ ସ୍ୱାଧୀନ କାଶ୍ମୀରର ଶ୍ରେଷ୍ଠ ନରପତି । ସେ ଥିଲେ ପ୍ରଜାପ୍ରିୟ, ଧର୍ମ-ନିରପେକ୍ଷ ଓ ସାହିତ୍ୟକଳାନୁରାଗୀ । ତାଂକ ଉତ୍ତରାଧିକାରୀଗଣଂକର ଅବଦାନ ନଗଣ୍ୟ । ୧୫୪୧ ଠାରୁ ୧୫୫୨ ପର୍ଯ୍ୟନ୍ତ କାଶ୍ମୀରର ଶାସନ ଭାର ହୁମାୟୁନଙ୍କ ଜନୈକ ଜ୍ଞାତି ମୀର୍ଜା ହାଇଦର୍‌ଙ୍କ ହାତରେ ଥିବା ଜଣାଯାଏ । ତଥାପି ୧୫୮୬ରେ ଆକବରଂକ ଦ୍ୱାରା ଅଧିକୃତ ନହେବା ଯାଏ ତାର ସ୍ୱାଧୀନତା କ୍ଷୁର୍ଣ୍ଣ ହୋଇ ନଥିଲା ।

## ଖାନ୍ଦେଶ

ତାପ୍ତି ଉପତ୍ୟକା ଅନ୍ତର୍ବର୍ତ୍ତୀ ଖାନ୍ଦେଶ ପ୍ରଦେଶ ମହମ୍ମଦ ବିନ୍ ତୋଗଲକଙ୍କ ସାମ୍ରାଜ୍ୟାଧୀନ ଥିଲା । ଫିରୋଜ ଶାହଙ୍କ ପରବର୍ତ୍ତୀ କାଳର ରାଜନୈତିକ ଅସ୍ଥିରତାର ସୁଯୋଗ ନେଇ ସ୍ଥାନୀୟ ଗଭର୍ଣ୍ଣର ମାଲିକ ରାଜା

* ଶାହ ମୀର୍ଜାଂକର ଶାସନ ଦଖଲ ସମୟ ଖ୍ରୀ: ୧୩୩୯ ନା ୧୩୪୬—ଏ ସମ୍ବନ୍ଧରେ ମତଭେଦ ରହିଛି

୧୩୮୮ରେ ଖାନ୍ଦେଶକୁ ସ୍ୱାଧୀନ ରାଜ୍ୟ ରୂପେ ଘୋଷଣା କଲେ । ୧୩୯୯ରେ ତାଙ୍କର ମୃତ୍ୟୁ ପରେ ସେଠାରେ ମାଲିକ ନାସିର (୧୩୯୯-୧୪୩୮), ଅଦିଲ ଖାଁ (୧୪୩୮-୪୧), ମୁବାରକ ଖାଁ (୧୪୪୧-୫୭), ଦ୍ୱିତୀୟ ଅଦିଲଖାଁ (୧୪୫୭-୧୫୦୧), * ଦାଉଦ (୧୫୦୧-୦୮), ଗଜନୀ ଖାଁ (୧୫୦୮) ,ତୃତୀୟ ଅଦିଲ ଖାଁ (୧୫୦୮-୨୦) ପୁରୁଷାନୁକ୍ରମେ ଶାସନ କରିଥିଲେ । ତାପରେ ଖାନ୍ଦେଶ କିଛି କାଳ ପାଇଁ ଗୁଜରାଟର ସାମନ୍ତ ରାଜ୍ୟ ରୂପେ ରହି ପୁଣି ସ୍ୱାଧୀନତା ପାଇଥିଲା ଏବଂ ଶେଷରେ ୧୬୦୧ରେ ମୋଗଲ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ ହୋଇଥିଲା ।

## ମେବାର

ଅଷ୍ଟମ ଶତାବ୍ଦୀ ସମୟରୁ ମେବାରରେ ବୀର ରାଜପୁତ ବଂଶର ପ୍ରତିଷ୍ଠା ହୋଇଥିଲା ଏବଂ ତାହାର ପ୍ରତିଷ୍ଠାତା ଥିଲେ ସିସୋଡ଼ିଆ ସଂପ୍ରଦାୟର ବାପା ରାଓ । ସେ ସେତେବେଳେ ଚିତୋରକୁ ମହମ୍ମଦ ବିନ୍ କାଶିମଙ୍କର ଆକ୍ରମଣ ମୁଖରୁ ରକ୍ଷା କରିଥିଲେ । ତାପରେ ମଧ୍ୟ ଚିତୋର ଏକାଧିକ ଆକ୍ରମଣର ସମ୍ମୁଖୀନ ହୋଇଥିଲା । ୧୩୦୩ରେ ଆଲାଉଦ୍ଦିନ ଖିଲଜୀ ରାଣୀ ପଦ୍ମିନୀଙ୍କର ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ଚିତୋର ଆକ୍ରମଣ କରିଥିଲେ । କିନ୍ତୁ ପଦ୍ମିନୀ ଅଗ୍ନିରେ ଝାସ ଦେଇ ସତୀତ୍ୱ ବଞ୍ଚାଇ ରଖିଥିଲେ ଏବଂ ହମିରଙ୍କ କୃତିତ୍ୱରୁ ୧୩୬୫ ସୁଦ୍ଧା ଚିତୋରରେ ପୁଣି ରାଜପୁତ ଶକ୍ତି ପ୍ରତିଷ୍ଠିତ ହୋଇଥିଲା । ହମିରଙ୍କ ପରବର୍ତ୍ତୀ କାଳର ଶ୍ରେଷ୍ଠ ଶାସକମାନଙ୍କ ମଧ୍ୟରେ ରାଣା କୁମ୍ଭ ଓ ରାଣା ସଙ୍ଗଙ୍କ ନାମ ଉଲ୍ଲେଖ ଯୋଗ୍ୟ । ରାଣାକୁମ୍ଭ ଏକ ବିରାଟ ସେନାବାହିନୀ ଗଠନ କରି ଗୁଜରାଟ ଜୟ କରିଥିଲେ ଏବଂ ସେହି ବିଜୟର ସ୍ମୃତି ସ୍ୱରୂପ ଚିତୋରଠାରେ ଏକ ପ୍ରକାଣ୍ଡ ଜୟସ୍ତମ୍ଭ ବା କୀର୍ତ୍ତିସ୍ତମ୍ଭ ନିର୍ମାଣ କରିଥିଲେ । ରାଣା ସଙ୍ଗ ଷୋଳଟି ସଂଗ୍ରାମରେ ମୁସଲମାନମାନଙ୍କୁ ଜୟ କରି ଶେଷରେ ୧୫୨୭ର ଖାନୱା ଯୁଦ୍ଧରେ ବାବରଙ୍କ ଦ୍ୱାରା ପରାସ୍ତ ହୋଇ ଥିଲେ । ଏହାପରେ ୧୫୩୪ରେ ଗୁଜରାଟର ସୁଲତାନ ବାହାଦୁର ଶାହ ଚିତୋର ଆକ୍ରମଣ କରିଥିଲେ । କିନ୍ତୁ ତାଂକ ମୃତ୍ୟୁ ପରେ ଚିତୋରରେ ପୁଣି ରାଜପୁତ ପ୍ରଭୁତ୍ୱ ବିସ୍ତାର ଘଟିଥିଲା । ତେବେ ଉଦୟ ସିଂହ ଓ ପ୍ରତାପ ସିଂହଙ୍କ ନେତୃତ୍ୱରେ ୧୫୬୧ରୁ ୧୫୭୮ ପର୍ଯ୍ୟନ୍ତ ମୋଗଲ ଶକ୍ତି ବିରୋଧରେ ସଂଗ୍ରାମ କରି ଶେଷରେ ଚିତୋରର ପତନ ଘଟିଲା ପରେ ମେବାରର ରାଜଧାନୀ ଉଦୟପୁରକୁ ପରିବର୍ତ୍ତନ କରି ଅଣାଯାଇଥିଲା ।

---

* ଦାଉଦ ଥିଲେ ଦ୍ୱିତୀୟ ଅଦିଲ ଖାଁଙ୍କର କନିଷ୍ଠ ଭ୍ରାତା । ଅଦିଲ ଖାଁ ଅପୁତ୍ରିକ ଥିବାରୁ ଦାଉଦ ରାଜା ହୋଇଥିଲେ ।

ଉତ୍ତର-ପଶ୍ଚିମ ଭାରତ ବ୍ୟତୀତ ଦାକ୍ଷିଣାତ୍ୟର ସ୍ୱାଧୀନ ରାଜ୍ୟଗୁଡ଼ିକ ମଧ୍ୟରେ ବାହମନୀ, ବିଜୟ ନଗର ଓ ଓଡ଼ିଶାର ଇତିହାସ ବିଶେଷ ଉଲ୍ଲେଖ ଯୋଗ୍ୟ ।

## ବାହମନୀ ସାମ୍ରାଜ୍ୟ

ଦିଲ୍ଲୀ ସାମ୍ରାଜ୍ୟର ଭଗ୍ନସ୍ତୂପ ଉପରେ ଗଢ଼ି ଉଠିଥିବା ବିଭିନ୍ନ ସ୍ୱାଧୀନ ରାଜ୍ୟଗୁଡ଼ିକ ମଧ୍ୟରେ ବାହମନୀ ସାମ୍ରାଜ୍ୟ ଥିଲା ସବୁଠାରୁ ଅଧିକ ଶକ୍ତିଶାଳୀ । ମହମ୍ମଦ ବିନ୍ ତୋଗଲକଙ୍କ ରାଜତ୍ୱ କାଳରେ ୧୩୪୭ ମସିହା ଅଗଷ୍ଟ ୩ ତାରିଖରେ ତାଂକର ଜନୈକ କର୍ମଚାରୀ ହାସନ ଗାଙ୍ଗୁ * ଦୌଲତାବାଦକୁ ସ୍ୱାଧୀନ ରାଜ୍ୟରୂପେ ଘୋଷଣା କଲେ ଏବଂ 'ଆଲାଉଦ୍ଦିନ ବାହମନୀ' ଉପାଧିରେ ନିଜକୁ ଭୂଷିତ କରି ବାହମନୀ ରାଜବଂଶର ଜନ୍ମଦାତା ହେଲେ । ତାଂକ ରାଜ୍ୟର ପରିସର ଉତ୍ତରରେ ବେରାରଠାରୁ ଦକ୍ଷିଣକୁ କୃଷ୍ଣାନଦୀ ପର୍ଯ୍ୟନ୍ତ ଏବଂ ପୂର୍ବରେ ଓ୍ୱାରଙ୍ଗଲ ଠାରୁ ପଶ୍ଚିମକୁ ଗୋଆ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଗୁଲବର୍ଗା ଥିଲା ବାହମନୀ ସାମ୍ରାଜ୍ୟର ରାଜଧାନୀ ।

ବାହମନୀ ରାଜବଂଶର ପତନ ପର୍ଯ୍ୟନ୍ତ ସେଠାରେ ରାଜତ୍ୱ କରିଥିବା ଅଠର ଜଣ ମୁସଲମାନ ମଧ୍ୟରୁ ମହମ୍ମଦ ଶାହ (୧୩୫୮-୭୩), ଫିରୋଜ ଶାହ (୧୩୯୭-୧୪୨୨), ଅହମ୍ମଦ ଶାହ (୧୪୨୨-୩୫), ଦ୍ୱିତୀୟ ଆଲାଉଦ୍ଦିନ (୧୪୩୫-୫୭) ହୁମାୟୁନ † (୧୪୫୭-୬୧), ଏବଂ ତୃତୀୟ ମହମ୍ମଦ ଶାହ (୧୪୬୩-୮୨)ଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଏମାନଙ୍କ ମଧ୍ୟରୁ ଅହମ୍ମଦ ଶାହ ଥିଲେ ଧର୍ମାନ୍ଧ ମୁସଲମାନ । ସେ ବଂଶ ସହସ୍ର ହିନ୍ଦୁଙ୍କୁ ହତ୍ୟା କରି ନିଜର ପୂର୍ବପରିକଳ୍ପିତ ସଂଖ୍ୟା ପୂରଣ ହୋଇଯିବା ଦିନ ଏକ ବିରାଟ ଭୋଜିର ଆୟୋଜନ କରିଥିଲେ । ହୁମାୟୁନ ମଧ୍ୟ ଥିଲେ ଅନ୍ୟତମ ରକ୍ତପିପାସୁ ନରପତି । କିନ୍ତୁ ମହମ୍ମଦ ଶାହ ( ୩ୟ ) ଥିଲେ ପ୍ରକୃତରେ ବାହମନୀ ସାମ୍ରାଜ୍ୟର ଶ୍ରେଷ୍ଠ ଶାସକ । ତାଂକ ରାଜତ୍ୱକାଳରେ ବାହମନୀ ରାଜ୍ୟ ତାର ହୃତ ଗୌରବ ଫେରି

* ହାସନ ପ୍ରଥମେ ଜନୈକ ବ୍ରାହ୍ମଣ ଜ୍ୟୋତିଷୀ ଗାଙ୍ଗୁଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ ବୋଲି ତାଂକର ନାମାନୁସାରେ ନିଜକୁ ହାସନ୍ ଗାଙ୍ଗୁ ରୂପେ ପରିଚିତ କରାଇଥିଲେ ଏବଂ ପରେ ସ୍ୱନଯୋକ୍ତାଂକର ଜନ୍ମବଂଶ (ବ୍ରାହ୍ମଣ) ସ୍ମୃତିରେ ତାଂକ ରାଜବଂଶକୁ 'ବାହମନୀ' ନାମରେ ନାମିତ କରିଥିଲେ ।

† ହୁମାୟୁନ ଆଲାଉଦ୍ଦିନ (୨ୟ)ଙ୍କ ପୁତ୍ର ।

ଯାଇଥିଲା । ତାଂକ ପରେ ବାରବର୍ଷ ବୟସ୍କ ବାଳକ ମାମୁଦ ଶାହ ଶାସନ କ୍ଷମତା ଲାଭ କରି ନାମ ମାତ୍ରକୁ ସୁଲତାନ ହୋଇଥିଲେ । ସେହି ସମୟରେ ସେଠାରେ ଆଭ୍ୟନ୍ତରୀଣ ଅଶାନ୍ତି ଓ ଅନ୍ତର୍ବିବାଦ ଦେଖାଦେଲା ଏବଂ ଗୋଟିକ ପରେ ଗୋଟିଏ ବିଭିନ୍ନ ପ୍ରଦେଶ ବାହମନୀ ସାମ୍ରାଜ୍ୟରୁ ଓହରି ଗଲେ । କେବଳ ଏକ କ୍ଷୁଦ୍ର ଅଞ୍ଚଳ ବିଦର ହିଁ ମାମୁଦଙ୍କ ଅଧୀନରେ ରହିଥିଲା । ୧୫୨୭ରେ ତାଂକ ମୃତ୍ୟୁପରେ ବିଦର ସିଂହାସନ ମଧ୍ୟ ମାମୁଦଙ୍କ ମନ୍ତ୍ରୀ ଅମିର ବରିଦଂକ ହସ୍ତକୁ ଚାଲିଗଲା ଏବଂ ଇତିହାସରେ ବାହମନୀ ରାଜବଂଶ ଲୋପ ପାଇଲା ।

ଭାରତର ଇତିହାସରେ ବାହମନୀ ବଂଶ ପ୍ରାୟ ଦୁଇ ଶତାବ୍ଦୀ କାଳ ଦାକ୍ଷିଣାତ୍ୟ ଶାସନ କରିଥିଲେ ମଧ୍ୟ ତାର ବିଶେଷ ରାଜନୈତିକ ଅବଦାନ ନଥିଲା । ସେହି ବଂଶର ସମସ୍ତ ସୁଲତାନ ଗୁଣା ଅଧିକେ ଅତ୍ୟାଚାରୀ ନିଷ୍ଠୁର ଓ ଅଣ-ହିନ୍ଦୁ ଭାବାପନ୍ନ ଥିଲେ ଏବଂ ଅତି ନିକୃଷ୍ଟ ଧରଣର ଶାସନ ନୀତି ପ୍ରବର୍ତ୍ତନ କରିଥିଲେ । ତେବେ ଏହି ବାହମନୀ ବଂଶୀୟ ଶାସକମାନଂକର ବାଧ୍ୟବାଧକତା ଯୋଗୁଁ ଦାକ୍ଷିଣାତ୍ୟର ଅନେକ ହିନ୍ଦୁ ମୁସଲମାନ ଧର୍ମ ଗ୍ରହଣ କରିଥିବାରୁ ବର୍ତ୍ତମାନ ସେଠାରେ ମୁସଲମାନ ସଂପ୍ରଦାୟର ଲୋକ ଦେଖିବାକୁ ମିଳୁଛନ୍ତି ବୋଲି ଐତିହାସିକମାନେ ମତବ୍ୟକ୍ତ କରନ୍ତି । ଯେତେବେଳେ ବିଶାଳ ବାହମନୀ ସାମ୍ରାଜ୍ୟରୁ ବିଚ୍ଛିନ୍ନ ହୋଇପଡ଼ିଥିବା ବିଭିନ୍ନ ପ୍ରଦେଶଗୁଡ଼ିକ ପାଞ୍ଚୋଟି ସ୍ୱାଧୀନ ରାଜ୍ୟରୂପେ ମୁଣ୍ଡ ଟେକିଥିଲେ । ସେଗୁଡ଼ିକ ହେଉଛି—ବେରାର, ବିଦର, ଅହମ୍ମଦ ନଗର, ଗୋଲକୁଣ୍ଡା ଓ ବିଜାପୁର ।

ବାହମନୀ ସାମ୍ରାଜ୍ୟରୁ ସଂପର୍କ ଛିନ୍ନ କରିବା ରାଜ୍ୟମାନଙ୍କ ମଧ୍ୟରେ ବେରାର ଥିଲା ସର୍ବ ପ୍ରଥମ । ୧୪୮୪ରେ ଗାୱିଲଗଡର ଗଭର୍ଣ୍ଣର ଫତୁଲ୍ଲା ମାମୁଦଂକ ବିରୋଧରେ ବିପ୍ଳବ କରି 'ଇମାଦୁଲ୍ ମଲକ' ଉପାଧିଗ୍ରହଣପୂର୍ବକ ବେରାରର ସ୍ୱାଧୀନତା ଘୋଷଣା କଲେ । ତାଂକର ରାଜଧାନୀ ଏଲିଚପୁରରେ ପ୍ରତିଷ୍ଠିତ ହୋଇଥିଲା । ୧୫୭୪ରେ ନିଜର ସ୍ୱାଧୀନତା ହରାଇ ଅହମ୍ମଦ ନଗର ରାଜ୍ୟ ସହିତ ଏକୀଭୂତ ହେବା ପର୍ଯ୍ୟନ୍ତ ସେଠାରେ 'ଇମାଦ ଶାହୀ' ବଂଶୋଦ୍ଭବ ରାଜାମାନେ ଶାସନ କରୁଥିଲେ ।

ବେରାର ଭଳି ବିଦରରେ ମଧ୍ୟ ଅମିର ବରିଦ ୧୫୧୭ରେ ସ୍ୱାଧୀନ ଶାସନ ପ୍ରତିଷ୍ଠା କରିଥିଲେ ଏବଂ ସେଠାରେ 'ବରିଦ ଶାହୀ' ରାଜବଂଶ ମୁଣ୍ଡ

ଠେକଥିଲା । କନ୍ତୁ ୧୬୧୯ ସୁଦ୍ଧା ବିଦର ବିଜାପୁର ସାମ୍ରାଜ୍ୟରେ ସାମିଲ ହୋଇଯାଇଥିଲା ଓ 'ବିରିଦ ଶାହୀ' ବଂଶର ରାଜତ୍ୱ ଲୋପ ପାଇଥିଲା ।

୧୪୦୯ରେ ମାଲିକ ଅହମ୍ମଦ ବାହମନୀ ସୁଲତାନ ମାମୁଦ ଶାହଙ୍କ ଠାରୁ ସମ୍ପର୍କ ଛିନ୍ନକରି ଅହମ୍ମଦ ନିଜାମ ଶାହ ଉପାଧି ଧାରଣ ପୂର୍ବକ ସ୍ୱାଧୀନ ଅହମ୍ମଦ ନଗର ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ । ତାଂକଦ୍ୱାରା ପ୍ରତିଷ୍ଠିତ ରାଜବଂଶ 'ନିଜାମଶାହୀ' ବଂଶ ନାମରେ ପରିଚିତ । ଖ୍ରୀ: ୧୬୦୦ରେ ଆକବର ଅହମ୍ମଦ ନଗର ଅଧିକାର କରି ନେଇଥିଲେ ସୁଦ୍ଧା ୧୬୩୩ରେ ଶାହଜାହାନ ସମଗ୍ର ଅହମ୍ମଦ ନଗର ରାଜ୍ୟରେ ଆଧିପତ୍ୟ ବିସ୍ତାର କରି ତାକୁ ମୋଗଲ ସାମ୍ରାଜ୍ୟର ଅଙ୍ଗୀଭୂତ କଲା ପର୍ଯ୍ୟନ୍ତ ତାର ପତନ ଘଟି ନଥିଲା ।

ସ୍ୱାଧୀନ ଗୋଲକୁଣ୍ଡା ରାଜ୍ୟର ପ୍ରତିଷ୍ଠାତା ଥିଲେ ବାହମନୀ ସୁଲତାନଙ୍କ ପୂର୍ବାଞ୍ଚଳ ପ୍ରଦେଶଗୁଡ଼ିକର ଗଭର୍ଣ୍ଣର କୁଲି କୁତବ ଶାହ । ତାଙ୍କ ନାମାନୁସାରେ ସେହି ରାଜବଂଶର ନାମ 'କୁତବ ଶାହୀ' ବଂଶ ରୂପେ ପରିଚିତ । କୁଲିକୁତବ ଶାହ ୧୫୧୮ରେ ନିଜକୁ ସ୍ୱାଧୀନ ସୁଲତାନ ବୋଲି ଘୋଷଣା କରି ଓ୍ୱାରଙ୍ଗଲରୁ ଗୋଲକୁଣ୍ଡାକୁ ରାଜଧାନୀ ପରିବର୍ତ୍ତନ କରି ଆଣିଥିଲେ । ୧୬୧୧ରେ କୁତବ ଶାହୀ ବଂଶର ଚତୁର୍ଥ ସୁଲତାନ ମହମ୍ମଦ କୁଲିଙ୍କର ପରଲୋକ ପରେ ଗୋଲକୁଣ୍ଡାର ସ୍ୱାଧୀନତା ମୋଗଲ ଶାସକଙ୍କ ଦ୍ୱାରା କ୍ଷୁର୍ଣ୍ଣ ହେବାକୁ ଲାଗିଲା ଏବଂ ଶେଷରେ ୧୬୮୭ରେ ଅଉରଙ୍ଗଜେବଙ୍କ ଦ୍ୱାରା ତାହା ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା ।

ବାହମନୀ ସାମ୍ରାଜ୍ୟର ଭସ୍ମରାଶି ଉପରେ ଗଢ଼ି ଉଠିଥିବା ପାଞ୍ଚୋଟି ସ୍ୱାଧୀନ ରାଜ୍ୟ ମଧ୍ୟରେ ବିଜାପୁର ସର୍ବ ପ୍ରଧାନ । ଖ୍ରୀ: ୧୪୮୯ରେ ବିଜାପୁରର ତଦାନୀନ୍ତନ ଗଭର୍ଣ୍ଣର ୟୁସୁଫ ଅଦ୍ଦିଲ ଖାଁ ରାଜ୍ୟର ସ୍ୱାଧୀନତା ଘୋଷଣା କରିଥିଲେ । ଅଦ୍ଦିଲଙ୍କ ନାମାନୁସାରେ ତାଙ୍କ ରାଜବଂଶର ନାମ 'ଅଦ୍ଦିଲ ଶାହୀ' ହୋଇଛି । ତାଙ୍କ ମୃତ୍ୟୁ ପରେ ସେଠାରେ ରାଜତ୍ୱ କରିଥିବା ପାଞ୍ଚଜଣ ସୁଲତାନ ଇସ୍‌ମାଇଲ ଶାହ (୧୫୧୦–୩୪), ମଲ୍ଲୁ ( ୫୩୪), ଇବ୍ରାହିମ (୧୫୩୫–୫୭), ଅଲି ଅଦ୍ଦିଲ ଶାହ (୧୫୫୭–୭୯), ଇବ୍ରାହିମ ଅଦ୍ଦିଲ ଶାହ (ଦ୍ୱିତୀୟ) (୧୫୭୯–୧୬୨୬)ଙ୍କ ମଧ୍ୟରେ ଶେଷୋକ୍ତ ଶାସକଙ୍କ ନାମ ଉଲ୍ଲେଖ ଯୋଗ୍ୟ । ସେ ସୁନ୍ନି ସଂପ୍ରଦାୟଭୁକ୍ତ ମୁସଲମାନ ଥିଲେ ମଧ୍ୟ ଖ୍ରୀଷ୍ଟିୟାନ ଓ ହିନ୍ଦୁମାନଙ୍କ ପ୍ରତି ସଦୟ ଥିଲେ, ପଡ଼ୋଶୀ ରାଜ୍ୟମାନଙ୍କ ସହିତ ସୁସମ୍ପର୍କ

ରହିଥିଲେ ଓ ଏବଂ ବହୁ ହର୍ମ୍ୟ ଓ ପ୍ରସାଦ ନିର୍ମାଣ କରିଥିଲେ । ତାଙ୍କ ପରେ ସେଠାରେ 'ଅଦିଲ ଶାହି' ବଂଶର ଆଉ ତିନ ଜଣ ରାଜା ମହମ୍ମଦ, ଅଲି (ଦ୍ୱିତୀୟ) ଓ ସିକନ୍ଦର ଶାସନ କରିଥିଲେ । ମହମ୍ମଦ ଥିଲେ ଶାହଜାହାନଙ୍କର ଅନୁଚର ଏବଂ ସିକନ୍ଦରଙ୍କ ସମୟରେ ୧୬୮୬ରେ ଔରଙ୍ଗଜେବ ବିଜାପୁର ଦଖଲ କରି ନେଇଥିଲେ ।

ବାହମନୀ ସାମ୍ରାଜ୍ୟଚ୍ୟୁତ ଉପର୍ଯ୍ୟୁକ୍ତ ପାଞ୍ଚୋଟି ଶାଖା ରାଜ୍ୟ ମଧ୍ୟରେ ସର୍ବଦା ପରସ୍ପର ସଂଘର୍ଷ ଲାଗି ରହିଥିଲା ଏବଂ ବିଜୟ ନଗର ହିନ୍ଦୁ ସାମ୍ରାଜ୍ୟ ତାଂକର ଚିର ଶତ୍ରୁ ସ୍ୱରୂପ ଦଣ୍ଡାୟମାନ ହୋଇଥିଲା । ତା ଫଳରେ ଦାକ୍ଷିଣାତ୍ୟରେ ଇସଲାମ ଧର୍ମର ବିସ୍ତାର ଅବରୁଦ୍ଧ ହେବା ସଙ୍ଗେ ସଙ୍ଗେ ସେଠାରେ ବିଜୟ ନଗର ସାମ୍ରାଜ୍ୟର ଅଭ୍ୟୁଦୟ ସହିତ ହିନ୍ଦୁବାଦର ମଧ୍ୟ ପୁନରୁତ୍‌ଥାନ ଘଟିଥିଲା ।

## ବିଜୟ ନଗର ସାମ୍ରାଜ୍ୟ

ବିଜୟ ନଗର ମହାନଗରୀର ଅଭ୍ୟୁଦୟ ସମ୍ପର୍କରେ ମତାନୈକ୍ୟ ରହିଥିଲେ ସୁଦ୍ଧା ଏକଥା ନିଶ୍ଚିତ ଯେ ତାହା ଦାକ୍ଷିଣାତ୍ୟରେ ହିନ୍ଦୁମାନଙ୍କ ଉପରେ ମୁସଲମାନ ଆକ୍ରମଣର ଅବରୋଧ ଓ ଇସଲାମ ପ୍ରଭାବ ବିସ୍ତାରର ପ୍ରତିରୋଧ ଜନିତ ଏକ ପ୍ରତିକ୍ରିୟାଶୀଳ ଜାତୀୟ ଜାଗରଣର ପରିଣାମ ଏବଂ ତାତ୍କାଳିକ ବୈପ୍ଳବିକ ଆନ୍ଦୋଳନର ନେତୃତ୍ୱ ନେଇଥିବା ସଙ୍ଗମ ନାମଧେୟ ସମ୍ରାଟଙ୍କର ପୁତ୍ର ଯୁଗଳ ହରିହର ଓ ବୁକାଙ୍କର ଅବଦାନ ଏ କ୍ଷେତ୍ରରେ ଉଲ୍ଲେଖନୀୟ । ଭାରତୀୟ ଇତିହାସର ସନ୍ଧିସନ୍ଧି ମୁହୂର୍ତ୍ତରେ ମୁସଲିମ ବିଜୟ ବାତ୍ୟାର ପ୍ରକୋପକୁ ପ୍ରତିହତ କରି ଦାକ୍ଷିଣାତ୍ୟରେ ଦୀର୍ଘ ତିନି ଶତାବ୍ଦୀ କାଳ ହିନ୍ଦୁଧର୍ମ ଓ ସଂସ୍କୃତିର ସୁରକ୍ଷା କରିଥିବା ଦୃଷ୍ଟିରୁ ବିଜୟ ନଗର ସାମ୍ରାଜ୍ୟର ପ୍ରାଧାନ୍ୟ ଅନସ୍ୱୀକାର୍ଯ୍ୟ ।

ବିଜୟ ନଗର ସାମ୍ରାଜ୍ୟର ଆଦ୍ୟକାଳୀନ ଶ୍ରେଷ୍ଠ ସମ୍ରାଟମାନଙ୍କ ମଧ୍ୟରେ ହରିହର ଓ ବୁକା ସର୍ବାଗ୍ରଗଣ୍ୟ । ବୁକାଙ୍କ ରାଜତ୍ୱ କାଳରେ ୧୩୭୪ରେ ଚୀନକୁ କୂଟନୈତିକ ପ୍ରତିନିଧି ପ୍ରେରଣ କରାଯାଇଥିଲା ଏବଂ ତାଙ୍କ ପୁତ୍ର କମ୍ପନ ମଦୁରା ରାଜ୍ୟ ଜୟ କରିବା ଯୋଗୁଁ ଦାକ୍ଷିଣାତ୍ୟରେ ମୁସଲମାନ ପ୍ରତିପତ୍ତି ହ୍ରାସ ପାଇଥିଲା । ପରବର୍ତ୍ତୀ ସମ୍ରାଟ ଦ୍ୱିତୀୟ ହରିହର (୧୩୭୯-୧୪୦୪)

ଥିଲେ ଜଣେ ପରାକ୍ରମଶାଳୀ ଯୋଦ୍ଧା । ସେ ମହୀଶୂର, କର୍ଣ୍ଣାଟ, ତ୍ରିଚନାପଲ୍ଲୀ, କାଞ୍ଚୀ (କାଞ୍ଚିଭାରମ୍), ପ୍ରଭୃତି ଅଞ୍ଚଳରେ ଧର୍ଷଣ ଦ୍ୱାରା ନିଜର ପ୍ରଭୁତ୍ୱ ବିସ୍ତାର କରିଥିଲେ । ୧୪୦୪ରେ ସେ ମୃତ୍ୟୁବରଣ କଲାପରେ ଦୁଇ ବର୍ଷପାଇଁ ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ସିଂହାସନ ଲାଗି ସଂଘର୍ଷ ଲାଗିଥିଲା ଏବଂ ଶେଷରେ ତନ୍ମଧ୍ୟରୁ ଦେବରାୟ (ପ୍ରଥମ) ବିଜୟୀ ହୋଇ ୧୪୦୬ରେ ରାଜା ହୋଇଥିଲେ । ସେ ୧୬ ବର୍ଷ ରାଜତ୍ୱ କରି ମୃତ୍ୟୁ ଲଭିଲା ପରେ ବିଜୟ ନଗର ରାଜ ସିଂହାସନ ତାଙ୍କ ପୌତ୍ର ଦେବରାୟ (ଦ୍ୱିତୀୟ)ଙ୍କୁ ପ୍ରାପ୍ତ ହୋଇଥିଲା । ଦ୍ୱିତୀୟ ଦେବରାୟ (୧୪୨୨-୪୬) ଥିଲେ ସଙ୍ଗମ ରାଜବଂଶର ଶ୍ରେଷ୍ଠ ସମ୍ରାଟ । ତାଙ୍କ ଶାସନ କାଳରେ ବିଜୟ ନଗର ସାମ୍ରାଜ୍ୟର ସୀମା ସିଂହଳ ପର୍ଯ୍ୟନ୍ତ ବିସ୍ତୃତ ହୋଇ-ଥିଲା । ତାଙ୍କ ପୁତ୍ର ମାଲିକାର୍ଜ୍ଜୁନ (୧୪୪୬-୬୫) ମଧ୍ୟ ଜଣେ ଶକ୍ତିଶାଳୀ ରାଜା ଥିଲେ ।

କିନ୍ତୁ ମାଲିକାର୍ଜ୍ଜୁନ ଥିଲେ ସଙ୍ଗମ ବଂଶର ଶେଷ ସମ୍ରାଟ । ୧୪୬୫ରେ ତାଙ୍କର ତିରୋଭାବ ପରେ ସେଠାରେ ଘୋର ବିଶୃଙ୍ଖଳା ଦେଖାଦେଇଥିଲା ଏବଂ ବିଶାଳ ବିଜୟ ନଗର ସାମ୍ରାଜ୍ୟର ପତନ ଆସନ୍ନ ବୋଲି ଜଣା ପଡ଼ୁଥିଲା । ସେତେବେଳେ ଚନ୍ଦ୍ରଗିରିର ଗଭର୍ଣ୍ଣର ନରସିଂହ ସାଲୁ ବିଜୟ ନଗର ସାମ୍ରାଜ୍ୟକୁ ଆସନ୍ନ ପତନ ମୁଖରୁ ରକ୍ଷା କରିବାକୁ ଯାଇ ତାତ୍କାଳୀନ ଅଯୋଗ୍ୟ ରାଜା ବିରୁପାକ୍ଷ (୧୪୬୫-୮୬)ଙ୍କୁ ଗାଦିଚ୍ୟୁତ ଓ ନିହତକରି ନିଜେ ସିଂହାସନ ଆରୋହଣ କରିଥିଲେ ଏବଂ ନିଜର କୌଶଳ ଓ ସାମର୍ଥ୍ୟ ଦ୍ୱାରା ପତନୋନ୍ମୁଖୀ ସାମ୍ରାଜ୍ୟର ଗୌରବ ଫେରାଇ ଆଣି ପାରିଥିଲେ । ତୁଳୁ ବଂଶୀୟ ନାର୍ଶାନାୟକ ଥିଲେ ତାଙ୍କ ଦରବାରର ବିଶ୍ୱସ୍ତ ଓ ବିକ୍ରମଶାଳୀ ସେନାପତି । ୧୪୯୩ରେ ସମ୍ରାଟ ନରସିଂହଙ୍କ ମୃତ୍ୟୁପରେ ନାର୍ଶା ରାଜକୁମାର ଇମାଦି ନରସିଂହଙ୍କୁ ସିଂହାସନରେ ଅଧିଷ୍ଠିତ କରାଇ ନିଜେ ସମସ୍ତ କାର୍ଯ୍ୟ ନିର୍ବାହ କରୁଥିଲେ । କିନ୍ତୁ ୧୫୦୫ରେ ନାର୍ଶାଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ବୀର ନରସିଂହ ୧୫୦୬ରେ ଇମାଦି ନରସିଂହଙ୍କୁ ଗାଦିଚ୍ୟୁତ କରି ନିଜେ ସିଂହାସନ ଅଧିକାର କରିଥିଲେ ଏବଂ ବିଜୟ ନଗରରେ ସାଲୁ ରାଜବଂଶ ସ୍ଥାନରେ ତୁଳୁ ରାଜବଂଶ ମୁଣ୍ଡ ଟେକିଲା ।

ବୀର ନରସିଂହଙ୍କ କନିଷ୍ଠ ଭ୍ରାତା ଓ ଉତ୍ତରାଧିକାରୀ କୃଷ୍ଣଦେବରାୟ (୧୫୦୯-୨୯) ଥିଲେ ବିଜୟ ନଗର ସାମ୍ରାଜ୍ୟର ସର୍ବଶ୍ରେଷ୍ଠ ସମ୍ରାଟ ।

ସାମ୍ରାଜ୍ୟର ସୁନାମ ପ୍ରତିଷ୍ଠା ସଙ୍ଗେ ସଙ୍ଗେ ସେ ସାମ୍ରାଜ୍ୟ ବିସ୍ତାର କରିବାକୁ ଯାଇ ଓଡ଼ିଶାର ଉଦୟଗିରି ଓ ବିଜାପୁରର ରାଇଚୁର୍‌କୁ ମଧ୍ୟ ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରିଥିଲେ । କେବଳ ସେତିକି ନୁହେଁ, ତାଙ୍କ ରାଜତ୍ୱ କାଳରେ ଧର୍ମ, ସାହିତ୍ୟ ଓ କଳାର ପ୍ରଭୂତ ବିକାଶ ସାଧିତ ହୋଇଥିଲା । ପୁଣି ତାଙ୍କ ପରବର୍ତ୍ତୀ ହିନ୍ଦୁ ରାଜାମାନଙ୍କ ଅବଦାନ ନିତାନ୍ତ ନଗଣ୍ୟ ଥିଲା । ତେଣୁ ଐତିହାସିକମାନେ କୃଷ୍ଣଦେବ ରାୟଙ୍କୁ ଦକ୍ଷିଣ ଭାରତର ଶେଷ ଶ୍ରେଷ୍ଠ ହିନ୍ଦୁ ସମ୍ରାଟ ରୂପେ ଗ୍ରହଣ କରିଛନ୍ତି ।

କୃଷ୍ଣଦେବ ରାୟଂକ ତିରୋଭାବ ପରେ ତାଂକ ପୁତ୍ର ଅଚ୍ୟୁତରାୟ (୧୫୩୦-୪୨)ଙ୍କ ରାଜତ୍ୱ କାଳରେ ତାଂକ ମାତୁଳ ଅରବିଦୁ ବଂଶୀୟ ରାମରାୟ ଓ ନିଜର ଦୁଇଜଣ ଶାଳକଂକ ମଧ୍ୟରେ କୁଟିଳ ରାଜନୈତିକ ଚକ୍ରାନ୍ତର ସୂତ୍ରପାତ ଘଟିଥିଲା ଏବଂ ଅଚ୍ୟୁତଂକ ପରେ ସଦାଶିବ ( ୧୫୪୨-୭୦ )ଙ୍କ ଶାସନ କାଳରେ ରାମରାୟ ସର୍ବେସର୍ବା ହୋଇଥିଲେ । ସେ ନିଜର ସୁବିଧା ଅନୁସାରେ ବିଜାପୁର ଓ ଅହମ୍ମଦ ନଗରକୁ ସମର୍ଥନ ଜଣାଇ ପରସ୍ପର ବିପକ୍ଷରେ ସାହାଯ୍ୟ କରିବା ଦ୍ୱାରା ବେରାର ବ୍ୟତୀତ ଅନ୍ୟାନ୍ୟ ମୁସଲମାନ ରାଜ୍ୟଗୁଡ଼ିକ ବିଜୟ ନଗର ସାମ୍ରାଜ୍ୟ ବିରୋଧରେ ଏକଜୁଟ ହୋଇ ୧୫୬୫ରେ ବିଖ୍ୟାତ 'ତାଲିକୋଟା ଯୁଦ୍ଧ'ରେ ରାମରାୟଙ୍କୁ ପରାସ୍ତ ତଥା ନିହତ କରି ବିଜୟ ନଗର ନଗରୀକୁ ଧ୍ୱସ୍ତବିଧ୍ୱସ୍ତ କରାଇଥିଲେ । ଏହା ସତ୍ତ୍ୱେ ବିଜୟନଗର ସାମ୍ରାଜ୍ୟର ସମସ୍ତ ଅଞ୍ଚଳ ମୁସଲମାନମାନେ ଦଖଲ କରିପାରି ନଥିଲେ; ମଦୁରା, ତାଞ୍ଜୋର ପ୍ରଭୃତି କେତେକ ଛୋଟ ଛୋଟ ରାଜ୍ୟ ରାଜା ବା ନାୟକଙ୍କର କର୍ତ୍ତୃତ୍ୱରେ ସ୍ୱାଧୀନ ହୋଇ ରହିଥିଲା ଏବଂ ରାମରାୟଙ୍କ ଭ୍ରାତା ତିରୁମଲ୍ଲ ୧୫୭୦ରେ ସଦାଶିବଙ୍କୁ ରାଜ୍ୟଚ୍ୟୁତକରି ବିଜୟନଗରଠାରୁ ଯାଇ ପେନୁକୋଣ୍ଡା ଠାରେ ରାଜଧାନୀ ପ୍ରତିଷ୍ଠା କରି ମୁସଲମାନ ଶକ୍ତି ବିସ୍ତାର ପ୍ରତିରୋଧ କରିଥିଲେ । ତିରୁମଲ୍ଲଙ୍କ ପରେ ତାଂକ ପୁତ୍ର ରଙ୍ଗା (ଦ୍ୱିତୀୟ) ମଧ୍ୟ ବିଜୟନଗର ସାମ୍ରାଜ୍ୟର ହୃତ ଗୌରବ ଫେରାଇ ଆଣିବାକୁ ଉଦ୍ୟମ କରିଥିଲେ ଏବଂ ତାଙ୍କର ଭ୍ରାତା ଦ୍ୱିତୀୟ ବେଙ୍କଟ (୧୫୮୬-୧୬୧୪) ଚନ୍ଦ୍ରଗିରିକୁ ରାଜଧାନୀ ପରିବର୍ତ୍ତନକରି ସାମ୍ରାଜ୍ୟର ସମ୍ମାନ ବଜାୟ ରଖିବା ଦିଗରେ ଚେଷ୍ଟିତଥିଲେ ।

କିନ୍ତୁ ବେଙ୍କଟଙ୍କ ଭ୍ରାତୃଷ୍ପୁତ୍ର ଶ୍ରୀରଙ୍ଗ (ରଙ୍ଗ-ତୃତୀୟ) କ୍ଷୁଦ୍ର ଦେଶୀୟ ରାଜାଙ୍କର ସଙ୍କୀର୍ଣ୍ଣ ସ୍ୱାର୍ଥାନ୍ଧତା ତଥା ବିଜାପୁର ଓ ଗୋଲକୁଣ୍ଡାର ଲୋଲୁପ

ବୃଷ୍ଟି କବଳରୁ ବିଜୟନଗର ସାମ୍ରାଜ୍ୟକୁ ବଞ୍ଚାଇ ପାରି ନଥିଲେ; ତାହାର ଅନେକ ଅଞ୍ଚଳ ଗୋଲକୁଣ୍ଡା ଓ ବିଜାପୁର ଅଧୀନକୁ ଚାଲିଯାଇଥିଲା ଏବଂ ଅନ୍ୟ କେତେକ ଅଞ୍ଚଳ ସାମନ୍ତ ରାଜାମାନଙ୍କର କର୍ତ୍ତୃତ୍ୱରେ ରହିଥିଲା । ଏହିଭଳି ବିଶାଳ ବିଜୟ ନଗର ସାମ୍ରାଜ୍ୟର ପତନ ଅବଶ୍ୟମ୍ଭାବୀ ହୋଇପଡ଼ିଥିଲା ।

## ବିଜୟ ନଗର ସାମ୍ରାଜ୍ୟର ଅବଦାନ

ବିଜୟ ନଗର ସାମ୍ରାଜ୍ୟ ପ୍ରାୟ ତିନି ଶତାବ୍ଦୀ କାଳ କେବଳ ଦକ୍ଷିଣ ଭାରତରେ ମୁସଲମାନ ଶକ୍ତି ପ୍ରସାରର ପ୍ରତିରୋଧ କରି ନଥିଲା, ତା ସଙ୍ଗେ ସଙ୍ଗେ ଶାସନ, ସାହିତ୍ୟ, କଳାର ବିକାଶ ଦିଗରେ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା । ଚନ୍ଦ୍ରାମାନଙ୍କ ଶାସନ ଏକଚ୍ଛତ୍ରବାଦୀ ଥିଲେ ସୁଦ୍ଧା ପ୍ରଜାସ୍ୱାର୍ଥ ବିରୋଧୀ ନଥିଲା । ଜମିକର ବା ଶିସ୍ତ ଥିଲା ଆୟର ପ୍ରଧାନ ମାଧ୍ୟମ । ଦୃଢ଼ ସାମରିକ ସଙ୍ଗଠନ ଦ୍ୱାରା ସାମ୍ରାଜ୍ୟର ଶକ୍ତି ପ୍ରଦର୍ଶିତ ହେଉଥିଲା । ପଞ୍ଚଦଶ ଶତାବ୍ଦୀର ଆଦ୍ୟ ଭାଗରେ ବିଜୟ ନଗର ସାମ୍ରାଜ୍ୟ ପର୍ଯ୍ୟଟନ କରିଥିବା ଇଟାଲିୟ ପରିବ୍ରାଜକ ନିକୋଲୋ କୋଣ୍ଟିଙ୍କ ମତରେ 'ବିଜୟ ନଗରର ସମ୍ରାଟ ଥିଲେ ଭାରତର ଅନ୍ୟାନ୍ୟ ରାଜାମାନଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ ।'

ସେହି ସମୟରେ ବିଜୟ ନଗର ବାଣିଜ୍ୟର ଏକ ପ୍ରଧାନ ପୀଠରୂପେ ମଧ୍ୟ ସୁଖ୍ୟାତି ଅର୍ଜନ କରିଥିଲା । ତାହା ମାଳୟ, ବ୍ରହ୍ମଦେଶ, ଚୀନ, ଆରେବିଆ, ପେର୍ଶିଆ, ଆବିସିନିଆ, ପର୍ତ୍ତୁଗାଲ ପ୍ରଭୃତି ଦେଶ ସହିତ ବାଣିଜ୍ୟ ସମ୍ପର୍କ ରଖିଥିଲା । ୧୪୪୨–୪୩ ମସିହାରେ ବିଜୟ ନଗର ପରିଭ୍ରମଣରେ ଆସିଥିବା ପେର୍ଶିଆବାସୀ ଅବଦୁର୍ ରାଜାକ୍‌ଙ୍କ ମତରେ ସେତେବେଳେ ବିଜୟନଗର ସାମ୍ରାଜ୍ୟର ଅନ୍ୟୂନ ତିନିଶହ ସାମୁଦ୍ରିକ ବନ୍ଦର ରହିଥିଲା ।

ଏହା ବ୍ୟତୀତ, ବିଜୟ ନଗରର ସମ୍ରାଟଗଣ ସାହିତ୍ୟ ଓ କଳାର ବିଷ୍ଟାପର ପୃଷ୍ଠପୋଷକ ଥିଲେ । ସେତେବେଳେ ସଂସ୍କୃତ, ତାମିଲ, ତେଲୁଗୁ ଓ କାନଡ଼ା ସମସ୍ତ ଭାଷାରେ ଉନ୍ନତ ସାହିତ୍ୟ ସୃଷ୍ଟି ହୋଇଥିଲା । ସାୟନା ବେଦ ଉପରେ ଏକ ଉପାଦେୟ ଟୀକାଗ୍ରନ୍ଥ ପ୍ରଣୟନ କରିଥିଲେ ଏବଂ ତାଙ୍କ

ଭ୍ରାତା ମାଧବ ମଧ୍ୟ ବେଶ୍ ସୁଖ୍ୟାତି ଅର୍ଜନ କରିଥିଲେ । କୃଷ୍ଣଦେବରାୟ * ଥିଲେ ସ୍ୱୟଂ ଜଣେ ସୁ ସାହିତ୍ୟିକ । ତଦୁପରି, ଆଲ୍ଲସାନି ପେଦାନ୍ନା, ନାନ୍ଦୀ ତିମ୍ମାନ୍ନା, ଆୟ୍ୟାଲ୍ଲା ରାଜୁ ରାମଭଦ୍ର, ଧୂର୍ଜଟୀ, ମାଦାୟ୍ୟାଗାରି, ମାଲ୍ଲାନ୍ନା, ପିଙ୍ଗଲୀ ସୁରାନ୍ନା; ରାମରାଜ ଭୂଷଣମ୍ ଓ ତେନାଲି ରାମକ୍ରିଷ୍ଣା—ଏହି ଆଠ ଜଣ ବିଶିଷ୍ଟ କବି ତଥା ପଣ୍ଡିତ 'ଅଷ୍ଟ ଦିଗ୍‌ଗଜ' ଭାବରେ ତାଙ୍କ ଦରବାର ମଣ୍ଡନ କରୁଥିଲେ । ବିଜୟ ନଗର ରାଜଧାନୀର ଭଗ୍ନାବଶେଷ, କୃଷ୍ଣଦେବ ରାୟଙ୍କ ଅମଳରେ ନିର୍ମିତ ହାଜରା ଓ ବିଥଲାସ୍ୱାମୀ ମନ୍ଦିରରୁ ତାତ୍କାଳୀନ କଳାନୈପୁଣ୍ୟର ନିଦର୍ଶନ ମିଳେ । ସଂକ୍ଷେପରେ ପ୍ରକାଶ କଲେ, ସେହି ଯୁଗ ଦକ୍ଷିଣ ଭାରତୀୟ ସାହିତ୍ୟର ବିକାଶ କ୍ଷେତ୍ରରେ ନବପ୍ରଭାତର ସୂଚନା ଦେଇଥିଲା ଏବଂ ବିଜୟ ନଗର ସାମ୍ରାଜ୍ୟ ଦକ୍ଷିଣ ଭାରତୀୟ ସଂସ୍କୃତିର ସଂଶ୍ଳେଷ (Synthesis of South Indian Culturae) ଥିଲା ।

ସର୍ବୋପରି, ସେହି ସମାଜ ବିଶେଷ ରକ୍ଷଣଶୀଳ ନଥିଲା । କେତେକ ବ୍ରାହ୍ମଣ ନିରାମିଷାଶୀ ଥିଲେ ମଧ୍ୟ ଅନ୍ୟମାନେ ବିଭିନ୍ନ ପଶୁପକ୍ଷୀର ମାଂସାହାର କରୁଥିଲେ । ବଳିଦାନ ପ୍ରଥା ପୂରା ପ୍ରଚଳିତ ଥିଲା । ଶୈବ, ବୈଷ୍ଣବ, ବୌଦ୍ଧ, ଜୈନ, ଖ୍ରୀଷ୍ଟାନାଦି ବିଭିନ୍ନ ସଂପ୍ରଦାୟ ପ୍ରତି ଉଦାର ମନୋବୃତ୍ତି ପୋଷଣ କରାଯାଉଥିଲା । ନାରୀମାନଙ୍କୁ ଉଚିତ ସମ୍ମାନ ଦିଆଯାଉଥିଲା । ସେମାନେ ବହୁବିଧ ମୂଲ୍ୟବାନ ଅଳଙ୍କାର ବ୍ୟବହାର କରୁଥିଲେ । କେତେକ ନାରୀ ରାଜସେବିକା ରୂପେ ନିଯୁକ୍ତ ପାଉଥିଲେ । ନୃତ୍ୟ, ଗୀତ, ସଙ୍ଗୀତ ବ୍ୟତୀତ ସେମାନଙ୍କ ମଧ୍ୟରୁ କେତେକ ଯୁଦ୍ଧବିଦ୍ୟାରେ ମଧ୍ୟ ନିପୁଣା ଥିଲେ । ସେଠାରେ ସତୀଦାହ ପ୍ରଥା ପ୍ରବଳ ଥିଲା ଏବଂ ବ୍ରାହ୍ମଣ ସମାଜ ତାକୁ ଉତ୍ସାହିତ କରୁଥିଲା । ନୃତ୍ୟ, ସଙ୍ଗୀତ ଓ ନାଟକ (ଥିଏଟର) ଥିଲା ସେହି ସମାଜରେ ଅବସର ବିନୋଦନର ପ୍ରଧାନ ଉପାଦାନ । ସେହି ସମୟରେ ବିଜୟନଗର ପରିଦର୍ଶନ କରିଥିବା ଜନୈକ ପର୍ତ୍ତୁଗୀଜ ପରିବ୍ରାଜକ (Domingos Paes)ଙ୍କ ଭାଷାରେ ବିଜୟ ନଗର ଥିଲା ପୃଥିବୀରେ ଶ୍ରେଷ୍ଠ ସମୃଦ୍ଧିଶାଳୀ ନଗରୀ ('the best provided city in the world') ।

* କୃଷ୍ଣଦେବରାୟ ସଂସ୍କୃତରେ ପାଞ୍ଚୋଟି ପୁସ୍ତକ ଏବଂ ତେଲୁଗୁରେ 'ଆମୁକ୍ତ ମାଲ୍ୟଦା' ନାମକ ଗୋଟିଏ ପୁସ୍ତକ ରଚନା କରିଥିବା ଜଣାଯାଏ ।

## ଓଡ଼ିଶା

ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ଠାରୁ ଓଡ଼ିଶାରେ ଗଙ୍ଗ * ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ ଏବଂ ଏକାଦଶ ଶତାବ୍ଦୀ ବେଳକୁ ଓଡ଼ିଶା ଏକ ଶକ୍ତିଶାଳୀ ସ୍ୱାଧୀନ ରାଜ୍ୟ ରୂପେ ଶିରୋତ୍ତୋଳନ କରିଥିଲା । ଏହି ବଂଶର ଶ୍ରେଷ୍ଠ ରାଜାଥିଲେ ରାଜରାଜ ଦେବଙ୍କ ପୁତ୍ର ଅନନ୍ତବର୍ମା ଚୋଡ଼ଗଙ୍ଗ ଦେବ । ଉତ୍ତରାଧିକାର ସୂତ୍ରରେ ସେ ୧୦୭୭ରେ କଳିଙ୍ଗର ରାଜ ସିଂହାସନ ଅଧିକାର କରି ଦୀର୍ଘ ୭୧ ବର୍ଷକାଳ ରାଜତ୍ୱ କରିଥିଲେ । ସେତେବେଳେ କଳିଙ୍ଗର ସୀମା ପୂର୍ବରେ ସାଗର ପ୍ରାନ୍ତଠାରୁ ପଶ୍ଚିମରେ କୋଶଳ ପର୍ଯ୍ୟନ୍ତ ଏବଂ ଦକ୍ଷିଣରେ ସୀମାଚଳ ଠାରୁ ଉତ୍ତରରେ ଋଷିକୁଲ୍ୟା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଚୋଡ଼ ଗଙ୍ଗଦେବ ନିଜର ଅଜେୟ ସମରାଭିଯାନ ବଳରେ ରାଜ୍ୟର ସୀମା ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ଏବଂ ପଶ୍ଚିମରେ ମଧ୍ୟ ପ୍ରଦେଶର ଗଣ୍ଡୱାନା ପର୍ଯ୍ୟନ୍ତ ବିସ୍ତୃତ କରିଥିଲେ । ସେ କେବଳ ଜଣେ ବୀର ଯୋଦ୍ଧା ନଥିଲେ, ତତ୍ ସଙ୍ଗେ ସଙ୍ଗେ ଥିଲେ ଜଣେ ଅସାଧାରଣ ଧର୍ମ, ସାହିତ୍ୟ ଓ କଳାପ୍ରେମୀ । ପୁରୀସ୍ଥ ଜଗନ୍ନାଥ ମନ୍ଦିର ତାଙ୍କ ଐତିହାସିକ କୃତୀର ଅମର ନିଦର୍ଶନ । ଏହାବ୍ୟତୀତ, ସୀମାଚଳସ୍ଥ ବିଷ୍ଣୁ ମନ୍ଦିର ସମେତ ଅନ୍ୟତ୍ର ଅନେକ ମନ୍ଦିର ସେ ନିର୍ମାଣ କରିଥିଲେ ଏବଂ ବହୁ ସରଣୀ ଓ ଜଳାଶୟ ମଧ୍ୟ ପ୍ରତିଷ୍ଠା କରିଥିଲେ । ତାତ୍କାଳୀନ ଓଡ଼ିଶାରେ ବେଦ, ପୁରାଣ ଓ ଶିଳ୍ପଶାସ୍ତ୍ରର ପ୍ରଭୂତ ବିକାଶ ସାଧିତ ହୋଇଥିଲା ଏବଂ ବିଶିଷ୍ଟ ବୈଷ୍ଣବ ଧର୍ମ ପ୍ରଚାରକ ରାମାନୁଜ ପୁରୀରେ ରହି ବୈଷ୍ଣବ ଧର୍ମର ପ୍ରସାର ଘଟାଇଥିଲେ । ଜଗନ୍ନାଥ ମନ୍ଦିର ଲାଗି

---

* ବହୁ ବର୍ଷ ପୂର୍ବେ ପ୍ରାୟ ଖ୍ରୀ: ପୂ: ୩୦୦ ସମୟରେ ଗଙ୍ଗାନଦୀ ଉପକୂଳରେ ବସବାସ କରୁଥିବା ଗୋଟିଏ ଗୋଷ୍ଠୀ 'ଗଙ୍ଗ' ନାମରେ ପରିଚିତ ଥିଲେ ଏବଂ କାଳକ୍ରମେ ସେମାନେ ବିଭିନ୍ନ ଦଳରେ ବିଭକ୍ତ ହୋଇ ପଞ୍ଚମ ଶତାବ୍ଦୀ ବେଳକୁ ଦଳେ 'ପଶ୍ଚିମ ଗଙ୍ଗ' ନାମରେ ଦକ୍ଷିଣ ମହୀଶୂର ଯାଇ ରାଜତ୍ୱ କଲେ ଓ ଅନ୍ୟ ଏକ ଦଳ 'ପୂର୍ବଗଙ୍ଗ' ନାମରେ ପରିଚିତ ହୋଇ ତ୍ରିକଳିଙ୍ଗ ଆସି ରାଜତ୍ୱ କରିଥିଲେ । ସେହି ତ୍ରିକଳିଙ୍ଗ ରାଜ୍ୟ କଳିଙ୍ଗ, କଙ୍ଗୋଦ ଏବଂ ଉତ୍କଳ ଓ କୋଶଳର କେତେକ ଅଂଶକୁ ନେଇ ଗଠିତ ହୋଇଥିଲା ।

ଓଡ଼ିଶା ଜଗତସାରା ପ୍ରଖ୍ୟାତ ହୋଇଥିବାରୁ କେତେକ ଐତିହାସିକ ଚୋଡ଼ଗଙ୍ଗ ଦେବଙ୍କୁ ଯଥାର୍ଥରେ ଆଧୁନିକ ଓଡ଼ିଶାର ଜନକ ଆଖ୍ୟା ଦେଇଛନ୍ତି ।

ଖ୍ରୀ: ୧୧୪୮ ଠାରୁ ୧୨୩୮ ମଧ୍ୟରେ ଓଡ଼ିଶାରେ କାମାର୍ଣ୍ଣବ ଦେବ, ରାଜରାଜ ଦେବ ଓ ଅନଙ୍ଗ ଭୀମ ଦେବ ପ୍ରମୁଖ ରାଜତ୍ୱ କରିଥିଲେ । ସେମାନଙ୍କ ମଧ୍ୟରେ ଅନଙ୍ଗ ଭୀମ ଦେବ (୧୨୧୧-୩୮) ଥିଲେ ଜଣେ ସୁଶାସକ । ସେ ବହୁ ଜନ କଲ୍ୟାଣକର କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ମୁସଲମାନ ଆକ୍ରମଣ ପ୍ରତିହତ କରିବା ଉଦ୍ଦେଶ୍ୟରେ ଏକ ବିରାଟ ସେନାବାହିନୀ ଗଠନ କରି ଓଡ଼ିଶା ଭୂଖଣ୍ଡକୁ ଏକ ବୀରଭୂମିରେ ପରିଣତ କରିଥିଲେ ।

ତାଙ୍କ ପୁତ୍ର ତଥା ଉତ୍ତରାଧିକାରୀ ପ୍ରଥମ ନରସିଂହ ଦେବ (୧୨୩୮-୬୪) ଙ୍କ ରାଜତ୍ୱ ରାଜ୍ୟ ବିସ୍ତାର, ପ୍ରଜାଶାସନ ଓ ସ୍ଥାପତ୍ୟକଳାର ବିକାଶ ଦୃଷ୍ଟିରୁ ଓଡ଼ିଶା ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିଥିଲା । ୧୨୪୨ ଠାରୁ ୧୨୪୪ ମଧ୍ୟରେ ନରସିଂହ ଦେବ ମୁସଲମାନ ସୁଲତାନ ତୁଘାନ ଖାଁଙ୍କ ଦ୍ୱାରା ଶାସିତ ବଙ୍ଗ ଦେଶ ଆକ୍ରମଣ କରି ଗୌଡ଼ ଦେଶ ଲୁଣ୍ଠନ କରିବା ସଙ୍ଗେ ସଙ୍ଗେ ମେଦିନୀପୁର, ବାଙ୍କୁଡା ଓ ହୁଗୁଳି ପ୍ରଭୃତି ପ୍ରଦେଶକୁ ଓଡ଼ିଶାର ଅନ୍ତର୍ଭୁକ୍ତ କରିଥିଲେ ଏବଂ ଦାକ୍ଷିଣାତ୍ୟରେ କାକତୀୟ ବଂଶର ରାଜା ଗଣପତିଙ୍କୁ ଯୁଦ୍ଧରେ ପରାସ୍ତ କରି ରାଜ୍ୟରୁ ବହିରାକ୍ରମଣ ଆଶଙ୍କା ଦୂର କରିଥିଲେ । ତାଙ୍କ ରାଜତ୍ୱ କାଳରେ ଚନ୍ଦ୍ରଭାଗା ମୁହାଣରେ ବିଖ୍ୟାତ ସୂର୍ଯ୍ୟ ମନ୍ଦିର 'କୋଣାର୍କ' ନିର୍ମିତ ହୋଇଥିଲା । ଏତଦ୍ଭିନ୍ନ ଚୋଡ଼ଗଙ୍ଗ ଦେବଙ୍କ ସମୟରେ ନିର୍ମିତ ଜଗନ୍ନାଥ ମନ୍ଦିର ନରସିଂହ ଦେବଙ୍କ ଦ୍ୱାରା ପୂର୍ଣ୍ଣାଙ୍ଗ ଲାଭ କରିଥିଲା ।

ନରସିଂହ ଦେବ (୧ମ) ଙ୍କ ପରେ ଓଡ଼ିଶାରେ ଗଙ୍ଗବଂଶର ଗୌରବ କ୍ରମଶଃ କ୍ଷୁର୍ଣ୍ଣ ହୋଇଥିଲା । ଓଡ଼ିଶାର ଚତୁର୍ଦ୍ଦିଗରେ ଶତ୍ରୁ ରାଜ୍ୟମାନ * ଶକ୍ତିଶାଳୀ ହୋଇ ଉଠିଥିଲେ ଏବଂ ନରସିଂହଙ୍କ ପରବର୍ତ୍ତୀ ଗଙ୍ଗବଂଶୀୟ ରାଜାମାନେ ନିତାନ୍ତ ନିଃସ୍ତେଜ ଓ ଦୁର୍ବଳ ଥିଲେ । ଗଙ୍ଗବଂଶର ଶେଷ ରାଜା

---

* ଓଡ଼ିଶାର ଉତ୍ତରରେ ବଙ୍ଗ, ଦକ୍ଷିଣରେ ବିଜୟନଗର ଓ ଦକ୍ଷିଣ— ପଶ୍ଚିମରେ ବାହମନୀ ସାମ୍ରାଜ୍ୟ ସେତେବେଳେ ଶକ୍ତିଶାଳୀ ହୋଇ ଉଠିଥିଲେ ।

ଭାନୁଦେବ ନିଃସନ୍ତାନ ହୋଇ ୧୪୩୪ରେ ମୃତ୍ୟୁ ବରଣ କରିବାରୁ ତାହାଙ୍କ ଅବସ୍ଥାର ସୁଯୋଗ ନେଇ ତାଙ୍କ ରାଜତ୍ୱ କାଳରେ ମନ୍ତ୍ରୀ ପଦ ଲାଭ କରିଥିବା କପିଳା ନାମକ ଜନୈକ କ୍ଷତ୍ରୀୟ ୧୪୩୫ରେ କପିଳେନ୍ଦ୍ର ଦେବ ନାମରେ ଓଡ଼ିଶାର ରାଜ ସିଂହାସନ ଅଧିକାର କରିଥିଲେ ଏବଂ ଓଡିଶାରେ ସୂର୍ଯ୍ୟବଂଶର ପ୍ରତିଷ୍ଠା ହୋଇଥିଲା । କପିଳେନ୍ଦ୍ର ଦେବ ଶତ୍ରୁ ଆକ୍ରମଣ ପ୍ରତିହତ କରି ଗଙ୍ଗା-ଠାରୁ କାବେରୀ ପର୍ଯ୍ୟନ୍ତ ରାଜ୍ୟସୀମା ବିସ୍ତାର କରିଥିଲେ । ଏପରିକି ସେ ବିଜୟ ନଗର ସାମ୍ରାଜ୍ୟର ପ୍ରଧାନ ପୀଠ କାଞ୍ଚି ଓ ଉଦୟ ଗିରି ସହିତ ବାହମନୀ ରାଜ୍ୟର ରାଜଧାନୀ କଲବର୍ଗ ମଧ୍ୟ ଦଖଲ କରି ନେଇଥିଲେ । ଦାକ୍ଷିଣାତ୍ୟ ବିଜୟ ପରେ ସେ 'ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲବର୍ଗେଶ୍ୱର' ଉପାଧି ଧାରଣ କରିଥିଲେ । କପିଳେନ୍ଦ୍ର ଦେବ କେବଳ ଦିଗ୍‌ବିଜୟୀ ବୀର ନଥିଲେ, ତତ୍ ସଙ୍ଗେ ସଙ୍ଗେ ସେ ଥିଲେ ଜଣେ ପ୍ରଜା-ହିତୈଷୀ ଶାସକ, ବଦାନ୍ୟ ଦାତା ଏବଂ ସାହିତ୍ୟ † ଓ କଳାପ୍ରେମୀ । ତାଙ୍କ ଶାସନ କାଳରେ ଓଡ଼ିଶାର ହୃତ ଗୌରବ ପୁନଃ ପ୍ରତିଷ୍ଠିତ ହୋଇଥିଲା ।

ଖ୍ରୀ: ୧୪୬୭ରେ ଦକ୍ଷିଣ ଭାରତ ଗସ୍ତ କାଳରେ କୃଷ୍ଣାନଦୀ ତୀରରେ କପିଳେନ୍ଦ୍ର ଦେବଙ୍କ ତିରୋଭାବ ଘଟିଥିଲା ଏବଂ ତାଙ୍କ ପରେ ପୁରୁଷୋତ୍ତମ ଦେବ ସିଂହାସନ ଆରୋହଣ କରିଥିଲେ । ସେତେବେଳେ କପିଳେନ୍ଦ୍ର ଦେବଙ୍କ ହସ୍ତରେ ପରାସ୍ତ ହୋଇଥିବା ବିଜୟ ନଗର ଓ ବାହମନୀ ସାମ୍ରାଟ ପୁଣି ଓଡ଼ିଶା ଆକ୍ରମଣ କରିଥିଲେ । ତା ଫଳରେ ସାଲ୍ୱ ନରସିଂହ ଚନ୍ଦ୍ରଗିରି, ଉଦୟଗିରି ଓ କାଞ୍ଚି ସମେତ କୃଷ୍ଣାନଦୀର ଦକ୍ଷିଣାଞ୍ଚଳ ଦଖଲ କରି ନେଇ-ଥିଲେ ଏବଂ ରାଜମହେନ୍ଦ୍ର ପ୍ରଭୃତି କୃଷ୍ଣା-ଗୋଦାବରୀ ଦ୍ୱିନଦ ପ୍ରଦେଶ ବାହମନୀ ସାମ୍ରାଜ୍ୟରେ ସାମିଲ ହୋଇଥିଲା । କିନ୍ତୁ ଅଳ୍ପ କାଳ ମଧ୍ୟରେ ପୁରୁଷୋତ୍ତମ ଦେବ ସାଲ୍ୱ ନରସିଂହଙ୍କ ରାଜଧାନୀ କାଞ୍ଚି ଉପରେ ପ୍ରଚଣ୍ଡ ପ୍ରତ୍ୟାକ୍ରମଣ ଚଳାଇ ତାଙ୍କୁ ବନ୍ଦୀ କରିଥିଲେ ଏବଂ ସନ୍ଧିସୂତ୍ରରେ ସେ ଉଦୟ-ଗିରି ରାଜ୍ୟ ସହିତ କାଞ୍ଚି ରାଜକନ୍ୟା ପଦ୍ମାବତୀଙ୍କୁ ପତ୍ନୀ ରୂପେ ପାଇଥିଲେ । ୧୪୮୨ରେ ତୃତୀୟ ମହମ୍ମଦ ଶାହଙ୍କ ମୃତ୍ୟୁ ପରେ ବାହମନୀ ସାମ୍ରାଜ୍ୟ ଦୁର୍ବଳ

---

† କପିଳେନ୍ଦ୍ର ଦେବ 'ପରଶୁରାମ ବିଜୟ' ନାମକ ଗୋଟିଏ ନାଟକ ପ୍ରଣୟନ କରିଥିଲେ ।

ହୋଇ ପଡ଼ିଥିଲା ଏବଂ ସେହି ସୁଯୋଗ ନେଇ ପୁରୁଷୋତ୍ତମ ଦେବ ଗୋଦାବରୀ-କୃଷ୍ଣା ମଧ୍ୟବର୍ତ୍ତୀ ସମସ୍ତ ରାଜ୍ୟ ଓଡ଼ିଶାରେ ଅନ୍ତର୍ଭୁକ୍ତ କରିଥିଲେ । ସେହିଭଳି ବିଜୟ ନଗରରେ ଗୃହବିବାଦର ସୁଯୋଗ ନେଇ ସେ ଗୁଣ୍ଟୁର ରାଜ୍ୟ ଅଧିକାର କରିଥିଲେ ଏବଂ ସେତେବେଳେ ସେ ବିଜୟ ନଗରରୁ ବିଜୟର ନିଦର୍ଶନ ସ୍ୱରୂପ ରାଧାଗୋପାଳ ପ୍ରତିମା ସହ ଗୋଟିଏ ସ୍ୱର୍ଣ୍ଣ ସିଂହାସନ ସାଙ୍ଗରେ ଧରି ଆସିଥିଲେ । (ପୁରୀ ନିକଟସ୍ଥ ସାକ୍ଷୀଗୋପାଳ ଠାରେ ଏହି ପ୍ରତିମା ବିରାଜମାନ ହୋଇଛନ୍ତି ଏବଂ ସ୍ୱର୍ଣ୍ଣ ସିଂହାସନଟି ଶ୍ରୀ ଜଗନ୍ନାଥଙ୍କର ସିଂହାସନ ରୂପେ ବ୍ୟବହୃତ ହେଉଅଛି । ) ଦୀର୍ଘ ତିରିଶ ବର୍ଷର ଶାସନରେ ଓଡ଼ିଶାର ମୁଖ ଉଜ୍ଜ୍ୱଳ କଲାପରେ ୧୪୯୭ରେ ଚନ୍ଦ୍ରାପୂଜା ନଦୀ ତଟରେ ପୁରୁଷୋତ୍ତମ ଦେବଙ୍କର ଦେହାବସାନ ଘଟିଥିଲା ।

ପୁରୁଷୋତ୍ତମ ଦେବଙ୍କ ପରେ ତାଙ୍କ ପୁତ୍ର ପ୍ରତାପରୁଦ୍ର ଦେବ (୧୪୯୭-୧୫୪୦) ବିଶାଳ ଓଡ଼ିଶାର ନରପତି ହୋଇଥିଲେ । କିନ୍ତୁ ସେ ଦୀର୍ଘ ୪୩ ବର୍ଷ ରାଜତ୍ୱ କରିଥିଲେ ସୁଦ୍ଧା ତାଙ୍କ ଅମଳରେ ଓଡ଼ିଶାର ଗୌରବ ହାନି ଘଟିଥିଲା । ବିଜୟ ନଗର, ବଙ୍ଗ ଓ ଗୋଲକୁଣ୍ଡାର ସୁଲତାନଗଣ ଓଡ଼ିଶା ଆକ୍ରମଣ କରି ହୁଗୁଳି, ମେଦିନୀପୁର, ଚନ୍ଦ୍ରଗିରି, ଉଦୟଗିରି ଓ ଗୋଦାବରୀର ଦାକ୍ଷିଣାଞ୍ଚଳ ପ୍ରଦେଶଗୁଡ଼ିକୁ ଓଡ଼ିଶାରୁ ଛିନ୍ନ କରିଥିଲେ । ତାଙ୍କ ରାଜତ୍ୱ କାଳରେ ଶ୍ରୀ ଚୈତନ୍ୟ ପୁରୀଠାରେ ୧୮ ବର୍ଷ କାଳ ଅବସ୍ଥାନ କରି ଓଡ଼ିଶାରେ ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ ଏବଂ ପ୍ରତାପରୁଦ୍ର ଦେବ ସ୍ୱୟଂ ଶ୍ରୀ ଚୈତନ୍ୟଙ୍କର ଅନୁଗାମୀ ଥିଲେ । ପ୍ରତାପରୁଦ୍ରଙ୍କ ସମୟର ଓଡ଼ିଶାର ପ୍ରଶାସନିକ ଶୈଥିଲ୍ୟ ତଥା ବିପର୍ଯ୍ୟୟ ପାଇଁ ବୈଷ୍ଣବ ଧର୍ମର ପ୍ରଭାବ ଦାୟୀ ବୋଲି ଐତିହାସିକମାନେ ମତ ବ୍ୟକ୍ତ କରନ୍ତି । କିନ୍ତୁ ସେଥିପାଇଁ ତାଙ୍କର ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ପ୍ରମୁଖ କେତେକ କୃତଘ୍ନ ଅନୁଚର ବର୍ଗ ମଧ୍ୟ ଦାୟୀ, ଏଥିରେ ସନ୍ଦେହ ନାହିଁ । ତେବେ ଓଡ଼ିଶାର ରାଜ୍ୟସୀମା ସଙ୍କୁଚନକୁ ବାଦ ଦେଲେ ଅନ୍ୟାନ୍ୟ କ୍ଷେତ୍ରରେ ପ୍ରତାପରୁଦ୍ରଙ୍କ ଓଡ଼ିଶା ଅଗ୍ରଗତି କରିଥିଲା । ସେତେବେଳେ ସେର, ମହଣ ପ୍ରଭୃତି ଓଜନ ଓ ଟଙ୍କାର ପ୍ରଚଳନ ଘଟିଥିଲା ଏବଂ ପର୍ତ୍ତୁଗାଲ ସହିତ ନୌବାଣିଜ୍ୟ ସମ୍ପର୍କ ସ୍ଥାପିତ ହୋଇଥିଲା । ଶ୍ରୀଚୈତନ୍ୟଙ୍କ ଧର୍ମ ପ୍ରଚାର ଫଳରେ ତାତ୍କାଳୀନ ସମାଜରେ ଧର୍ମ ଚେତନାର ବିକାଶ ଘଟିଥିଲା । ସର୍ବୋପରି, ତାଙ୍କ ଥିଲା ଓଡ଼ିଆ

ସାହିତ୍ୟର ସୁବର୍ଣ୍ଣଯୁଗ । ସାରଳାଦାସଙ୍କ ପଛକୁ ଜଗନ୍ନାଥ ବଳରାମାଦି ପଞ୍ଚସଖାଙ୍କର ଆବିର୍ଭାବ ଘଟିଥିଲା ଏବଂ ଓଡ଼ିଆ ଭାଷାରେ ପ୍ରଣୀତ 'ମହାଭାରତ', 'ଭାଗବତ' 'ଦାଣ୍ଡି ରାମାୟଣ' ପ୍ରଭୃତି ପୁରାଣ ଗ୍ରନ୍ଥ ଓଡ଼ିଶାର ପୁରପଲ୍ଲୀରେ ଲୋକପ୍ରିୟ ହୋଇ ଉଠିଥିଲା ।

ପ୍ରତାପରୁଦ୍ର ଥିଲେ ସୂର୍ଯ୍ୟବଂଶର ଶେଷ ରାଜା । ତାଙ୍କର କେହି ଯୋଗ୍ୟ ଉତ୍ତରାଧିକାରୀ ନଥିବାରୁ ପ୍ରତାପରୁଦ୍ରଙ୍କ ମୃତ୍ୟୁପରେ ୧୫୪୧ରେ ତାଙ୍କ ମନ୍ତ୍ରୀ ଭୋଇ ବଂଶଜ ଗୋବିନ୍ଦ ବିଦ୍ୟାଧର ସିଂହାସନ ଅଧିକାର କରିଥିଲେ । ଗୋବିନ୍ଦ, ତାଙ୍କର ପୁତ୍ର ଓ ପୌତ୍ର ଦ୍ୱୟ—ଏହିଭଳି ଚାରିଜଣ ଭୋଇବଂଶୀୟ ରାଜା ଓଡ଼ିଶାରେ ମାତ୍ର ଅଠର ବର୍ଷ ନାମ ମାତ୍ରକୁ ରାଜତ୍ୱ କଲା ପରେ ୧୫୫୯ ରେ ଦକ୍ଷିଣାତ୍ୟରେ ପ୍ରତିଷ୍ଠା ଲାଭ କରିଥିବା ଚାଳୁକ୍ୟ ରାଜବଂଶର ଯୁବରାଜ ମୁକୁନ୍ଦ ହରିଚନ୍ଦନ ଭୋଇ ବଂଶର ଶେଷ ରାଜାଙ୍କୁ କ୍ଷମତାଚ୍ୟୁତ କରି ଓଡ଼ିଶାର ଗଜପତି ହୋଇଥିଲେ । ସେ ବଙ୍ଗ ଆକ୍ରମଣ ପ୍ରତିହତ କରି ଓଡ଼ିଶାର ସୀମାକୁ ହୁଗୁଳୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ କରିଥିଲେ ଏବଂ ମୋଗଲ ସମ୍ରାଟ ଆକବରଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ ସ୍ଥାପନ କରିଥିଲେ । କିନ୍ତୁ ସେହି ବନ୍ଧୁତା ଓଡ଼ିଶାର ଭବିଷ୍ୟତ ପାଇଁ ପ୍ରତିକୂଳ ହୋଇଥିଲା । ମୁକୁନ୍ଦଦେବ ଆକବରଙ୍କ ଚିତୋର ଆକ୍ରମଣ କାଳରେ ତାଙ୍କୁ ସାହାଯ୍ୟ କରୁଥିଲା ବେଳେ ବଙ୍ଗର ସୁଲତାନ ସୁଲେମାନ ପରିସ୍ଥିତିର ସୁଯୋଗ ନେଇ ଓଡ଼ିଶା ଆକ୍ରମଣ କରିଥିଲେ । ସେତେବେଳେ ଆକବରଙ୍କ ଠାରୁ କୌଣସି ସାହାଯ୍ୟ ପାଇ ନପାରି ମୁକୁନ୍ଦଦେବ ନିଜେ ମୁସଲମାନ ଆକ୍ରମଣର ପ୍ରବଳ ପ୍ରତିରୋଧ କରି ଶେଷରେ ଯୁଦ୍ଧରେ ନିହତ ହୋଇଥିଲେ ଏବଂ ବଂଗ ସୁଲତାନ ୧୫୬୮ରେ ଓଡ଼ିଶା ଅଧିକାର କରିଥିଲେ । ଏହି ସମୟରେ ସୁଲତାନ ସୁଲେମାନଙ୍କର ସେନାପତି କଳାପାହାଡ଼ ଓଡ଼ିଶାରେ ହିନ୍ଦୁ ଦେବ ମନ୍ଦିରମାନ ବିଧ୍ୱସ୍ତ କରି ପକାଇଥିଲେ । ଏହା ପରେ ଓଡ଼ିଶା ପାଇଁ ଆଫଗାନ୍ ଓ ମୋଗଲ ଶକ୍ତି ମଧ୍ୟରେ ସଂଘର୍ଷ ଅନିବାର୍ଯ୍ୟ ହୋଇ ପଡ଼ିଥିଲା ଏବଂ ଶେଷରେ ୧୫୯୨ ରେ ତାହା ଆକବରଙ୍କ ଶାସନାଧୀନ ହୋଇଥିଲା । ମୁକୁନ୍ଦ ଦେବ ଥିଲେ ଓଡ଼ିଶାର ଶେଷ ସ୍ୱାଧୀନ ଗଜପତି । କଟକଠାରେ ନିର୍ମିତ ନବତଳ ବିଶିଷ୍ଟ ବାରବାଟୀ ଦୁର୍ଗ ତାଙ୍କର ଅମରକୀର୍ତ୍ତି ।

ଉପର୍ଯ୍ୟୁକ୍ତ ରାଜ୍ୟଗୁଡ଼ିକ ବ୍ୟତୀତ ଭାରତୀୟ ଇତିହାସରେ ଆଲୋଚ୍ୟ ଯୁଗରେ ଉତ୍ତରପୂର୍ବ ଅଞ୍ଚଳରେ ନେପାଳ, କାମରୂପ ଓ ଆସାମ ମଧ୍ୟ ସ୍ୱାଧୀନ ହୋଇ ରହିଥିଲା ।

## ନେପାଳ

ନବମ ଶତାବ୍ଦୀର ଶେଷ ଭାଗରେ ନେପାଳ ତିବ୍ବତୀୟ କର୍ତ୍ତୃତ୍ୱକୁ ପରାହତ କରି ସ୍ୱାଧୀନ ରାଜ୍ୟ ରୂପେ ମୁଣ୍ଡ ଟେକିଥିଲା । ୧୦୯୭ ଠାରୁ ୧୩୨୬ ପର୍ଯ୍ୟନ୍ତ ସେଠାରେ ବିଖ୍ୟାତ ଠାକୁରୀ ସମ୍ପ୍ରଦାୟର ଶାସକଗଣ ରାଜତ୍ୱ କରିଥିଲେ । ତାପରେ ଜୟସ୍ଥିତିମଲ୍ଲ ଓ ତାଙ୍କର ତିନିପୁଅ ଧର୍ମ ମଲ୍ଲ, କୀର୍ତ୍ତିମଲ୍ଲ ଓ ଜ୍ୟୋତିର୍ମଲ୍ଲ ନେପାଳର ଶାସନ ଦାୟିତ୍ୱରେ ରହିଥିଲେ । ଜ୍ୟୋତିର୍ମଲ୍ଲଙ୍କ ପୁଅ ଯକ୍ଷମଲ୍ଲ ନେପାଳରେ ଅଖଣ୍ଡ ପ୍ରଭୁତ୍ୱ ବିସ୍ତାର କରି ଦୀର୍ଘ କାଳ (୧୪୨୬-୭୯) ରାଜତ୍ୱ କଲାପରେ ୧୪୮୦ରେ ସେ ତାଙ୍କର ରାଜ୍ୟକୁ ପୁଅ ଓ କନ୍ୟାମାନଙ୍କ ମଧ୍ୟରେ ଭାଗ ଭାଗ କରି ବାଣ୍ଟି ଦେଇଥିଲେ । ତା ଫଳରେ କାଳକ୍ରମେ କାଠମାଣ୍ଡୁ ଓ ଭଟଗାଁ ମଧ୍ୟରେ ଅନ୍ତର୍ବିବାଦର ସୂତ୍ରପାତ ହୋଇଥିଲା ଏବଂ ୧୭୬୮ ସୁଦ୍ଧା ସମଗ୍ର ନେପାଳ ଗୁର୍ଖାମାନଙ୍କ ହାତକୁ ଚାଲି ଯାଇଥିଲା ।

## କାମରୂପ ଓ ଆସାମ

କରତୋୟା ନଦୀର ପୂର୍ବ ପାର୍ଶ୍ୱବର୍ତ୍ତୀ କାମରୂପ (ବା କାମାତ) ରାଜ୍ୟ ତ୍ରୟୋଦଶ ଶତାବ୍ଦୀର ଆଦ୍ୟ ଭାଗରୁ ପଞ୍ଚଦଶ ଶତାବ୍ଦୀର ଶେଷକାଳ ପର୍ଯ୍ୟନ୍ତ 'ଖେନ୍' ନାମକ ଏକ ପାହାଡ଼ିଆ ଜାତିଙ୍କର କର୍ତ୍ତୃତ୍ୱରେ ରହିଥିଲା । ୧୪୯୮ରେ ଅଲ୍ଲାଉଦ୍ଦିନ ହୁସେନ ଶାହଙ୍କ ଦ୍ୱାରା ତାହା ମୁସଲମାନ ଶାସନର ଅନ୍ତର୍ଭୁକ୍ତ ହୋଇଥିଲା । ସେହିପରି, ଆସାମରେ 'ଶାନ୍' ଉପଜାତିର 'ଅହୋମ' ଗୋଷ୍ଠୀ ତ୍ରୟୋଦଶ ଶତାବ୍ଦୀ ଠାରୁ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଏକଛତ୍ର ରାଜତାନ୍ତ୍ରିକ ଶାସନ ପ୍ରତିଷ୍ଠା କରିଥିଲେ ।

---

## ଦ୍ୱାଦଶ ପର୍ଯ୍ୟାୟ

# ମୁସଲମାନ ଯୁଗ (ଗ)

## ମୁସଲମାନ ଯୁଗର ମୂଲ୍ୟାୟନ

ମୁସଲମାନ ଯୁଗରେ ଭାରତର ଶାସନପ୍ରଣାଳୀ, ସାମାଜିକ ପରିସ୍ଥିତି ଆର୍ଥିକ ଅବସ୍ଥା, ସାହିତ୍ୟିକ ଉତ୍କର୍ଷ, କଳା ନୈପୁଣ୍ୟ ଏବଂ ଧର୍ମାଦର୍ଶ ପ୍ରତ୍ୟେକ କ୍ଷେତ୍ରରେ ପରିବର୍ତ୍ତନ ଅପରିହାର୍ଯ୍ୟ ହୋଇ ପଡ଼ିଥିଲା । ଖ୍ରୀ: ୧୨୦୬ରେ ଆରମ୍ଭ ହୋଇଥିବା ଦାସ ବଂଶର ରାଜତ୍ୱ ୧୨୯୦ରେ ଖିଲଜୀମାନଙ୍କ ଆଧିପତ୍ୟ ବିସ୍ତାର ଯୋଗୁଁ ଲୋପ ପାଇଥିଲା ଏବଂ ୧୩୨୦ରେ ତୋଗଲକ ବଂଶର ଅଭ୍ୟୁଦୟ ଫଳରେ ଖିଲଜୀ ବଂଶର ଅବସାନ ଘଟିଥିଲା । ପରିଶେଷରେ, ୧୩୯୮ରେ ତୈମୁରଙ୍କ ଆକ୍ରମଣ ପରେ ତୋଗଲକ ବଂଶର ଅଧଃପତନ ଆରମ୍ଭ ହେଲା ଓ ୧୪୫୧ରେ ଲୋଦୀ ବଂଶ ଶାସନ କ୍ଷମତା ହାସଲ କଲା । ଏ ସବୁ ଶୃଙ୍ଖଳିକର ରାଜନୈତିକ ଅସ୍ଥିରତା ସତ୍ତ୍ୱେ ସେତେବେଳେ ଭାରତୀୟ ସାମାଜିକ ଜୀବନରେ ବିଶେଷ ପରିବର୍ତ୍ତନ ଘଟି ନ ଥିଲା । କିନ୍ତୁ ଏଠାରେ ମୁସଲମାନ ଶକ୍ତି ପ୍ରତିଷ୍ଠା ଲାଭ କରିବା ଫଳରେ ଦେଶର ସାଂସ୍କୃତିକ ଏକତା ଚିରଦିନ ପାଇଁ ଖଣ୍ଡ ବିଖଣ୍ଡିତ ହୋଇ ଯାଇଥିଲା । ସେହି ସମୟରେ ଅର୍ଥ-ନୈତିକ ଅଗ୍ରଗତି ଏବଂ କଳା ଓ ସ୍ଥାପତ୍ୟର ବିକାଶ ବାଧାପ୍ରାପ୍ତ ହୋଇ ନ ଥିଲେ ମଧ୍ୟ ଶାସନତାନ୍ତ୍ରିକ ସ୍ୱେଚ୍ଛାଚାରିତା ସୀମା ଅତିକ୍ରମ କରିଥିଲା ଏବଂ ଭାରତରେ ଧାର୍ମିକ ଆନ୍ଦୋଳନ କ୍ଷେତ୍ରରେ ଏକ ନୂତନ ପର୍ଯ୍ୟାୟ ଉନ୍ମୋଚିତ ହୋଇଥିଲା ।

### ଶାସନପ୍ରଣାଳୀ

ଏହି ଯୁଗରେ ଭାରତରେ ଏକଛତ୍ରବାଦୀ ଶାସନ ଦୃଢ଼ୀଭୂତ ହୋଇ-ଥିଲା । ହିନ୍ଦୁ ଆଧିପତ୍ୟ ଦମନ ଓ ମାଙ୍ଗୋଲ ଆକ୍ରମଣ ପ୍ରତ୍ୟାଖ୍ୟାନ ଉଦ୍ଦେଶ୍ୟ ପୋଷଣ କରିବା ସଙ୍ଗେ ସଙ୍ଗେ ନିରଙ୍କୁଶ କ୍ଷମତା ବିସ୍ତାର ଅଭିପ୍ରାୟରେ

ତଦାମାନ୍ତନ ସୁଲତାନଗଣ ସେମାନଙ୍କର ଶାସନ ଭିତ୍ତିକୁ ସୁଦୃଢ଼ କରିଥିଲେ । ସ୍ୱୟଂ ସୁଲତାନ ଥିଲେ ସର୍ବମୟ ଶାସନକର୍ତ୍ତା । ତେବେ ବିଶ୍ୱସ୍ତ ବନ୍ଧୁ ଓ ଭୃତ୍ୟମାନଙ୍କୁ ନେଇ ଗଠିତ ଏକ ପରାମର୍ଶଦାତା ପରିଷଦ 'ମଜଲିସ୍-ଇ-ଖଲୱ୍ୱାତ୍' ରହିଥିଲା । 'ଦିବାନ-ଇ-ଅର୍ଜ' (ସାମରିକ ବିଭାଗ), 'ଦିବାନ-ଇ-ଇନ୍‌ଶା' (ଯୋଗାଯୋଗ ବିଭାଗ), 'ଦିବାନ-ଇ-ବନ୍ଦଗାନ୍' (କ୍ରୀତଦାସ ବିଭାଗ), 'ଦିବାନ-ଇ-ଅମୀରକୋହି' (କୃଷି ବିଭାଗ) 'ଦିବାନ-ଇ-ମୁସ୍ତଖରାଜ' (ବକେୟା ଆଦାୟ ବିଭାଗ), 'ଦିବାନ-ଇ-ଖଇରାତ୍' (ବଦାନ୍ୟତା ବିଭାଗ) ଆଦି ବିଭିନ୍ନ ବିଭାଗମାନଙ୍କ ଦାୟିତ୍ୱରେ ଦାୟିତ୍ୱବାନ୍ କର୍ମଚାରୀସବୁ ନିଯୁକ୍ତ ଥିଲେ ଏବଂ 'ମୁସରିଫ୍-ଇ-ମମାଲିକ' (ହିସାବ ରକ୍ଷକ),' ମୁସ୍ତାଉଫି-ଇ-ମମାଲିକ' (ହିସାବ ସମୀକ୍ଷକ), 'ଖାଜନ୍' (କୋଷାଧିକାରୀ), 'ମଜ୍ମଦାର' (ଋଣ ଦାତା), 'ବକ୍‌ସି-ଇ-ଫଉଜ' ·(ସେନାବାହିନୀର ବେତନ ଦାତା) ପ୍ରମୁଖ କର୍ମଚାରୀମାନଙ୍କର ସହଯୋଗରେ ଶାସନ କାର୍ଯ୍ୟ ପରିଚାଳିତ ହେଉଥିଲା ।

ନ୍ୟାୟ ଶାସନ ଦାୟିତ୍ୱରେ ଜଣେ 'କାଜି-ଉଲ୍-କାଜାତ୍' (ମୁଖ୍ୟ ବିଚାରପତି) ନିଯୁକ୍ତ ଥିଲେ ଏବଂ ତାଙ୍କୁ କର୍ତ୍ତବ୍ୟ ସଂପାଦନରେ ସାହାଯ୍ୟ କରିବା ନିମିତ୍ତ କେତେକ 'ମୁଫ୍‌ତି' ରହୁଥିଲେ । ଆଇନ ଶୃଙ୍ଖଳା ବଡ଼ କଠୋର ଥିଲା ସମୟେ ସମୟେ ଉଚିତ ଅନୁସନ୍ଧାନ ଓ ତଦନ୍ତ କରି ନ ପାରୁଣୁ ଅଭିଯୋଗର ବିଚାର କରି ଅଭିଯୁକ୍ତ ଆସାମୀକୁ ନିର୍ମମ ଦଣ୍ଡ ଦିଆ ଯାଉଥିଲା । 'କତୁଆଲ' ଥିଲା ମୁଖ୍ୟ ଶାନ୍ତି ଶୃଙ୍ଖଳା ରକ୍ଷକ । ଏହା ବ୍ୟତୀତ, ସୁଲତାନଙ୍କର ଅନେକ ଗୁପ୍ତଚର ମଧ୍ୟ ରହିଥିଲେ ।

'ଖରାଜ୍' ବା ଭୂ-ରାଜସ୍ୱ ଥିଲା ସୁଲତାନଙ୍କର ପ୍ରଧାନ ଆୟ । ଏହା ସାଧାରଣତଃ ହିନ୍ଦୁ ଜମିଦାରମାନଙ୍କଠାରୁ ଆଦାୟ କରା ଯାଉଥିଲା । ଏହା ବ୍ୟତୀତ, ଅଣ ମୁସଲମାନମାନଙ୍କ ଉପରେ 'ଜିଜିୟା' କର ଧାର୍ଯ୍ୟ ହୋଇଥିଲା ଏବଂ ବିଜିତ ଅଞ୍ଚଳରୁ ଲୁଣ୍ଠିତ ସମ୍ପତ୍ତିରୁ ଏକ-ପଞ୍ଚମାଂଶ ରାଜକୋଷକୁ ଯାଉଥିଲା । ଏତଦୁପରି ଗୃହକର, ଜଳକର, ଗୋଚର ଶୁଳ୍କ ପ୍ରଭୃତି ମଧ୍ୟ ବିଧିବଦ୍ଧ ଭାବରେ ପ୍ରଚଳିତ ଥିଲା । ବିଭିନ୍ନ ଶୁଳ୍କ ସମ୍ବନ୍ଧୀୟ ଦେୟ ଉଭୟ ଅର୍ଥ ଓ ପଦାର୍ଥ ଆକାରରେ ଗ୍ରହଣ କରାଯାଉଥିଲା ।

ସେନାବାହିନୀରେ ତୁର୍କ, ଭାରତୀୟ, ଖଟେଇୟାନ୍, ପେର୍ଶିଆନ ପ୍ରଭୃତି ବିଭିନ୍ନ ଜାତିର ଲୋକଙ୍କୁ ନିଯୁକ୍ତ କରାଯାଇଥିଲା । ତାହା ମୁଖ୍ୟତଃ ତିନି

ଭାଗରେ ବିଭକ୍ତ ଥିଲ—ଗଜାରୋହୀ, ଅଶ୍ୱାରୋହୀ ଓ ପଦାତିକ । ସେତେବେଳେ ତୋପ, କମାଣ ଓ ବନ୍ଧୁକ ପ୍ରଭୃତିର ବ୍ୟାପକ ପ୍ରସାର ଘଟି ନଥିଲା ସତ, କିନ୍ତୁ ବାରୁଦ ସାହାଯ୍ୟରେ ଗୋଳା କ୍ଷେପଣ ଏବଂ ଶିଳାସ୍ତ୍ର, ଲୌହାସ୍ତ୍ର, ଶର, ବର୍ଚ୍ଛା ଓ ଅଗ୍ନିବାଣ ବର୍ଷଣର କୌଶଳ ଇଲତୁତ୍‌ମିସଙ୍କ ସମୟରୁ ହିଁ ଆବିଷ୍କୃତ ହୋଇସାରିଥିଲା ।

ଆଡ଼ମ୍ବରପୂର୍ଣ୍ଣ ଦରବାର ଥିଲା ଦିଲ୍ଲୀର ତୁର୍କୀସ୍ଥ ସୁଲତାନମାନଙ୍କର ଏକ ସ୍ୱତନ୍ତ୍ର ଆକର୍ଷଣ । ତାହା ବିଶିଷ୍ଟ କବି, ଗାୟକ, ନର୍ତ୍ତକୀ ଓ ପଣ୍ଡିତ-ମାନଙ୍କଦ୍ୱାରା ମଣ୍ଡିତ ହେଉଥିଲା । ବହୁପତ୍ନୀ ଓ ରକ୍ଷିତାଙ୍କଦ୍ୱାରା ଅନ୍ତଃପୁର ଶୋଭା ପାଉଥିଲା । ରାଜକୁମାର ଓ ରାଜକୁମାରୀମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ରକୋଷ୍ଠର ବ୍ୟବସ୍ଥା ରହିଥିଲା । ରାଜପରିବାର-ଜନ ଖୁବ୍ ବିଳାସ ବ୍ୟସନରେ କାଳାତି-ପାତ କରୁଥିଲେ ।

## ଅର୍ଥନୈତିକ ଅବସ୍ଥା

ଆଲୋଚ୍ୟ ଯୁଗରେ ଅର୍ଥନୈତିକ ଅବସ୍ଥାର ବିକାଶ ସାଧନ ଦିଗରେ ଉଲ୍ଲେଖଯୋଗ୍ୟ ପ୍ରଶାସନିକ ବ୍ୟବସ୍ଥା ଗ୍ରହଣ କରା ନ ଯାଇଥିଲେ ମଧ୍ୟ ଭାରତର ଆର୍ଥିକ ପରିସ୍ଥିତି ବେଶ୍ ସମୃଦ୍ଧ ଓ ସ୍ୱଚ୍ଛଳ ଥିଲା । କୃଷି ଥିଲା ଜନ-ସାଧାରଣଙ୍କର ପ୍ରଧାନ ବୃତ୍ତି । ତଥାପି ପଲ୍ଲୀ ଓ ସହରାଞ୍ଚଳରେ ଲୁଗା, ରେଶମ, ପଶମ, ଚିନି, କାଗଜ, ଜୋତା, ଇଟା, ଧାତୁପାତ୍ର ପ୍ରଭୃତି କ୍ଷୁଦ୍ରଶିଳ୍ପର ବିକାଶ ଘଟିଥିଲା । ଏହା ବ୍ୟତୀତ, ସେତେବେଳେ ଧନୁଶରାଦି ଅସ୍ତ୍ରଶସ୍ତ୍ର, ସୁରା ଓ ସୁବାସିତ ତୈଳାଦି ପ୍ରସାଧନ ସାମଗ୍ରୀ ମଧ୍ୟ ପ୍ରସ୍ତୁତ ହେଉଥିଲା ।

ବାଣିଜ୍ୟ କ୍ଷେତ୍ରରେ ତଦାନୀନ୍ତନ ଭାରତ ଖୁବ୍ ସୁନାମ ଅର୍ଜନ କରିଥିଲା । ସେହି ସମୟରେ କେନ୍ଦ୍ର-ଏସିଆ, ଆଫଗାନିସ୍ଥାନ, ପର୍ସିଆ, ଚୀନ, ମାଳୟ ଓ ଅନ୍ୟାନ୍ୟ ପ୍ରଶାନ୍ତ ମହାସାଗର ଉପକୂଳବର୍ତ୍ତୀ ଦେଶମାନଙ୍କ ସହିତ ଭାରତର ବାଣିଜ୍ୟ ସମ୍ପର୍କ ସ୍ଥାପିତ ହୋଇଥିଲା । ଔଷଧି ବୃକ୍ଷ, ଲୁଗା, ଅଫିମ, ନୀଳ ଓ ବିଭିନ୍ନ କୃଷିଜାତ ଦ୍ରବ୍ୟର ରପ୍ତାନି ଫଳରେ ପ୍ରଚୁର ବିଦେଶୀ ସୁନା ଭାରତ ଭିତରକୁ ଆସୁଥିଲା । ଘୋଡ଼ା, ଓଟ ଓ କେତେକ ବିଳାସ ସାମଗ୍ରୀ ଥିଲା ଭାରତର ପ୍ରଧାନ ଆମଦାନୀ ଦ୍ରବ୍ୟ । ତେବେ ରାଜ୍ୟର ଏକଚାଟିଆ କାରବାର ଓ ଦୃଢ଼ ପ୍ରଶାସନିକ ନିୟନ୍ତ୍ରଣ ଫଳରେ କେତେକ ପରିମାଣରେ ମୁକ୍ତ ବାଣିଜ୍ୟ ବାଧାପ୍ରାପ୍ତ ହେଉଥିଲା ।

ଦରଦାମ ଦୃଷ୍ଟିରୁ ବିଚାର କଲେ, ତିନ ଶତାବ୍ଦୀ ବ୍ୟାପୀ ମୁସଲମାନ ଯୁଗରେ ବିଭିନ୍ନ ପଦାର୍ଥର ମୂଲ୍ୟରେ ଘନ ଘନ ପରିବର୍ତ୍ତନ ଘଟିଥିବା ଲକ୍ଷ୍ୟ କରାଯାଏ । ଅତ୍ୟଧିକ ଉତ୍ପାଦନ ଯୋଗୁଁ କେତେବେଳେ ତାହା ଅତି ନିମ୍ନ-ସ୍ତରରେ ରହୁଥିଲା ତ, ଅଭାବ ସମୟରେ ମୂଲ୍ୟବୃଦ୍ଧି ସୀମା ଟପି ଯାଉଥିଲା । ସାଧାରଣ ଅର୍ଥନୈତିକ ସମୀକ୍ଷାରୁ ଜଣାଯାଏ ଯେ, ଆଲ୍ଲାଉଦ୍ଦିନ ଖିଲିଜୀଙ୍କ ଶାସନ କାଳରେ ଶ୍ୱେତଶର୍କରା ବ୍ୟତୀତ ଅନ୍ୟାନ୍ୟ ଜିନିଷ ଅତି ସୁଲଭ ଥିଲା । କିନ୍ତୁ ମହମ୍ମଦ ବିନ୍ ତୋଗଲକ୍‌ଙ୍କ ରାଜତ୍ୱ ସମୟରେ ଦେଶରେ ଏକ ଭୟଙ୍କର ଦୁର୍ଭିକ୍ଷ ଦେଖାଦେବା ଫଳରେ ସମସ୍ତ ପ୍ରକାର ଅତ୍ୟାବଶ୍ୟକୀୟ ପଦାର୍ଥ ଓ ଉପକରଣ ଅତି ଦୁର୍ମୂଲ୍ୟ ହୋଇ ପଡ଼ିଥିଲା । ପୁଣି, ତୋଗଲକ୍ ରାଜତ୍ୱର ଶେଷ କାଳରେ ଘିଅ ବ୍ୟତୀତ ଅନ୍ୟାନ୍ୟ ସାମଗ୍ରୀର ମୂଲ୍ୟ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଥିବା ଜଣାଯାଏ ।

## ସାମାଜିକ ପରିସ୍ଥିତି

ତଦାନୀନ୍ତନ ସମାଜରେ ଶ୍ରେଣୀ ବୈଷମ୍ୟ ଉତ୍କଟ ଧରଣର ଥିଲା । ସୁଲତାନ୍, ଜମିଦାର ଓ କୃଷି, ମୂଲିଆ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ରହିଥିଲା । ବିଖ୍ୟାତ ସମସାମୟିକ କବି ଅମିର ଖୁସ୍ରୁଙ୍କ ଭାଷାରେ, "ରାଜ-ମୁକୁଟର ପ୍ରତ୍ୟେକ ମୁକ୍ତା ନିଃସ୍ୱ କୃଷକର ଲୋତକାପ୍ଳୁତ ନୟନରୁ ନିର୍ଝରିତ ଶୋଣିତ ବିନ୍ଦୁର ସ୍ଫଟିକ ମାତ୍ର ।" ତେବେ, ସାଂପ୍ରତିକ ସାମାଜିକ ପରି-ପ୍ରେକ୍ଷୀରେ ସିଂହାବଲୋକନ କଲେ ଜଣାଯାଏ ଯେ, ଉତ୍କଟ ଶ୍ରେଣୀବୈଷମ୍ୟ ସତ୍ତ୍ୱେ ସେତେବେଳେ ସାଧାରଣ ଜୀବନ ଧାରଣର ମାନ ଖୁବ୍ ଉଚ୍ଚରେ ଥିଲା । ପୁରପଲ୍ଲୀ ଏବଂ ଗ୍ରାମାଞ୍ଚଳଗୁଡ଼ିକ ସ୍ୱାବଲମ୍ବୀ ଓ ସ୍ୱୟଂ ପର୍ଯ୍ୟାପ୍ତ ଥିବା ଯୋଗୁଁ ନିତାନ୍ତ ଗରିବମାନଙ୍କୁ ମଧ୍ୟ ଅଭାବର ସମ୍ମୁଖୀନ ହେବାକୁ ପଡୁଥିଲା ।

ସେତେବେଳେ କ୍ରୀତଦାସ ପ୍ରଥା ବ୍ୟାପକ ଭାବରେ ପ୍ରଚଳିତ ଥିଲା । ସୁଲତାନ ଓ ସମ୍ଭ୍ରାନ୍ତ ଶ୍ରେଣୀର ଲୋକମାନେ କ୍ରୀତଦାସ-କ୍ରୀତଦାସୀମାନଙ୍କୁ ରଖୁଥିଲେ ଏବଂ ସେମାନଙ୍କ ସଂଖ୍ୟା ଅସ୍ୱାଭାବିକ ଭାବରେ ଅଧିକ ଥିଲା । ଐତିହାସିକମାନଙ୍କ ହିସାବରୁ ପ୍ରକାଶ ଯେ ଆଲ୍ଲାଉଦ୍ଦିନ୍ ଖିଲିଜୀଙ୍କ ସମୟରେ ରାଜପ୍ରାସାଦରେ ଥିବା କ୍ରୀତଦାସ ଓ କ୍ରୀତଦାସୀଙ୍କ ସଂଖ୍ୟା ଥିଲା ପଚିଶ ହଜାର ଏବଂ ଫିରୋଜ ଶାହଙ୍କ ବେଳକୁ ସେମାନଙ୍କ ସଂଖ୍ୟା ଦୁଇ ଲକ୍ଷକୁ ବୃଦ୍ଧିପ୍ରାପ୍ତ ଘଟିଥିଲା । ସେହି ସମୟରେ ଭାରତୀୟମାନଙ୍କ ବ୍ୟତୀତ, ଚୀନ, ତୁର୍କୀ, ଓ

ପେଣ୍ଠିଆରୁ ମଧ୍ୟ କ୍ରୀତଦାସ-କ୍ରୀତଦାସୀମାନଙ୍କୁ କ୍ରୟ କରି ଅଣାଯାଉଥିଲା ବୋଲି ଜଣାଯାଏ ।

ସେହି ସମାଜରେ ନାରୀ ଥିଲା ପରାଧୀନା ବା ପୁରୁଷାଶ୍ରୟୀ । ସେ ଥିଲା ଅସୂର୍ଯ୍ୟଂପଶ୍ୟା, ପରଦାବୃତ୍ତା । ପିତା, ଭ୍ରାତା ସ୍ୱାମୀ ବା କୌଣସି ବନ୍ଧୁଜନ ଯେ କେହି ହେଉ ନା କାହିଁକି, ତାକୁ ପୁରୁଷ ଉପରେ ହିଁ ନିର୍ଭର କରିବାକୁ ପଡ଼ୁଥିଲା । ଏହି ନୀତି ହିନ୍ଦୁ ଓ ମୁସଲମାନ ଉଭୟ ସଂପ୍ରଦାୟର ରମଣୀମାନଙ୍କ ପକ୍ଷେ ପ୍ରଯୁଜ୍ୟ ଥିଲା । ସୁଗୃହିଣୀ ହେବା ଥିଲା ତାର ଶ୍ରେଷ୍ଠ ଧର୍ମ । ସତୀତ୍ୱ ଥିଲା ନାରୀତ୍ୱର ଚରମ ପରାକାଷ୍ଠା । ବାଲ୍ୟବିବାହ ଓ ସତୀଦାହ ପ୍ରଥା ଏହି ଯୁଗରେ ବ୍ୟାପକ ଭାବରେ ପ୍ରସାର ଲାଭ କରିଥିଲା । ଏତାଦୃଶ ସାମାଜିକ ଚଳଣୀ ଉଣା ଅଧିକେ ଉଭୟ ହିନ୍ଦୁ ଓ ମୁସଲମାନ ସଂପ୍ରଦାୟର ସ୍ତ୍ରୀମାନଙ୍କଠାରେ ପ୍ରକାଶ ପାଉଥିଲା । ଏହାର କାରଣ ସ୍ୱରୂପ ଏତିକି କୁହାଯାଇ ପାରେ ଯେ ସେତେବେଳେ ଅନୁପ୍ରବେଶକାରୀ ମାଙ୍ଗୋଲମାନଙ୍କର ଆକ୍ରମଣ ତଥା ବିତ୍ତଶାଳୀ ବିଳାସପ୍ରିୟ ସମ୍ଭ୍ରାନ୍ତବର୍ଗ ଓ ନିର୍ମମ କାମାନ୍ଧ ଶାସକଗୋଷ୍ଠୀର ଅତ୍ୟାଚାରରୁ ନିଜକୁ ସୁରକ୍ଷିତ ରଖିବା ନିମନ୍ତେ ରମଣୀମାନେ ଅବଗୁଣ୍ଠନର ଅନ୍ତରାଳରେ ରହିବା ଲାଗି ଏକ ପ୍ରକାର ବାଧ୍ୟ ହୋଇଥିଲେ । ତେବେ, ସେତେବେଳେ କେତେକ ଉଚ୍ଚ ପରିବାରସମ୍ଭୂତା ମହିଳାଗଣ କଳା, ବିଜ୍ଞାନ ଓ ଶିକ୍ଷା କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିବା ମଧ୍ୟ ଜଣାଯାଏ । ସେମାନଙ୍କ ମଧ୍ୟରେ ରୂପମତି ଓ ପଦ୍ମାବତୀଙ୍କ ନାମ ଉଲ୍ଲେଖଯୋଗ୍ୟ ।

## ଭାଷା ଓ ସାହିତ୍ୟ

ମୁସଲମାନମାନଙ୍କର କ୍ଷମତା ବିସ୍ତାର ଫଳରେ ଭାରତରେ ଏକ ଭିନ୍ନ ଓ ନୂତନ ସାହିତ୍ୟର ପ୍ରସାର ଘଟିଥିଲା ଏବଂ ମୁସଲମାନ ରାଜତ୍ୱର ଦୀର୍ଘ ସ୍ଥାୟିତ୍ୱ ଯୋଗୁଁ ହିନ୍ଦୁ ଓ ଇସଲାମୀ ସଭ୍ୟତା ଓ ସାହିତ୍ୟ ପାରସ୍ପରିକ ଭାବରେ ପ୍ରଭାବିତ ହୋଇଥିଲା । ରାଜନୈତିକ କ୍ଷେତ୍ରରେ ଦୁଇଗୋଷ୍ଠୀ ମଧ୍ୟରେ କେତେକ ବିଭେଦ ଓ ମତାନୈକ୍ୟ ଦେଖାଦେଇଥିଲେ ସୁଦ୍ଧା ଉଭୟ ସଂପ୍ରଦାୟର ସାହିତ୍ୟରଥୀମାନେ ସ୍ୱଭାବସୁଲଭ ଉଦାରତାବଶତଃ ଅପରର ସାହିତ୍ୟିକ କୃତୀର ପ୍ରଶଂସା କରିବାରେ ଶତମୁଖ ହୋଇ ଉଠିଥିଲେ । କେବଳ ଏତିକି ନୁହେ ସେତେବେଳେ ମୁସଲମାନ କବି ଓ ଲେଖକ ହିନ୍ଦୁସ୍ଥାନର ଜୀବନ ଓ ଇତିହାସ ସମ୍ବନ୍ଧରେ ହିନ୍ଦୀରେ ବହୁ ପୁସ୍ତକ ପ୍ରଣୟନ କରିଥିଲେ ଏବଂ ସେହିପରି ହିନ୍ଦୁ

କାବ୍ୟକାର ଓ ପଣ୍ଡିତମାନେ ଇସଲାମୀ ସଂସ୍କୃତି ଓ ସାହିତ୍ୟିକ ପରଂପରା ସମ୍ବନ୍ଧରେ ଗବେଷଣା କରିବା ସଙ୍ଗେ ସଙ୍ଗେ ଉର୍ଦ୍ଦୁ ଭାଷାରେ ଅନେକ ଗ୍ରନ୍ଥ ରଚନା କରିଥିଲେ । ଆଲୋଚ୍ୟଯୁଗରେ ବହୁ ପାର୍ଶୀ ଓ ଆରବୀ ଗ୍ରନ୍ଥ ହିନ୍ଦୀରେ ଏବଂ ବହୁ ହିନ୍ଦୀ ଗ୍ରନ୍ଥ ପାର୍ଶୀ ଓ ଉର୍ଦ୍ଦୁ ଭାଷାରେ ଅନୁବାଦିତ ହୋଇଥିଲା । ପ୍ରକୃତରେ କହିବାକୁ ଗଲେ ଉର୍ଦ୍ଦୁ ଭାଷାର ଜନ୍ମ ଏହି ଯୁଗର ଏକ ଶ୍ରେଷ୍ଠ ଐତିହାସିକ ଅବଦାନ ।

ତୁର୍କୀ ଭାଷାରେ 'ଉର୍ଦ୍ଦୁ' ଶବ୍ଦର ଅର୍ଥ ହେଉଛି ସୈନ୍ୟ ଛାଉଣୀ । ଭାରତରେ ମୁସଲମାନମାନଙ୍କ ଆଧିପତ୍ୟ ବିସ୍ତାର କାଳରେ ଭାରତୀୟଙ୍କ ସମେତ ବିଭିନ୍ନ ଜାତି ଓ ଦେଶର ସୈନ୍ୟମାନଙ୍କ ମଧ୍ୟରେ ଭାବର ଆଦାନ-ପ୍ରଦାନ ନିମନ୍ତେ ଏକ ସମ୍ମିଶ୍ରିତ ଓ ସର୍ବଜନବୋଧ୍ୟ ଭାଷାର ଆବଶ୍ୟକତା ଉପଲବ୍ଧ ହୋଇଥିଲା । ଏହାର ପରିଣାମରେ ହିଁ ଆରବୀ, ପାର୍ଶୀ, ତୁର୍କୀ ଓ ସଂସ୍କୃତାଦି ଭାରତୀୟ ଭାଷାର ସମ୍ମିଶ୍ରଣରେ ଉର୍ଦ୍ଦୁ ଭାଷାର ଉତ୍ପତ୍ତି ଏବଂ ଏହା ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଭାଷାଗତ ସମନ୍ୱୟର ଏକ ଜ୍ୱଳନ୍ତ ନିଦର୍ଶନ ।

ଏହି ଯୁଗରେ ପାର୍ଶୀ, ଉର୍ଦ୍ଦୁ ଓ ସଂସ୍କୃତରେ ବହୁ କବି, ପଣ୍ଡିତ ଓ ଲେଖକ ଉଚ୍ଚକୋଟୀର ସାହିତ୍ୟମାନ ସୃଷ୍ଟି କରିଥିଲେ । ଭାରତୀୟ ଇତିହାସର ଏହି ସମୟରେ ବହୁ ମୂଲ୍ୟବାନ ସଂସ୍କୃତ, କାବ୍ୟ ଓ ନାଟକ ପ୍ରଣୀତ ହୋଇ-ଅଛି । ତନ୍ମଧ୍ୟରୁ ଖ୍ରୀଷ୍ଟୀୟ ୧୨ଶ ଶତାବ୍ଦୀରେ ପ୍ରଣୀତ ଉତ୍କଳୀୟ କବି ଜୟଦେବଙ୍କର 'ଗୀତ ଗୋବିନ୍ଦ', ଖ୍ରୀ ୧୩୦୦ରେ ରଚିତ ବିଦ୍ୟାନାଥଙ୍କର 'ପ୍ରତାପରୁଦ୍ର କଲ୍ୟାଣ', କେରଳ ଯୁବରାଜ କବି ବର୍ମଣଙ୍କର 'ପ୍ରଦ୍ୟୁମ୍ନ ଅଭ୍ୟୁଦୟ', ଖ୍ରୀ ୧୪୦୦ରେ ରଚିତ ବାମନ ଭଟ୍ଟଙ୍କର 'ପାର୍ବତୀ ପରିଣୟ', ଗଙ୍ଗାଧର ଦାସଙ୍କର 'ପ୍ରତାପ ବିଳାସ' ଏବଂ ଖ୍ରୀ ୧୫୩୦ରୁ ୧୫୩୨ ମଧ୍ୟରେ ରଚିତ ରୂପ ଗୋସ୍ୱାମୀଙ୍କର 'ବିଦଗ୍ଧ ମାଧବ' ଓ 'ଲଳିତ ମାଧବ' ପ୍ରଧାନ । ୧୪ଶ ଶତାବ୍ଦୀର ପ୍ରାରମ୍ଭରେ ପ୍ରଣୀତ ପଣ୍ଡିତ ପାର୍ଥସାରଥି ମିଶ୍ରଙ୍କ 'ଶାସ୍ତ୍ର ଦୀପିକା' କର୍ମ ମୀମାଂଶା ସମ୍ବନ୍ଧରେ ଏକ ଅଦ୍ୱିତୀୟ ଗ୍ରନ୍ଥ । ଏହାବ୍ୟତୀତ ବଙ୍ଗର ରଘୁନନ୍ଦନ, ମିଥିଳାର ପଦ୍ମନାଭ ଦତ୍ତ, ବିହାରର ବିଦ୍ୟାପତି ଉପାଧ୍ୟାୟ ଓ ବାଚସ୍ପତିଙ୍କ ପ୍ରୟାସରେ ସ୍ମୃତି ଓ ବୈୟାକରଣ ଶାସ୍ତ୍ର ସମ୍ବନ୍ଧରେ ଅନେକ



ମଗର ଅଲଙ୍କାର

କୋଣାର୍କର ଜୀବନ୍ତ କଳା [ପାର୍ଶ୍ୱ ପୃ. ୧୫୬]



ହୁମାୟୁନଙ୍କ
କବରସୌଧ



କୁତବ ମୀନାର



ତାଜମହଲ

[ପାର୍ଶ୍ୱ ପୃ. ୧୫୩]

ଗ୍ରନ୍ଥ ରଚିତ ହୋଇଥିଲା । ଅମିର ଖୁସ୍ରୁ * ଥିଲେ ୧୪ଶ ଶତାବ୍ଦୀଭାରତର ଜଣେ ଶ୍ରେଷ୍ଠ କବି । ସେ ପାର୍ଶୀ ଭାଷାରେ ଅନେକଶତ ଗୋଟି ଗ୍ରନ୍ଥ ପ୍ରଣୟନ କରିଥିବା ଜଣାଯାଏ ।

ଏତଦ୍ବ୍ୟତୀତ ତଦାନୀନ୍ତନ ପାର୍ଶୀ ଓ ଉର୍ଦ୍ଦୁ ସାହିତ୍ୟିକମାନଙ୍କ ମଧ୍ୟରେ ଶେଖ୍ ନାଜମୁଦ୍ଦିନ ହସାନ୍, ନାଜମୁଦ୍ଦିନ ଔଲିଆ, ମୌଲାନା ମୁସ୍ତାନୁଦ୍ଦିନ ଉମ୍ରାଣୀ, କାଜି ଅବଦୁଲ୍, ମୁକ୍ତାଦର ଶାହଣୀ, ମୌଲାନା ଖ୍ୱାଜଗୀ, ଅହମ୍ମଦ ଥାନେଶ୍ୱରୀ ଏବଂ ସ୍ୱୟଂ ସୁଲତାନ ଫିରୋଜ ଶାହ ଓ ସୁଲତାନ ସିକନ୍ଦର ଲୋଧୀଙ୍କ ନାମ ଉଲ୍ଲେଖଯୋଗ୍ୟ । ସଂସ୍କୃତ, ପାର୍ଶୀ ଓ ଉର୍ଦ୍ଦୁ ବ୍ୟତୀତ ସେତେବେଳେ ବଙ୍ଗଳା, ଓଡ଼ିଆ, ପଞ୍ଜାବୀ, ଗୁରୁମୁଖୀ, ବ୍ରଜ ପ୍ରଭୃତି ଆଞ୍ଚଳିକ ଭାଷାର ମଧ୍ୟ ବିକାଶ ଘଟିଥିଲା । ଚଣ୍ଡିଦାସ ଥିଲେ ୧୫ଶ ଶତାବ୍ଦୀ ଭାରତର ଶ୍ରେଷ୍ଠ ବଙ୍ଗଳା କବି ଏବଂ ଓଡ଼ିଶାରେ ଜଗନ୍ନାଥ, ବଳରାମାଦି 'ପଞ୍ଚସଖା'ଙ୍କର ଆବିର୍ଭାବ ଘଟିଥିଲା ।

## କଳା ଓ ସ୍ଥାପତ୍ୟ

କେବଳ ଭାଷା ଓ ସାହିତ୍ୟ କାହିଁକି, କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ମଧ୍ୟ ତତ୍କାଳୀନ ସାଂସ୍କୃତିକ ସମନ୍ୱୟର ଛାପ ପଡ଼ିଥିଲା । ବିଶିଷ୍ଟ ଐତିହାସିକ ସାର୍ ଜନ୍ ମାର୍ଶାଲଙ୍କ ଭାଷାରେ "ଭାରତ-ଇସଲାମୀ କଳା କେବଳ ଆଞ୍ଚଳିକ ଇସଲାମୀ କଳାର ବିଭିନ୍ନତା ମଧ୍ୟରେ ଆବଦ୍ଧ ନଥିଲା କିମ୍ବା ତାହା ହିନ୍ଦୁ କଳାର ଏକ ପରିବର୍ତ୍ତିତ ରୂପ ମାତ୍ର ନଥିଲା । ସ୍ଥୂଳତଃ ପ୍ରକାଶ କଲେ, ତାହାର ସ୍ୱାତନ୍ତ୍ର୍ୟ ଥିଲା ଉଭୟ ସୂତ୍ରର ଆଧାର ।" ଦିଲ୍ଲୀସ୍ଥ ସ୍ଥାପତ୍ୟ କଳାରେ ଇସଲାମୀ ପ୍ରଭାବ ବିଶେଷ ମାତ୍ରାରେ ପ୍ରତିଷ୍ଠିତ ହେବାର କାରଣ ସେଠାରେ ମୁସଲମାନମାନେ ସଂଖ୍ୟାଧିକ ଥିଲେ । ନଚେତ୍ ଜୋନପୁର, ବଙ୍ଗ ଓ ଗୁଜରାଟ ଅଞ୍ଚଳରେ

---

* ଅମିର ଖୁସ୍ରୁ ବଲବନ୍ଙ୍କ ସମୟରୁ ସୁଖ୍ୟାତି ଅର୍ଜନ କରିଥିଲେ । ଜଲାଲୁଦ୍ଦିନ ଖିଲଜୀଙ୍କ ରାଜତ୍ୱ କାଳରେ ସେ ଗ୍ରନ୍ଥାଗାରାଧ୍ୟକ୍ଷରୂପେ ନିଯୁକ୍ତ ହୋଇଥିଲେ ଏବଂ ପରେ ରାଜକବିରୂପେ ଆଲାଉଦ୍ଦିନଙ୍କ ଦରବାର ମଣ୍ଡନ କରିଥିଲେ । ଶେଷଜୀବନରେ ସେ ଯୁବରାଜ ମହମ୍ମଦଙ୍କର ଶିକ୍ଷାଗୁରୁ ନିଯୁକ୍ତ ହୋଇ ସୁଲତାନ୍ ଗିୟାସୁଦ୍ଦିନ ତୋଗଲକଙ୍କର ସାହାଯ୍ୟ ଓ ସହାନୁଭୂତି ପାଇଥିଲେ ।

ଶିଳ୍ପ ଓ କାରୁକାର୍ଯ୍ୟରେ ହିନ୍ଦୁ ସଂସ୍କୃତିର ପ୍ରଭାବ ସ୍ପଷ୍ଟ ଅନୁମେୟ । ସେତେବେଳେ ମୁସଲମାନ ସ୍ଥାପତ୍ୟ ଶିଳ୍ପୀଙ୍କ ସଂଖ୍ୟାଲଘିଷ୍ଠତା ଯୋଗୁଁ ମୁସଲମାନ ଶାସକମାନେ ମସଜିଦ୍ ବା ଅଟ୍ଟାଳିକା ନିର୍ମାଣ କାର୍ଯ୍ୟରେ ଉଭୟ ହିନ୍ଦୁ ଓ ମୁସଲମାନ ଶିଳ୍ପୀମାନଙ୍କୁ ନିଯୁକ୍ତ କରୁଥିଲେ । ତେଣୁ ଉଭୟ ସଂପ୍ରଦାୟର ଶିଳ୍ପୀମାନଙ୍କ ଉପରେ ଉଭୟ କଳାରୀତିର ପ୍ରଭାବ ପଡ଼ିଥିଲା । ପୁଣି ଉଭୟ ପ୍ରକାର କଳାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଅଳଙ୍କରଣ ସଜ୍ଜା ଓ ଶୋଭାବର୍ଦ୍ଧନ । ଏଥିଯୋଗୁଁ ତତ୍କାଳୀନ ହିନ୍ଦୁ ମନ୍ଦିର ଓ ପ୍ରାସାଦମାନଙ୍କରେ କେତେକ ଇସଲାମୀ କଳାର ନମୁନା ଦେଖିବାକୁ ମିଳେ ଏବଂ ମସଜିଦ୍, ମୀନାର୍ ଓ କବରପୀଠଗୁଡ଼ିକରେ ହିନ୍ଦୁ ସ୍ଥାପତ୍ୟରୀତିର ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ ।

ଏହି ଯୁଗର କଳାକୃତି ମଧ୍ୟରେ ଦିଲ୍ଲୀର କୁତବ୍‌ମୀନାର୍ (୧) ଓ ଆଜମିର୍‌ର ମସଜିଦ୍ କୁତବୁଦ୍ଦିନ ଓ ଇଲତୁତ୍‌ମିସ୍‌ଙ୍କର ଅମର କୀର୍ତ୍ତି । ଏହା ବ୍ୟତୀତ, ଆଲାଉଦ୍ଦିନ ଖିଲଜୀଙ୍କ ସମୟରେ ଗଢ଼ି ଉଠିଥିବା ଦରଘାର ଜମାୟତ ଖାଁ ମସଜିଦ୍ ଓ କୁତବମୀନାର୍‌ଠାରେ ନିର୍ମିତ 'ଆଲ୍ଲାଇ ଦରବାଜା' ଆଲୋଚ୍ୟ ଯୁଗର ଶୈଳ୍ପିକ ଉତ୍କର୍ଷର ଅନ୍ୟତମ ନିଦର୍ଶନ । ତଦାମାନ୍ତନ ସ୍ଥାପତ୍ୟ ଶିଳ୍ପର ଅନ୍ୟାନ୍ୟ ଦୃଷ୍ଟାନ୍ତ ମଧ୍ୟରେ ଦିଲ୍ଲୀସ୍ଥ ଫିରୋଜ ଶାହଙ୍କ କବର, ବିଜାପୁରର ମହମ୍ମଦଙ୍କ କବର, ଦୌଲତାବାଦର ଚାନ୍ଦମୀନାର (୨), ପାଣ୍ଡୁଆ (୩), ଗୁଲବର୍ଗ (୪) ଓ ଜୋନପୁରର ମସଜିଦ୍‌ମାନ ପ୍ରଧାନ । ସେହି ସମୟରେ ରାଜପୁତନା, ଓଡିଶା ଓ ବିଜୟନଗର ପ୍ରଭୃତି ସ୍ଥାନରେ ବହୁ ହିନ୍ଦୁ ମନ୍ଦିର

---

(୧) ୧୬୦ ହାତ ଉଚ୍ଚତାବିଶିଷ୍ଟ ଏହି ମୀନାର୍‌ର କାର୍ଯ୍ୟ କୁତବୁଦ୍ଦିନଙ୍କ ମୃତ୍ୟୁର କୋଡ଼ିଏ ବର୍ଷ ପରେ ୧୨୩୦ ରେ ଶେଷ ହୋଇଥିଲା ।

(୨) ୧୪୩୫ ରେ ନିର୍ମିତ ହୋଇଥିଲା ।

(୩) ପାଣ୍ଡୁଆର ୫୦୦ ଗମ୍ବୁଜବିଶିଷ୍ଟ ମସଜିଦ୍ ୧୩୬୮ ରେ ନିର୍ମିତ ହୋଇଥିଲା ।

(୪) ୨୬୦ଟି ସ୍ତମ୍ଭ ଓ ୧୫ଟି ଗମ୍ବୁଜବିଶିଷ୍ଟ ଗୁଲବର୍ଗର ଜାମି ମସ୍‌ଜିଦ୍ ୧୪୧୨ରୁ ୧୪୪୧ ମଧ୍ୟରେ ନିର୍ମିତ ହୋଇଥିଲା ।

ନିର୍ମିତ ହୋଇଥିଲା । ତନ୍ମଧ୍ୟରୁ ଓଡ଼ିଶାର ଜଗନ୍ନାଥ ମନ୍ଦିର (୫) ଓ କୋଣାର୍କ ମନ୍ଦିର (୬) ଅନ୍ୟତମ ।

## ଧର୍ମ ଓ ସଂସ୍କୃତି

ଭାରତରେ ମୁସଲମାନମାନଙ୍କର ଆଧିପତ୍ୟ ବିସ୍ତାର ସଙ୍ଗେ ସଙ୍ଗେ ଇସଲାମ ଧର୍ମର ମଧ୍ୟ ପ୍ରଭାବ ବିସ୍ତାର ଘଟିଥିଲା । କିନ୍ତୁ ଇସଲାମ ଧର୍ମାବଲମ୍ବୀମାନଙ୍କର ପ୍ରକୃତି, ଗୁଣ ଓ ଆଚରଣ ହିନ୍ଦୁମାନଙ୍କଠାରୁ ଯଥେଷ୍ଟ ଭିନ୍ନ ଥିବାରୁ ତାହା ହିନ୍ଦୁମାନଙ୍କଦ୍ୱାରା ଏକାନ୍ତ ଭାବେ ଅନୁସୃତ ହୋଇ ନ ଥିଲେ ମଧ୍ୟ ହିନ୍ଦୁଧର୍ମ ଅତୀତରେ ଯେଉଁଭଳି ସମଗ୍ର ଦେଶରେ ଅଖଣ୍ଡ ଆଧିପତ୍ୟ ବଜାୟ ରଖିଥିଲା, ତାହା ଇସଲାମ ଧର୍ମର ପ୍ରଭାବରେ ଆଉ ଅକ୍ଷୁଣ୍ଣ ରହି ନଥିଲା । ବିଶିଷ୍ଟ ସମାଲୋଚକ ଅଧ୍ୟାପକ ଶର୍ମାଙ୍କ ଭାଷାରେ—

"......from the thirteenth century onwards the life of India flows in two distinct currents, which run side by side, and touch each other at a few points, but donot unite to form a single stream." ✳

ଅର୍ଥାତ୍, ତ୍ରୟୋଦଶ ଶତାବ୍ଦୀଠାରୁ ଭାରତୀୟ ଜୀବନ ଦୁଇଟି ସ୍ରୋତରେ ପ୍ରବାହିତ ହେଉଛି । ଉଭୟ ଧାରା ପାର୍ଶ୍ୱବର୍ତ୍ତୀ ହୋଇ ଧାବମାନ ହେଉଛନ୍ତି; କେତେବେଳେ କେଉଁବିନ୍ଦୁରେ ପରସ୍ପର ପରସ୍ପରଙ୍କୁ ସ୍ପର୍ଶ କରୁଛନ୍ତି, କିନ୍ତୁ ଏକ ଅବିଭକ୍ତ ପ୍ରବାହ ସୃଷ୍ଟି କରିବା ପାଇଁ ଏକୀଭୂତ ହେଉ ନାହାନ୍ତି ।

ଅବଶ୍ୟ ସେହି ସମୟରେ ହିନ୍ଦୁ ଓ ମୁସଲମାନ ଉଭୟ ସଂପ୍ରଦାୟର କେତେକ ମହାପୁରୁଷ 'ଭକ୍ତିବାଦ'ର ପ୍ରସାର ଓ ପ୍ରଚାର କରି ଧର୍ମଗତ ସାମ୍ୟ

---

(୫) ଚୋଳଗଙ୍ଗଙ୍କ ରାଜତ୍ୱ କାଳ (୧୦୭୭-୧୧୪୮)ରେ ପୁରୀର ଜଗନ୍ନାଥ ମନ୍ଦିର ନିର୍ମିତ ହୋଇଥିଲା ।

(୬) ନରସିଂହଦେବ (୧ମ)ଙ୍କ ରାଜତ୍ୱ କାଳ (୧୨୩୮-୬୪)ରେ ୧୨୦୦ ଶିଳ୍ପୀ ଦୀର୍ଘ ୧୬ ବର୍ଷ ପରିଶ୍ରମକରି କୋଣାର୍କ ମନ୍ଦିର ନିର୍ମାଣ କରିଥିଲେ । ଏଥିପାଇଁ ୪୦ କୋଟି ଟଙ୍କା ବ୍ୟୟ ହୋଇଥିବା ଜଣାଯାଏ ।

✳ Prof. D.S. Sharmaଙ୍କ ପ୍ରଣୀତ "Hinduism Through The Ages" ପୁସ୍ତକର ପୃ. ୪୧ ଦ୍ରଷ୍ଟବ୍ୟ ।

ଓ ଏକେଶ୍ୱର ଆଦର୍ଶର ମହତ୍ତ୍ୱ ବାଣୀ ଶୁଣାଇଥିଲେ । ଏମାନଙ୍କର ମଧ୍ୟରେ ରାମାନନ୍ଦ, ଚୈତନ୍ୟ, କବୀର, ନାନକ, ବଲ୍ଲଭାଚାର୍ଯ୍ୟ ଓ ଜ୍ଞାନେଶ୍ୱରଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଦ୍ୱିତୀୟ ସହସ୍ରାବ୍ଦୀର ଆରମ୍ଭ ବେଳକୁ ଦକ୍ଷିଣ ଭାରତରେ ଚାରୋଟି ବିଶିଷ୍ଟ ଧର୍ମ ମତବାଦ ଅଭ୍ୟୁତ୍ଥିତ ହୋଇଥିଲା, ଯଥା—ରାମାନୁଜଙ୍କର ବିଶିଷ୍ଟ ଦ୍ୱୈତ ପ୍ରଥା, ମାଧ୍ୱଙ୍କର ଦ୍ୱୈତବାଦ, ମେକନ୍ଦରଙ୍କର ଶୈବ ସିଦ୍ଧାନ୍ତ ଓ ବାସବଙ୍କର ବୀର ଶୈବ ପ୍ରଥା । ରାମାନୁଜ ବ୍ରାହ୍ମ ପରଂପରାକୁ ସୁରକ୍ଷିତ ରଖି ଭଗବାନ ଓ ଆତ୍ମା ଏକ ବୋଲି ପ୍ରଚାର କରିଥିଲେ । ମାଧ୍ୱ, ରାମାନୁଜ ଓ ଶଙ୍କରଙ୍କ ମତଠାରୁ ଦୂରେଇ ଯାଇ ଈଶ୍ୱର, ଆତ୍ମା ଓ ସୃଷ୍ଟି ଭିନ୍ନ ବୋଲି ମତ ବ୍ୟକ୍ତ କଲେ । ମେକନ୍ଦରଙ୍କ ଶୈବ ସିଦ୍ଧାନ୍ତ ଶିବଙ୍କୁ ସର୍ବଶକ୍ତିମାନରୂପେ ଚିତ୍ରଣ କରିଥିଲା । ବାସବଙ୍କର ବୀର ଶୈବ ପ୍ରଥାରେ କେବଳ ଶିବ ତଥା ଲିଙ୍ଗର ଆରାଧନା ଉପରେ ପ୍ରାଧାନ୍ୟ ଆରୋପ କରି ଯାଇଥିଲା । ତେଣୁ ବୀରଶୈବ ପ୍ରଥାରେ ଦୀକ୍ଷିତ ଭକ୍ତମାନଙ୍କୁ 'ଲିଙ୍ଗାୟତ' ବୋଲି କୁହାଯାଉଥିଲା । ବେଦାନ୍ତଦେଶିକ ଏହି ସମୟର ଜଣେ ବିଶିଷ୍ଟ ପଣ୍ଡିତ, କବି, ନାଟ୍ୟକାର ଓ ଦାର୍ଶନିକ । ସେ ବିଶିଷ୍ଟ ଦ୍ୱୈତବାଦର ସମର୍ଥନ କରି ସଂସ୍କୃତ ଓ ତାମିଲ ଭାଷାରେ ଶତାଧିକ ଗ୍ରନ୍ଥ ପ୍ରଣୟନ କରିଥିଲେ ।

ଦାକ୍ଷିଣାତ୍ୟରେ ଅଭ୍ୟୁତ୍ଥିତ ହୋଇଥିବା ଭକ୍ତିବାଦର ଦୁଇଟି ଶାଖା ଶିବବାଦ ଓ ବିଷ୍ଣୁବାଦ ମଧ୍ୟରୁ ଶେଷୋକ୍ତ ଶାଖା ଉତ୍ତରାଞ୍ଚଳକୁ ବ୍ୟାପି ଯାଇଥିଲା ଏବଂ ତାହା ପୁଣି ଦୁଇ ଗୋଷ୍ଠୀରେ ବିଭକ୍ତ ହୋଇଥିଲା, ଯଥା— ରାମପୂଜକ ଓ କୃଷ୍ଣୋପାସକ । ରାମାନନ୍ଦ ଥିଲେ ବିଶିଷ୍ଟ ରାମୋପାସକ । ସେ ମୁସଲମାନମାନଙ୍କୁ ମଧ୍ୟ ଶିଷ୍ୟରୂପେ ଗ୍ରହଣ କରୁଥିଲେ । ତାଙ୍କର ବାରଜଣ ପ୍ରଧାନ ଶିଷ୍ୟଙ୍କ ମଧ୍ୟରେ ଜଣେ ଚମାର, ଜଣେ ନାପିତ, ଜଣେ ମୁସଲମାନ ତନ୍ତୀ ଓ ଦୁଇଜଣ ନାରୀ ରହିଥିଲେ । କବୀର (୧୪୪୦-୧୫୧୮) ଥିଲେ ରାମାନନ୍ଦଙ୍କର ପ୍ରଧାନ ଶିଷ୍ୟ । ସେ କର୍ମ, ସଂସାର, ମାୟା, ଲୀଳା, ମୋକ୍ଷ, ବୈରାଗ୍ୟ, ସନ୍ନ୍ୟାସ ଆଦି ବ୍ରାହ୍ମଧର୍ମୀୟ ନୀତିର ଉପାସକ ଥିଲେ ମଧ୍ୟ ମୂର୍ତ୍ତିପୂଜାର ବିରୋଧ କରିଥିଲେ ଏବଂ ଏକେଶ୍ୱର ବାଦର ଜୟଗାନ କରି ହିନ୍ଦୁ ଓ ଇସଲାମ ଧର୍ମମଧ୍ୟରେ ଏକତା ପ୍ରତିଷ୍ଠା ନିମନ୍ତେ ଉଦ୍ୟମ କରିଥିଲେ । ତାଙ୍କର ଜୀବିତକାଳରେ କବୀର ଉଭୟ ହିନ୍ଦୁ ଓ ମୁସଲମାନଙ୍କଦ୍ୱାରା

ବିଧର୍ମୀରୂପେ ନିନ୍ଦିତ ହୋଇଥିଲେ ସତ, କିନ୍ତୁ ତାଙ୍କର ମୃତ୍ୟୁପରେ ସେ ଧର୍ମଗୁରୁରୂପେ ପୂଜିତ ହୋଇଥିଲେ । ତୁଳସୀ ଦାସ (୧୫୩୨-୧୬୨୩) ମଧ୍ୟ ରାମାନନ୍ଦଙ୍କ ଆଦର୍ଶରେ ପ୍ରଭାବିତ ହୋଇ ବିଖ୍ୟାତ 'ରାମଚରିତମାନସ' ଗ୍ରନ୍ଥ ପ୍ରଣୟନ କରିଥିଲେ ।

କୃଷ୍ଣୋପାସକମାନେ ମଧ୍ୟ ଦୁଇ ଗୋଷ୍ଠୀରେ ବିଭକ୍ତ ହୋଇଥିଲେ ବୋଲି ଜଣାଯାଏ । ଗୋଟିଏ ଗୋଷ୍ଠୀ କୃଷ୍ଣ ଓ ରୁକ୍ମଣୀଙ୍କୁ ପୂଜା କଲାବେଳେ ଅନ୍ୟ ଗୋଷ୍ଠୀ ରାଧାକୃଷ୍ଣଙ୍କର ଆରାଧନା କରୁଥିଲା । ଶାସ୍ତ୍ରକାରମାନଙ୍କଦ୍ୱାରା ପ୍ରଥମ ଭକ୍ତିଭାବ 'କାନ୍ତଭାବ' ଓ ଦ୍ୱିତୀୟ ଭାବ 'ମଧୁର ଭାବ' ନାମରେ ଅଭିହିତ । ଜ୍ଞାନେଶ୍ୱର ଥିଲେ ପ୍ରଥମ ଗୋଷ୍ଠୀର ଜଣେ ପ୍ରଧାନ ଉପାସକ । ତାଙ୍କ ପରେ ନାମଦେବ (୧୪ଶ ଶତାବ୍ଦୀ), ଏକନାଥ ଓ ତୁକାରାମ (୧୬ଶ ଶତାବ୍ଦୀ) ସେହି ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ନିମ୍ବାର୍କ (୧୨ଶ ଶତାବ୍ଦୀ) ଥିଲେ ରାଧାକୃଷ୍ଣ ଆରାଧନାର ଆବିଷ୍କର୍ତ୍ତା । ସେହି ସମୟରେ କବି ଜୟଦେବଙ୍କ ରଚିତ 'ଗୀତ ଗୋବିନ୍ଦ'ରେ ମଧ୍ୟ ସେହି ଭାବ ପରିପ୍ରକାଶ ପାଇଥିଲା । ୧୪ଶ ଓ ୧୫ଶ ଶତାବ୍ଦୀର ବୈଷ୍ଣବ କବିମାନଙ୍କ ମଧ୍ୟରେ ବଙ୍ଗର ଚଣ୍ଡୀଦାସ, ବିହାରର ବିଦ୍ୟାପତି, ରାଜପୁତାନାର ମୀରାବାଇ, ଗୁଜରାଟର ନରସିଂହ ମେହତାଙ୍କ ନାମ ଉଲ୍ଲେଖଯୋଗ୍ୟ । ତେବେ ଆଲୋଚ୍ୟ ଯୁଗର ବୈଷ୍ଣବ ଭକ୍ତ ତଥା ରାଧାକୃଷ୍ଣଙ୍କ ରାଗାନୁଗାପ୍ରେମର ଉପାସକମାନଙ୍କ ମଧ୍ୟରେ ବାରାଣାସୀର ବଲ୍ଲଭାଚାର୍ଯ୍ୟ (୧୪୭୯-୧୫୩୧) ଓ ନଦିଆ (ବଙ୍ଗ)ର ଶ୍ରୀ ଚୈତନ୍ୟ (୧୪୮୫-୧୫୩୩) ଇତିହାସ-ପ୍ରଖ୍ୟାତ ।

ବଲ୍ଲଭାଚାର୍ଯ୍ୟ ଥିଲେ ଶୁଦ୍ଧ ଅଦ୍ୱୈତବାଦର ପ୍ରଚାରକ । ସେ ଶଙ୍କରଙ୍କ ଅଦ୍ୱୈତବାଦକୁ ଅଶୁଦ୍ଧ ଅଦ୍ୱୈତବାଦ ବୋଲି ସମାଲୋଚନା କରିଥିଲେ, କାରଣ ଶଙ୍କରାଚାର୍ଯ୍ୟଙ୍କ ମାୟାବାଦ ଭକ୍ତି ଉପରେ ପ୍ରାଧାନ୍ୟ ନ ଦେଇ ଜ୍ଞାନ ଉପରେ ଗୁରୁତ୍ୱ ଆରୋପ କରିଥିଲା । ବଲ୍ଲଭାଚାର୍ଯ୍ୟ ଯୁବକ ସମୟରୁ ତାଙ୍କର ପାଣ୍ଡିତ୍ୟ ପ୍ରଦର୍ଶନ କରିଥିଲେ । ଏପରିକି ବିଜୟନଗରର କୃଷ୍ଣଦେବ ରାୟଙ୍କ ଦରବାରରେ ତାତ୍ତ୍ୱିକ ଆଲୋଚନା ବେଳେ ସେ ବହୁ ଶୈବ ପଣ୍ଡିତଙ୍କୁ ପରାଭୂତ କରିଥିଲେ । ଚୈତନ୍ୟଙ୍କଠାରେ ମଧ୍ୟ ଖୁବ୍ କମ ବୟସରେ ଅଗାଧ ବିଦ୍ୱତ୍ତାର ନିଦର୍ଶନ ମିଳିଥିଲା । ସେ ପ୍ରଥମେ ମାଧ୍ୱମତାବଲମ୍ବୀମାନଙ୍କର ସମ୍ପର୍କରେ ଆସିଥିଲେ, କିନ୍ତୁ ପରେ ବିଷ୍ଣୁସ୍ୱାମୀ, ଚଣ୍ଡୀଦାସ ଓ ବିଦ୍ୟାପତି

ପ୍ରମୁଖ ବୈଷ୍ଣବ କବିଙ୍କ ସାନ୍ନିଧ୍ୟଦ୍ୱାରା ପ୍ରଭାବିତ ହୋଇ ରାଧାକୃଷ୍ଣଙ୍କ ପ୍ରେମ ଲୀଳାରେ ଆତ୍ମବିସ୍ମୃତ ହୋଇଥିଲେ । ସେ ଚବିଶ ବର୍ଷ ବୟସରେ ସନ୍ନ୍ୟାସୀ ହୋଇ ଦକ୍ଷିଣ ଓ ଉତ୍ତର ଭାରତର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ଶେଷରେ ପୁରୀ ଜଗନ୍ନାଥ ମନ୍ଦିର ନିକଟରେ ଆସ୍ଥାନ ଜମାଇଥିଲେ ଏବଂ ନୃତ୍ୟ, ଗାନ, ଭଜନ ଓ ସଂକୀର୍ତ୍ତନଦ୍ୱାରା ପ୍ରଚାର କରିଥିଲେ ଯେ କୃଷ୍ଣ ପ୍ରେମହିଁ ସମସ୍ତ ଧର୍ମର ମୂଳମନ୍ତ୍ର । ସେ ପୁରୀଠାରେ ଦୀର୍ଘ ୧୮ ବର୍ଷ ଧର୍ମ ପ୍ରଚାର କରି ଅସଂଖ୍ୟ ଶିଷ୍ୟଙ୍କୁ ଆକୃଷ୍ଟ କରିଥିଲେ ଏବଂ କେତେକ ତାଙ୍କୁ ବିଷ୍ଣୁଙ୍କର ଅବତାର ବୋଲି ବିଶ୍ୱାସ କରୁଥିଲେ । ଚୈତନ୍ୟଙ୍କ ମୃତ୍ୟୁର ପ୍ରାୟ ୫୦ ବର୍ଷ ପରେ କବିରାଜ କୃଷ୍ଣଦାସ ତାଙ୍କର ବିଖ୍ୟାତ ଜୀବନୀ ଗ୍ରନ୍ଥ 'ଚୈତନ୍ୟ ଚରିତାମୃତ' ପ୍ରଣୟନ କରିଥିଲେ । ସୁରଦାସ ଥିଲେ ଚୈତନ୍ୟଙ୍କର ଶ୍ରେଷ୍ଠ ଉତ୍ତରାଧିକାରୀ ଏବଂ ଓଡ଼ିଶାର ଜଗନ୍ନାଥ ଦାସ, ବଳରାମ ଦାସ ପ୍ରମୁଖ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ।

ଏମାନଙ୍କ ବ୍ୟତୀତ ସେହି ଯୁଗରେ ଶିଖଧର୍ମର ପ୍ରତିଷ୍ଠାତା ନାନକ (୧୪୬୯—୧୫୩୮)ଙ୍କର ମଧ୍ୟ ଆବିର୍ଭାବ ଘଟିଥିଲା । ସେ କବୀରଙ୍କ ଭଳି ଏକେଶ୍ୱରବାଦୀ ଥିଲେ ଓ କର୍ମ, ସଂସାର, ମାୟା, ମୋକ୍ଷାଦିରେ ବିଶ୍ୱାସ କରୁଥିଲେ । କିନ୍ତୁ କବୀର ଈଶ୍ୱରଙ୍କୁ 'ରାମ' ନାମରେ ଅଭିହିତ କରିଥିଲେ ଏବଂ ନାନକ ତାଙ୍କୁ 'ହରି' ଆଖ୍ୟା ଦେଇଥିଲେ । ନାନକ ହିନ୍ଦୁ ଓ ଇସଲାମ ଧର୍ମରେ ରହିଥିବା ଅସତ୍ୟ ଓ ଅନ୍ଧବିଶ୍ୱାସକୁ ଦୂର କରି ଉଭୟ ଧର୍ମ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ତ୍ୟାଗ, ସେବା ଓ ଆତ୍ମଶୁଦ୍ଧି ଉପରେ ଗୁରୁତ୍ୱ ଆରୋପ କରି ନୂତନ ଧର୍ମର ପ୍ରଚାର କରିଥିଲେ ।

ସଂକ୍ଷେପରେ ପ୍ରକାଶ କଲେ, ଏହି ଯୁଗର ବିଭିନ୍ନ ଭକ୍ତିବାଦର ପ୍ରଧାନ ଲକ୍ଷଣ ଓ ଆଦର୍ଶ ଥିଲା—(୧) ଏକ ସର୍ବମୟକର୍ତ୍ତାଙ୍କଠାରେ ବିଶ୍ୱାସ, (୨) ଆତ୍ମାରେ ବିଶ୍ୱାସ, (୩) ଭକ୍ତିମାର୍ଗରେ ମୋକ୍ଷପ୍ରାପ୍ତିରେ ବିଶ୍ୱାସ, (୪) କର୍ମ ମାର୍ଗ ଓ ଜ୍ଞାନମାର୍ଗଠାରୁ ଭକ୍ତିମାର୍ଗର ଉତ୍କର୍ଷ ପ୍ରତିପାଦନ, (୫) ଧର୍ମ-ଗୁରୁଙ୍କୁ ସମ୍ମାନ ପ୍ରଦର୍ଶନ, (୬) ନାମ ଭଜନ, (୭) ମନ୍ତ୍ର ବା ଦୀକ୍ଷା ଦାନ, (୮) ସନ୍ନ୍ୟାସ ଗ୍ରହଣ, (୯) ଜାତିଭେଦ ବର୍ଜନ ଓ (୧୦) ମାତୃଭାଷାରେ ଧର୍ମପ୍ରଚାର ।

## ମୁସଲମାନ ଯୁଗର ଦାନ

ସାର୍ ଯଦୁନାଥ ସରକାରଙ୍କ ସୁଚିନ୍ତିତ ମତରେ ଭାରତର ଇତିହାସକୁ ମୁସଲମାନ ଯୁଗର ଦଶଗୋଟି ଅବଦାନ ରହିଅଛି । * ତାହା ହେଉଛି :—

(୧) ବହିର୍ଜଗତ ସହିତ ସଂପର୍କ ପୁନର୍ସ୍ଥାପନ ଏବଂ ଭାରତୀୟ ନୌବାହିନୀ ଓ ନୌବାଣିଜ୍ୟର ପୁନରୁଦ୍ଧାର ।

(୨) ଦେଶରେ ବିଶେଷତଃ ଭାରତର ଉତ୍ତରାଞ୍ଚଳରେ ଶାନ୍ତି ସଂସ୍ଥାପନ ।

(୩) ସମଗ୍ର ଅଞ୍ଚଳରେ ଏକପ୍ରକାର ଶାସନ ପ୍ରଣାଳୀ ପ୍ରବର୍ତ୍ତନଦ୍ୱାରା ସାମାଜିକ ଐକ୍ୟ ପ୍ରତିଷ୍ଠା ।

(୪) ଜାତି ଧର୍ମ ନିର୍ବିଶେଷରେ ସମାଜର ଉଚ୍ଚଶ୍ରେଣୀର ଜନତା ମଧ୍ୟରେ ପରିଧାନ ଓ ଆଚରଣଗତ ସଂହତି ରକ୍ଷା ।

(୫) ସ୍ୱଦେଶୀ ଓ ବିଦେଶୀ କଳାର ସମନ୍ୱୟ, ନୂତନ ଧରଣର ସ୍ଥାପତ୍ୟ ଶିଳ୍ପର ଅଭ୍ୟୁଦୟ ଏବଂ କମ୍ବଳ, ଗାଲିଚ୍ଚ ଓ ମଲମଲ କପଡ଼ା ପ୍ରଭୃତି ସୂକ୍ଷ୍ମ-ଶିଳ୍ପର ବିକାଶ ।

(୬) ଏକ ସାଧାରଣ ଭାଷାରୂପେ ହିନ୍ଦୁସ୍ଥାନୀ ଭାଷାର ବ୍ୟାପକ ବ୍ୟବହାର ।

(୭) ମାତୃଭାଷାରେ ସାହିତ୍ୟର ପ୍ରସାର ।

(୮) ଧାର୍ମିକ କ୍ଷେତ୍ରରେ ଏକେଶ୍ୱରବାଦର ପୁନଃପ୍ରବର୍ତ୍ତନ ।

(୯) ଇତିହାସମୂଳକ ସାହିତ୍ୟର ସୃଷ୍ଟି ।

(୧୦) ସାମରିକ କଳା ତଥା ସାଧାରଣ ସଭ୍ୟତାର ଉନ୍ନତି ସାଧନ ।

କିନ୍ତୁ ଏହା ସତ୍ତ୍ୱେ ଉଚ୍ଚକୋଟୀର ମୌଳିକ ସାହିତ୍ୟର ବିକାଶ ଦୃଷ୍ଟିରୁ ମୁସଲମାନ ଯୁଗ ଥିଲା ଏକ ଅନ୍ଧକାର ଯୁଗ । ଖ୍ରୀ ୧୨୦୦ରୁ ୧୫୫୦ ପର୍ଯ୍ୟନ୍ତ ହିନ୍ଦୁ ପ୍ରତିଭା ସୁପ୍ତ ଓ ଅବଲୁପ୍ତ ଥିଲା । ଆକବର ସମଗ୍ର ଉତ୍ତର ଭାରତରେ ବିଶାଳ ସାମ୍ରାଜ୍ୟ ବିସ୍ତାର କରିବା ପରେ ହିଁ ଶାନ୍ତି ଓ ସୁଶାସନର ଉତ୍ତମ ଫଳ ପ୍ରାପ୍ତ ହେଲା । ଜୀବପନ୍ଥ ସୁରକ୍ଷିତ ହେବାଦ୍ୱାରା ଅର୍ଥନୈତିକ ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଅବସରବିନୋଦନ ଲାଗି ଅବସର ମିଳିଥିଲା ଓ ପ୍ରଚ୍ଛନ୍ନ ପ୍ରତିଭାର ବିକାଶ ନିମିତ୍ତ ଅନୁକୂଳ ବାତାବରଣ ସୃଷ୍ଟି ହୋଇଥିଲା ।

———

* Sir Jadunath Sarkarଙ୍କର "India Through The Ages" ପୁସ୍ତକର ପୃ. ୪୨-୪୩ ଦ୍ରଷ୍ଟବ୍ୟ ।

## ତ୍ରୟୋଦଶ ପର୍ଯ୍ୟାୟ

# ମୋଗଲ ଯୁଗ (କ)

### ମୋଗଲ ସାମ୍ରାଜ୍ୟର କ୍ରମବିସ୍ତାର

ଷୋଡ଼ଶ ଶତାବ୍ଦୀର ଆଦ୍ୟ ଭାଗରେ ଭାରତର ରାଜନୈତିକ ଅବସ୍ଥା ଦୁର୍ବଳ ହୋଇ ପଡ଼ିଥିଲା । ଦିଲ୍ଲୀର ସୁଲତାନ ପରାକ୍ରମଶାଳୀ ହୋଇ ନଥିବା ଯୋଗୁଁ ଦେଶ ସାରା ଛୋଟ ଛୋଟ ରାଜ୍ୟମାନ ମୁଣ୍ଡ ଟେକିଥିଲା ଏବଂ ସେମାନଙ୍କ ମଧ୍ୟରେ ଏକତାର ଅଭାବ ଥିବାରୁ ସାମୟିକ ସଂଘର୍ଷ ଅନିବାର୍ଯ୍ୟ ହୋଇ ଉଠିଥିଲା । ସେହି ପରିସ୍ଥିତିର ସୁଯୋଗ ନେଇ ମୋଗଲମାନେ ଭାରତର ରାଜନୈତିକ କ୍ଷମତା ହାସଲ କରିବା ଉଦ୍ଦେଶ୍ୟରେ କ୍ରମାଗତ ଉଦ୍ୟମ କରିବା ଫଳରେ ଆମ ଦେଶରେ ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇପାରିଥିଲା । ବାସ୍ତବରେ ଦେଖିବାକୁ ଗଲେ, ଭାରତରେ ମୋଗଲ ସାମ୍ରାଜ୍ୟର ବିସ୍ତାର ତିନୋଟି ସ୍ତରରେ ହୋଇଥିଲା; ପ୍ରଥମତଃ, ଆଫଗାନ ଓ ରାଜପୁତମାନଙ୍କ ପରାଜୟ (୧୫୨୬-୩୦); ଦ୍ୱିତୀୟତଃ, ବଙ୍ଗ, ମାଳବ ଓ ଗୁଜରାଟ ବିଜୟ ଲାଗି ହୁମାୟୁନଙ୍କ ବ୍ୟର୍ଥ ଉଦ୍ୟମ ଓ ଶେରଶାହଙ୍କ ଦ୍ୱାରା ବିତାଡ଼ନ (୧୫୩୦-୪୦) ଏବଂ ତୃତୀୟତଃ, ହୁମାୟୁନ ଓ ତାଙ୍କ ପରେ ଆକବରଙ୍କ ଦ୍ୱାରା ମୋଗଲ ସାମ୍ରାଜ୍ୟର ଦୃଢ଼ୀକରଣ (୧୫୪୦-୫୬) । ସୁତରାଂ, ସଂକ୍ଷେପରେ ପ୍ରକାଶ କଲେ, ୧୫୨୬ ଠାରୁ ୧୫୫୬ ପର୍ଯ୍ୟନ୍ତ ଭାରତର ଇତିହାସ ଥିଲା ଆଫଗାନ ଓ ମୋଗଲମାନଙ୍କର କ୍ଷମତା ସଂଘର୍ଷର ଇତିହାସ ।

**ବାବର** (୧୪୮୩-୧୫୩୦)

ଖ୍ରୀ: ୧୪୯୪ରେ ଏଗାର ବର୍ଷ ବୟସରେ ପିତୃ ଅର୍ଜିତ ଫରଗଣା ନାମକ ଏକ କ୍ଷୁଦ୍ର ରାଜ୍ୟର ସୁଲତାନ ହୋଇ ବାବର ଆତ୍ମ ସନ୍ତୋଷ ଲାଭ ନକରି ତୈମୁରଙ୍କ ସାମ୍ରାଜ୍ୟର ଅଧିପତି ହେବା ନିମନ୍ତେ ବଳିଷ୍ଠ ଆଶା ପୋଷଣ କରିଥିଲେ । କିନ୍ତୁ ଆତ୍ମୀୟ ସ୍ୱଜନଙ୍କର ଚକ୍ରାନ୍ତ ଫଳରେ ତାଙ୍କର ସେହି


ମୋଗଲ ଭାରତ
ପାମିର
କାଶ୍ମୀର
କାନ୍ଦାହାର
ଗଜନୀ
ଲାହୋର
ଅମୃତସର
ପାନିପଥ
ବିକାନୀର
ରାଜପୁତାନା
ଦିଲ୍ଲୀ
ଆଗ୍ରା
ଅଉଧ
କନୌଜ
ତିବ୍ବତ
ହିମାଳୟ
ନେପାଳ
ବିହାର
ଆସାମ
ମାରୱାର
ସିନ୍ଧୁ
ମେବାର
ରଣଥମ୍ବୋର
ଆଲ୍ଲାହାବାଦ
ବନାରସ
ମାଳବ
କାଳଞ୍ଜର
ଗୁଜରାଟ
ନର୍ମଦା
ଗଣ୍ଡୱାନା
ବେରାର
ଔରଙ୍ଗାବାଦ
ବମ୍ବେ
ଅହମଦନଗର
ହାଇଦରାବାଦ
ଗୋଲକୁଣ୍ଡା
ଓଡ଼ିଶା
କଟକ
ଢାକା
ବଙ୍ଗ
ଆରବସାଗର
ଗୋଆ
ବଙ୍ଗୋପସାଗର
ଚନ୍ଦ୍ରଗିରି
ମାନ୍ଦ୍ରାଜ
ତାଞ୍ଜୋର
ସିଂହଳ
ଉ
ପ
ପୁ
ଔରଙ୍ଗଜେବଙ୍କ ସାମ୍ରାଜ୍ୟ
ଆକବରଙ୍କ ସାମ୍ରାଜ୍ୟ
ଶିବାଜୀଙ୍କର ସାମ୍ରାଜ୍ୟ
ସ୍କେଲ - 0 100 200 300 400 500 କି.ମି

ଆଶା ଚୁରମାର ହୋଇ ଯାଇଥିଲା । ଏହା ପରେ ୧୪୯୭ ଓ ୧୫୦୧ରେ ତାଙ୍କର ସମରକନ୍ଦ ସହର ଦଖଲ ଉଦ୍ୟମ ବିଫଳ ହୋଇଥିଲା । ଏପରିକି ବର୍ଷକ ଲାଗି ପିତୃ ଅର୍ଜିତ ଫର୍ଗଣା ରାଜ୍ୟ ମଧ୍ୟ ତାଙ୍କର ହସ୍ତଚ୍ୟୁତ ହୋଇଥିଲା ଏବଂ ତାଙ୍କୁ ରାସ୍ତାକଡ଼ର ଫକୀର ଭଳି ବୁଲିବାକୁ ପଡ଼ିଥିଲା । ତଥାପି ବାବରଙ୍କ ମନୋବଳ ଭାଙ୍ଗି ପଡି ନଥିଲା । ସେ ଥିଲେ ତୈମୁରଙ୍କ ବଂଶଧର ଓ ମାତୃକୂଳରୁ ଚେଙ୍ଗିଜ ଖାଁଙ୍କର ସଂପର୍କୀୟ । ତାଙ୍କର ବିଜୟ ଲିପ୍ସା ଥିଲା ପ୍ରବଳ ଓ ପ୍ରଚଣ୍ଡ । ତାହା ବଳରେ ପରିସ୍ଥିତିର ସୁଯୋଗ ନେଇ ସେ ୧୫୦୪ରେ କାବୁଲ ସିଂହାସନ ଆରୋହଣ କରିଥିଲେ ଏବଂ ୧୫୨୪ରେ ଦୌଲତ ଖାଁ ଓ ଆଲମ ଖାଁଙ୍କର ନିମନ୍ତ୍ରଣ ପାଇବା ମାତ୍ରେ ପଞ୍ଜାବରେ ପ୍ରବେଶ କରି ଲାହୋର ଅଧିକାର କରି ନେଇଥିଲେ ।

ଏହାପରେ ୧୫୨୬ ଏପ୍ରିଲ ୨୧ ତାରିଖରେ ପାନିପଥ ଠାରେ ପରାକ୍ରମଶାଳୀ ଆଫଗାନ ସାମ୍ରାଜ୍ୟାଧିପତି ଇବ୍ରାହିମ ଲୋଦୀଙ୍କୁ ପରାସ୍ତ କରି ସେ ଦିଲ୍ଲୀ ଓ ଆଗ୍ରା ସିଂହାସନ ଅଧିକାର କରିଥିଲେ । ଇବ୍ରାହିମ ଓ ବାବରଙ୍କର ଏହି ସଂଗ୍ରାମ ଇତିହାସରେ 'ପ୍ରଥମ ପାନିପଥ ସମର' ନାମରେ ଅଭିହିତ ।

ପ୍ରଥମ ପାନିପଥ ସମରର ପରିଣାମରେ ଭାରତରେ ମୋଗଲ ସାମ୍ରାଜ୍ୟର ଭିତ୍ତି ସ୍ଥାପିତ ହୋଇଥିଲା ସତ, କିନ୍ତୁ ତାହା ମୋଗଲମାନଙ୍କର ଭାରତ ବିଜୟ ନିମିତ୍ତ ଯଥେଷ୍ଟ ନଥିଲା । ସେତେବେଳକୁ ଆହୁରି ଅନେକ ରାଜ୍ୟ ଆଫଗାନ୍ ଶାସନାଧୀନ ଥିଲା ଏବଂ ରାଜପୁତ ବୀର ରାଣାସଙ୍ଗ (ସଂଗ୍ରାମ ସିଂହ) ମେବାରରେ ରାଜତ୍ୱ ବିସ୍ତାର କରିଥିଲେ । ତେଣୁ ବାବର ୧୫୨୭ ମାର୍ଚ୍ଚ ୧୬ ତାରିଖରେ ଖାନୱା * ଠାରେ ରାଣାସଙ୍ଗଙ୍କର ବିରାଟ ସୈନ୍ୟବାହିନୀକୁ ପରାସ୍ତ କରି ଭାରତରେ ରାଜପୁତ ଶକ୍ତିକୁ ଦୁର୍ବଳ କରି ପକାଇଥିଲେ । ଏହା ପରେ ସେ ୧୫୨୯ ମଇ ୬ ତାରିଖରେ ଗୋଗ୍ରାନଦୀ ଉପକୂଳରେ ବଙ୍ଗ ଓ ବିହାରର ସମ୍ମିଳିତ ଆଫଗାନ୍ ଶକ୍ତିକୁ ପରାଜିତ କରି କାବୁଲ ଠାରୁ ଗଔାଳିୟର ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରିଥିଲେ । ବାବର ଥିଲେ ଭାରତର ପ୍ରଥମ ମୋଗଲ 'ବାଦଶାହ' ।

---

* ଆଗ୍ରାର ପଶ୍ଚିମ ଦିଗରେ ସହରର ନିକଟବର୍ତ୍ତୀ ଗୋଟିଏ ଗ୍ରାମ ।

(ପଞ୍ଜାବ)ର ମହବତ୍ ଖାଁଙ୍କ ଅଧୀନରେ ନିଯୁକ୍ତ ହୋଇଥିଲେ । ପରେ ଇବ୍ରାହିମ୍ ଜମାଲ ଖାଁଙ୍କ ପାଖରେ ନିଯୁକ୍ତ ପାଇ ଦିଲ୍ଲୀ ଚାଲିଯାଇଥିଲେ ଏବଂ ହାସାନ୍ ଉମର ଖାଁଙ୍କ ଠାରୁ ଗୋଟିଏ ଜାଗିର ପାଇ ସ୍ୱପୁତ୍ର ଫରିଦ † ଧିହ ସସରାମକୁ ସ୍ଥାନାନ୍ତରିତ ହୋଇଥିଲେ । ଫରିଦ ବିମାତାଙ୍କର ନିର୍ଯ୍ୟାତନା ସହ୍ୟକରି ନପାରି ବାଇଶି ବର୍ଷ ବୟସରେ ଗୃହତ୍ୟାଗ କରି ନିଜ ଭାଗ୍ୟ ଅନ୍ୱେଷଣରେ ଯାଇ ଜୋନପୁରରେ ବିଦ୍ୟାଧ୍ୟୟନ କଲେ ଏବଂ ଅଳ୍ପ ସମୟ ମଧ୍ୟରେ ପାର୍ଶୀ ସାହିତ୍ୟରେ ଅସାଧାରଣ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ଜୋନପୁରର ଶାସକ ଜମାଲଖାଁ ତଥା ହାସାନ୍‌ଙ୍କର ସମର୍ଥକ ପିତାପୁତ୍ରଙ୍କ ମଧ୍ୟରେ ସଦ୍‌ଭାବ ଫେରାଇ ଆଣିବାକୁ ଉଦ୍ୟମ କରି ଫରିଦଙ୍କୁ ସସରାମ ପଠାଇ ଦେଇଥିଲେ ମଧ୍ୟ ଅବସ୍ଥା ଅନୁକୂଳ ହୋଇ ନଥିଲା ଏବଂ ସେ ପୁନର୍ବାର ରାଜ୍ୟତ୍ୟାଗକରି ଆଗ୍ରା ଚାଲି-ଯାଇଥିଲେ ।

ହାସାନ୍‌ଙ୍କ ମୃତ୍ୟୁପରେ ଶେରଶାହ ଜାଗିର୍ ଲାଗି ହକଦାର୍ ହୋଇ-ଥିଲେ ଏବଂ ବିହାରର ରାଜା ବାହରଖାଁ ଲୋହାନୀଙ୍କ ଅଧୀନରେ ଉକିଲ ଓ ଅତାଲିକ୍ (ଘରୋଇ ଶିକ୍ଷକ) ଭାବେ ନିଯୁକ୍ତ ପାଇ ତାଙ୍କର ଅତି ପ୍ରିୟଭାଜନ ହୋଇଥିଲେ । ଏହାପରେ ଏପ୍ରିଲ ୧୫୨୭ ଠାରୁ ଜୁନ ୧୫୨୮ ପର୍ଯ୍ୟନ୍ତ ବାବରଙ୍କ ସୈନ୍ୟବାହିନୀରେ ଯୋଗ ଦେଇଥିଲେ ଏବଂ ମୋଗଲ ସୈନ୍ୟବାହିନୀ ସାହାଯ୍ୟରେ ସସରାମ ଦଖଲ କରିଥିଲେ । ବାହାରଖାଁଙ୍କ ମୃତ୍ୟୁପରେ ଶେରଶାହ ତାଙ୍କର ପୂର୍ବତନ ଶିଷ୍ୟ ନାବାଳକ ଜଲାଲ ଖାଁଙ୍କ ଅଭିଭାବକ ଭାବରେ ନିଯୁକ୍ତ ହୋଇଥିଲେ । ଶେରଶାହ ୧୫୩୦ରେ ଚୁନାର ଦୁର୍ଗ ଅଧିକାର କରିଥିଲେ ଏବଂ ୧୫୩୪ରେ ଲୋହାନୀ ବଂଶୀୟ ବିଦ୍ରୋହୀମାନଙ୍କୁ ଶୋଚନୀୟ ଭାବରେ ଦମନ କରି ବିହାରର ଅଧିକାଂଶ ଅଞ୍ଚଳ ଦଖଲକୁ ଆଣିଥିଲେ । ୧୫୩୭ରେ ସେ ବଙ୍ଗ ଆକ୍ରମଣ କରିଥିଲେ ଏବଂ ତାପରେ ଚୌସାର (୧୫୩୯) ଓ କନୌଜ (୧୫୪୦) ଯୁଦ୍ଧରେ ହୁମାୟୁନଙ୍କ ମୋଗଲ ବାହିନୀକୁ ପରାସ୍ତ କରି

---

† ଶେରଶାହଙ୍କ ବାଲ୍ୟନାମ ଫରିଦ ଖାଁ ଥିଲା । ପରେ ସେ ଏକୁଟିଆ ଶୂନ୍ୟ ହସ୍ତରେ ଗୋଟିଏ ମହାବଳ ବ୍ୟାଘ୍ର ମାରି ଅସୀମ କୃତିତ୍ୱ ପ୍ରଦର୍ଶନ କରିଥିଲେ ବୋଲି ବିହାରର ରାଜା ବାହର ଖାଁ ଲୋହାନୀ ତାଙ୍କୁ 'ଶେରଖାଁ' ଉପାଧିରେ ଭୂଷିତ କରିଥିଲେ । ରାଜ ସିଂହାସନ ଲାଭ କଲା ପରେ ସେ ଶେରଶାହ ନାମରେ ପରିଚିତ ହୋଇଥିଲେ ।

ଦିଲ୍ଲୀ ସିଂହାସନ ଅଧିକାର କରିଥିଲେ । ୧୫୪୧ରେ ସେ ବଙ୍ଗ ବିଦ୍ରୋହର ଅବସାନ ଘଟାଇଥିଲେ ଏବଂ ତା ପରେ ବର୍ଷ ରାଜପୁତମାନଙ୍କୁ ନିର୍ମମ ଭାବେ ଦମନ କରି ମାଳବ (୧୫୪୨) ଓ ମାରୱାଡ଼ (୧୫୪୪) ନିଜ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ କରିଥିଲେ । ବୁନ୍ଦେଲ ଖଣ୍ଡର କାଳଞ୍ଜର ଦୁର୍ଗ ବିଜୟର ଅବ୍ୟବହିତ ପୂର୍ବରୁ ୧୫୪୫ ମଇ ୨୨ ତାରିଖରେ ଏକ ଆକସ୍ମିକ ବାରୁଦ ବିସ୍ଫୋରଣରେ ତାଙ୍କର ପ୍ରାଣହାନି ଘଟିଥିଲା । ଏହିଭଳି ଶେରଶାହ ନବପ୍ରତିଷ୍ଠିତ ମୋଗଲ ଶକ୍ତିକୁ ପରାଭୂତ କରି ଭାରତରେ ଆଫଗାନ୍ ଶାସନର ପୁନଃପ୍ରତିଷ୍ଠା କରିପାରିଥିଲେ ।

ବିଜୟୀ ବୀର ଶେରଶାହ କେବଳ ସାମ୍ରାଜ୍ୟ ବିସ୍ତାର କରି ନ ଥିଲେ, ତାହା ସଙ୍ଗେ ସଙ୍ଗେ ଶାସନ ପରିଚାଳନା କ୍ଷେତ୍ରରେ ନାନା ସଂସ୍କାର ମଧ୍ୟ ପ୍ରବର୍ତ୍ତନ କରିଥିଲେ । ସେ ନିଜ ସାମ୍ରାଜ୍ୟକୁ ୪୭ଟି 'ସରକାର'ରେ ବିଭକ୍ତ କରି ପ୍ରତ୍ୟେକ 'ସରକାର'କୁ ପୁଣି କେତୋଟି 'ପର୍ଗଣା'ରେ ଅନୁବିଭକ୍ତ କରିଥିଲେ । 'ଜାଗିର' ପ୍ରଥା ଉଠାଇ ଦେଇ ସେ କୃଷୀମାନଙ୍କ ଉପରେ ଏକ ତୃତୀୟାଂଶ ଖଜଣା ଧାର୍ଯ୍ୟ କରିଥିଲେ । ସେ ବାଣିଜ୍ୟର ପ୍ରସାର ନିମିତ୍ତ ଶୁଳ୍କ ହ୍ରାସ କରିଦେଇଥିଲେ ଏବଂ ଗମନାଗମନର ସୁବିଧା ପାଇଁ କେତେଟି ସୁଦୀର୍ଘ ରାଜପଥ ନିର୍ମାଣ କରିଥିଲେ । ଗୁପ୍ତଚର ନିଯୁକ୍ତ ଓ ଅଶ୍ୱପୃଷ୍ଠରେ ଡାକ ସରବରାହ ବ୍ୟବସ୍ଥା ପ୍ରବର୍ତ୍ତନ କରିବା ସଙ୍ଗେ ସଙ୍ଗେ ସେ ସୈନ୍ୟବିଭାଗର ପୁନର୍ଗଠନ ମଧ୍ୟ କରିଥିଲେ । ତାଙ୍କର କଠୋର ଶାସନ ଶୃଙ୍ଖଳା ଫଳରେ ସେତେବେଳେ ଚୋର ଡକାୟତି ହ୍ରାସ ପାଇଥିଲା । ଶେରଶାହ ଶାସକ ହିସାବରେ ନିରପେକ୍ଷ ଓ ନ୍ୟାୟ ପରାୟଣ ଥିଲେ ଏବଂ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ଭେଦଭାବ ରଖି ନଥିଲେ । ରାଜ୍ୟ ଶାସନ ସଙ୍ଗେ ସଙ୍ଗେ ଶାସନ ସଂସ୍କାର ପ୍ରତି ସଚେତନ ଥିଲେ ବୋଲି ମଧ୍ୟଯୁଗୀୟ ଭାରତ ଇତିହାସରେ ଶେରଶାହଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି ।

**ଆକବର** (୧୫୫୬-୧୬୦୫)

୧୫୫୬ ବେଳକୁ ଆକବର ନିଜ ପିତା ହୁମାୟୁନଙ୍କର ସହଯୋଗୀ ବୈରାମ ଖାଁଙ୍କର ଅଭିଭାବକତ୍ୱରେ ପଞ୍ଜାବର ଶାସନ କାର୍ଯ୍ୟ ନିର୍ବାହ କରୁଥିଲେ ଏବଂ ପିତାଙ୍କ ମୃତ୍ୟୁପରେ ୧୫୫୬ ଫେବୃୟାରି ୧୪ ତାରିଖରେ ମାତ୍ର ୧୩ ବର୍ଷ ବୟସରେ ସେ ସିଂହାସନ ଆରୋହଣ କରିଥିଲେ । ସେତେବେଳେ

ପୁତ୍ର ଅମର ସିଂହ ମଧ୍ୟ ପିତାଙ୍କ ଲକ୍ଷ୍ୟ ପୂରଣ ଦିଗରେ ବ୍ରତୀ ହୋଇ ମାନସିଂହଙ୍କ ଦ୍ୱାରା ପରାଜିତ ହୋଇଥିଲେ ।

ଇତି ମଧ୍ୟରେ 'ଆକବର ଗୁଜରାଟ (୧୫୭୩), ବଙ୍ଗ (୧୫୭୬) କାବୁଲ (୧୫୮୫), କାଶ୍ମୀର (୧୫୮୬), ସିନ୍ଧୁ (୧୫୯୧), ବେଲୁଚିସ୍ଥାନ ଓ କନ୍ଦାହାର (୧୫୯୫) ବିଜୟ କରିସାରିଥିଲେ । ୧୫୯୨ରେ ଓଡ଼ିଶା ମଧ୍ୟ ତାଂକ ଶାସନର ଅନ୍ତର୍ଭୁକ୍ତ ହୋଇଥିଲା । ଏହିଭଳି ୧୫୯୫ ବେଳକୁ ଆକବର ହିନ୍ଦୁକୁଶ ଠାରୁ ବ୍ରହ୍ମପୁତ୍ର ଓ ହିମାଳୟ ଠାରୁ ନର୍ମଦା ପର୍ଯ୍ୟନ୍ତ ଅଖଣ୍ଡ ଆଧିପତ୍ୟ ବିସ୍ତାର କରିଥିଲେ ।

ଏହାପରେ ଆକବର ଦାକ୍ଷିଣାତ୍ୟ ବିଜୟ ଅଭିଳାଷ ପୋଷଣ କରି ଅହମ୍ମଦ ନଗର, ବିଜାପୁର, ଗୋଲକୁଣ୍ଡା ଓ ଖାନ୍ଦେଶ ପ୍ରଭୃତି ରାଜ୍ୟର ଶାସକମାନଙ୍କର ଆନୁଗତ୍ୟ ଚାହିଁଥିଲେ; କିନ୍ତୁ କେହି ବଶ୍ୟତା ସ୍ୱୀକାର କରିବା ପାଇଁ ଆଗଭର ନ ହେବାରୁ ସେ ତାଙ୍କର ପୁତ୍ର ମୁରାଦ ଓ ବୈରାମ ଖାଁଙ୍କର ପୁତ୍ର ଅବଦୁର୍ ରହିମଙ୍କୁ ୧୫୯୫ରେ ଅହମ୍ମଦ ନଗର ଆକ୍ରମଣ ଲାଗି ପ୍ରେରଣ କରିଥିଲେ । ସେତେବେଳକୁ ଅହମ୍ମଦ ନଗରର ରାଜା ନାବାଳକ ଥିବାରୁ ବିଜାପୁରର ବୀର ରାଣୀ ଚାନ୍ଦବିବି ସେଠାର ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ଯୁଦ୍ଧ କ୍ଷେତ୍ରରେ ଅସାମାନ୍ୟ ସାହସିକତା ପ୍ରଦର୍ଶନ କରି ସେ ମୋଗଲ ଶକ୍ତି ନିକଟରେ ପରାଜୟ ସ୍ୱୀକାର ପୂର୍ବକ ସନ୍ଧିସ୍ଥାପନ କରିଥିଲେ । କିନ୍ତୁ ପରେ ସନ୍ଧି ଭଙ୍ଗ ହୋଇ ୧୫୯୭ରେ ଗୋଦାବରୀ ଉପକୂଳରେ ଉଭୟଙ୍କର ସଂଘର୍ଷ ଅନିବାର୍ଯ୍ୟ ହୋଇ ଉଠିଥିଲା ଏବଂ ଚାନ୍ଦବିବିଙ୍କର ମୃତ୍ୟୁପରେ ୧୬୦୦ରେ ଅହମ୍ମଦ ନଗର ଦୁର୍ଗ ମୋଗଲ ବାହିନୀର ହସ୍ତଗତ ହୋଇଥିଲା । ଏହାପୂର୍ବରୁ ୧୫୯୯ରେ ସେ ଖାନ୍ଦେଶକୁ ମଧ୍ୟ ଶାସନାଧୀନ କରିସାରିଥିଲେ ।

ଆକବର ୧୬୦୦ ପରେ ଆଉ ରାଜ୍ୟ ବିଜୟ ଉଦ୍ୟମ କରି ନ ଥିଲେ । ତାଙ୍କର ଶେଷ ଜୀବନ ବିଷାଦମୟ ହୋଇଥିଲା । ତାଙ୍କର ବନ୍ଧୁ ଓ ରାଜକବି ଫୈଜି ପରଲୋକ ଯାତ୍ରା କରିଥିଲେ । ପୁତ୍ର ସାଲିମ ଆଲ୍ଲାହାବାଦକୁ ସ୍ୱାଧୀନ ରାଜ୍ୟ କରିବା ଉଦ୍ଦେଶ୍ୟରେ ଆକବରଙ୍କ ବିରୋଧରେ ରାଜପୁତ-ମାନଙ୍କ ସହିତ ହାତ ମିଳାଇଥିଲେ । ଅବଶ୍ୟ ପରେ ପିତାପୁତ୍ରଙ୍କ ମନୋମାଳିନ୍ୟ

ଦୁର୍ବିଭୂତ ହୋଇଥିଲା । କିନ୍ତୁ ଆକବର ଆଉ ବେଶିଦିନ ବଞ୍ଚି ନଥିଲେ, ଖ୍ରୀଷଣ ଅତିସାର ରୋଗରେ ପୀଡ଼ିତ ହୋଇ ୧୬୦୫ ଅକ୍ଟୋବର ୧୭ ତାରିଖରେ ଇହଧାମ ତ୍ୟାଗ କରିଥିଲେ ।

ମଧ୍ୟଯୁଗୀୟ ଭାରତ ଇତିହାସରେ ଆକବର ଥିଲେ ଜଣେ ନିରପେକ୍ଷ, ବିଚକ୍ଷଣ, ଚତୁର ଓ ଚରିତ୍ରବାନ୍ ବାଦଶାହ । ସେ ତାଙ୍କର ବିଶାଳ ସାମ୍ରାଜ୍ୟକୁ ୧୫ଟି 'ସୁବା' (ପ୍ରଦେଶ)ରେ ବିଭକ୍ତ କରିଥିଲେ ଏବଂ ପ୍ରତ୍ୟେକଟି ସୁବାକୁ କେତୋଟି 'ସର୍କାର' ଓ ପ୍ରତ୍ୟେକ ସର୍କାରକୁ କେତୋଟି 'ପର୍ଗଣା'ରେ ଭାଗ ଭାଗ କରିଥିଲେ । କେତୋଟି ଗ୍ରାମକୁ ନେଇ ଗୋଟିଏ ପର୍ଗଣା ଗଠିତ ହୋଇଥିଲା । ପ୍ରଦେଶର ଶାନ୍ତି ଶୃଙ୍ଖଳା ରକ୍ଷା ଦାୟିତ୍ୱ ସୁବାଦାର-ମାନଙ୍କ ହସ୍ତରେ ନ୍ୟସ୍ତ ଥିଲା । ଶାସନ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିବା ପାଇଁ ଦେବାନ୍, ବକ୍ସି ପ୍ରମୁଖ ନିଯୁକ୍ତ ଥିଲେ । ସମର ବିଭାଗର ସୁପରି-ଚାଳନା ଉଦ୍ଦେଶ୍ୟରେ ସେନାବାହିନୀକୁ ସେ ୩୩ଟି ଶ୍ରେଣୀରେ ବିଭକ୍ତ କରିଥିଲେ । ନିଯୁକ୍ତି କ୍ଷେତ୍ରରେ ସେ ଭେଦଭାବ ରଖି ନଥିଲେ; ହିନ୍ଦୁ ମୁସଲମାନ ଉଭୟ ସଂପ୍ରଦାୟକୁ ସମଦୃଷ୍ଟିରେ ଦେଖୁଥିଲେ । ତାଂକ ଦରବାରରେ ଅନେକ ହିନ୍ଦୁ ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇଥିଲେ ଏବଂ ସେ ନିଜେ କେତୁ ରାଜପୁତ ରମଣୀଙ୍କୁ ରାଣୀ ରୂପେ ସ୍ୱୀକାର କରି ତାଙ୍କ ପ୍ରତି ଯଥୋଚିତ ସ୍ନେହ-ସମ୍ମାନ ପ୍ରଦର୍ଶନ କରିଥିଲେ ।

ଏହା ବ୍ୟତୀତ, ଆକବର ସାମୂହିକ ସଦ୍‌ଭାବ ପ୍ରତିଷ୍ଠା ଉଦ୍ଦେଶ୍ୟରେ ୧୫୬୩ରେ ଯାତ୍ରୀକର ଓ ତା ପରବର୍ଷ ଜିଜିୟାକର ପ୍ରଥା ଉଚ୍ଛେଦକରି ଦେଇଥିଲେ । ସର୍ବୋପରି, ସେ ଅତି ସରଳ ଓ ସଂଯମୀ ଥିଲେ ଏବଂ ପରିଣତ ବୟସରେ ବିଶେଷ ଧର୍ମଭୀରୁ ଓ ନିତାନ୍ତ ନିରାମିଷାଶୀ ହୋଇପଡ଼ିଥିଲେ । ଏଥିଯୋଗୁଁ ଜାହାଙ୍ଗିର ତାଙ୍କ ସ୍ମୃତିସଂସ୍ମରଣରେ ଯଥାର୍ଥରେ ଉଲ୍ଲେଖ କରିଛନ୍ତି ଯେ, ଆକବରଙ୍କ କାର୍ଯ୍ୟକଳାପ ଓ ଚାଲିଚଳନ ଜଣେ ସାଧାରଣ ପାର୍ଥିବ ପୁରୁଷଠାରୁ ଭିନ୍ନ ଥିଲା; ତାଙ୍କଠାରେ ଐଶୀମହିମା ପ୍ରକଟିତ ହେଉଥିଲା ।

## ଜାହାଙ୍ଗିର (୧୫୬୯-୧୬୨୭)

ଆକବରଙ୍କ ମୃତ୍ୟୁ ବେଳକୁ ତାଙ୍କର ଦୁଇପୁତ୍ର ଡାନିୟଲ ଓ ମୁରାଦ ଇହଲୀଳା ସମ୍ବରଣ କରିସାରିଥିଲେ । ତେଣୁ ସାଲିମ 'ନୁର ଉଦ୍ଦିନ ମହମ୍ମଦ

ଜାହାଙ୍ଗିର ବାଦଶାହ ଗାଜି' ଉପାଧି ଗ୍ରହଣ ପୂର୍ବକ ପିତାଙ୍କ ତିରୋଧାନର ସପ୍ତାହକ ମଧ୍ୟରେ ସିଂହାସନ ଆରୋହଣ କରିଥିଲେ । କ୍ଷମତାସୀନ ହେବା ପରେ ଜନପ୍ରିୟତା ଅର୍ଜନ ଉଦ୍ଦେଶ୍ୟରେ ସେ ତାଙ୍କ ବିରୋଧୀମାନଙ୍କୁ କ୍ଷମାଦାନ ଏବଂ ବନ୍ଦୀମାନଙ୍କୁ କାରାମୁକ୍ତ କରି ରାଜ୍ୟଜୟର ସୁନେଲି ସ୍ୱପ୍ନ ଦେଖିଲା ବେଳକୁ ଜ୍ୟେଷ୍ଠ ପୁତ୍ର ଖୁସ୍ରୁଙ୍କର ବିଦ୍ରୋହର ସମ୍ମୁଖୀନ ହୋଇଥିଲେ । ଅବଶ୍ୟ ଜାହାଙ୍ଗିର ସସୈନ୍ୟ ବିଦ୍ରୋହ ଦମନ କରି ଖୁସ୍ରୁଙ୍କୁ କାରାରୁଦ୍ଧ କରିଥିଲେ ଏବଂ ତାଙ୍କର ଦୁଇଜଣ ସମର୍ଥକ ହୁସେନ୍ ବେଗ୍ ଓ ଅବଦ୍ଧୁଲ ଅଜିଜଙ୍କୁ ଗଧଉପରେ ବସାଇ ନଗର ପରିକ୍ରମା କରାଇଥିଲେ । ଖୁସ୍ରୁଙ୍କର ଅନ୍ୟତମ ସମର୍ଥକ ଶିଖଗୁରୁ ଅର୍ଜ୍ଜୁନଙ୍କୁ ନିର୍ମମ ପ୍ରାଣଦଣ୍ଡ ଦିଆଯାଇଥିଲା ।

ଜାହାଙ୍ଗିର ୧୬୧୧ରେ ନୁରଜାହାନଙ୍କୁ * ବିବାହ କରିଥିଲେ ଏବଂ ତାପରେ ରାଜକାର୍ଯ୍ୟରେ ତାଙ୍କ ଦ୍ୱାରା ବିଶେଷ ମାତ୍ରାରେ ପ୍ରଭାବିତ ହୋଇଥିଲେ । ନୁରଜାହାନ ଥିଲେ ଅନିନ୍ଦ୍ୟସୁନ୍ଦରୀ ଓ କଳା-ସାହିତ୍ୟ ସଙ୍ଗୀତ ନିପୁଣା । କିନ୍ତୁ ତାଙ୍କର ପ୍ରଧାନ ଦୁର୍ଗୁଣ ଥିଲା ଦୁର୍ଦ୍ଦମନୀୟ ଅଭିଳାଷ ଓ ପ୍ରଚଣ୍ଡ କ୍ଷମତା ଲିପ୍‌ସା । ସେ ନିଜ ପିତାଙ୍କୁ ପ୍ରଧାନ ମନ୍ତ୍ରୀ ଓ ଭ୍ରାତା ଅସଫ ଖାଁଙ୍କୁ ଦରବାରର ସଭାସଦ ରୂପେ ନିଯୁକ୍ତ ଦେଇଥିଲେ । ଏହା ବ୍ୟତୀତ, ସେ ନିଜର ପ୍ରଥମ ସ୍ୱାମୀଙ୍କ ଔରସରୁ ଜାତ କନ୍ୟାକୁ ଜାହାଙ୍ଗିରଙ୍କ କନିଷ୍ଠ ସନ୍ତାନ ଶାହାରୟାର ସହ ବିବାହ କରାଇଥିଲେ ଏବଂ ଆସଫ ଖାଁଙ୍କ କନ୍ୟା ମମତାଜଙ୍କୁ ଜାହାଙ୍ଗିରଙ୍କ ଜ୍ୟେଷ୍ଠ ପୁତ୍ର ଖୁରମ୍ (ଶାହାଜାହାନ୍)ଙ୍କୁ ଅର୍ପଣ

---

* 'ଇକବାଲ୍-ନାମା-ଈ-ଜାହାଙ୍ଗିରୀ'ର ବିବରଣୀରୁ ଜଣାଯାଇଛି ଯେ ସେ ଜନୈକ ପାରସୀ ମୀର୍ଜା ଗିୟାସ ବେଗ୍‌ଙ୍କର କନ୍ୟା; ଭାରତ ଆସିବା ରାସ୍ତାରେ କନ୍ଦାହାର ଠାରେ ଭୂମିଷ୍ଠା ହୋଇଥିଲେ । ତାଙ୍କର ବାଲ୍ୟନାମ ଥିଲା ମୀର ଉନ୍ନୀସା । ସେ ଆଲିବେଗ୍ ଇସ୍ତାଜୀ ନାମକ ଜାହାଙ୍ଗିରଙ୍କ ଜନୈକ ପାରସୀ ଜାଗିରଦାରଙ୍କୁ ବିବାହ କରିଥିଲେ । କିନ୍ତୁ ସେ ପରେ ଅବାଧ୍ୟ ହେବାରୁ ଜାହାଙ୍ଗିର ତାଙ୍କୁ ହତ୍ୟାକରି ମୀର ଉନ୍ନୀସାଙ୍କୁ ବିବାହ କରିଥିଲେ ଏବଂ ତାଙ୍କୁ ନୁରଜାହାନ (ଜଗତର ଆଲୋକ) ନାମ ଦେଇ-ଥିଲେ । ତେବେ ଅନ୍ୟ କେତେକଙ୍କ ମତରେ, ପୂର୍ବରୁ ଆକବରଙ୍କ ସମୟରୁ, ସାଲିମ ଓ ଉନ୍ନୀସାଙ୍କର ଗୁପ୍ତପ୍ରଣୟ ଥିଲା ଏବଂ ସେଥିପାଇଁ ଜାହାଙ୍ଗିର ଆଲିବେଗ୍‌ଙ୍କୁ ହତ୍ୟା କରିଥିଲେ ।

କରିଥିଲେ । ଏହିପରି ନିଜ ଆତ୍ମୀୟମାନଙ୍କ ସାହାଯ୍ୟରେ ଶାସନ କ୍ଷେତ୍ରରେ ସେ ଅଖଣ୍ଡ ଆଧିପତ୍ୟ ବିସ୍ତାର କରିଥିଲେ ଏବଂ ଜାହାଙ୍ଗିର ତାଙ୍କୁ ମହାରାଣୀ ଆସନରେ ଅଳଂକୃତ କରିଥିଲେ ।

ଜାହାଙ୍ଗିର ତାଙ୍କ ରାଜତ୍ୱକାଳରେ ମେବାର (୧୬୧୫), ଅହମ୍ମଦ ନଗର (୧୬୧୬), କାଙ୍ଗ୍ରା ଦୁର୍ଗ (୧୬୨୦) ଓ କନ୍ଦାହାର (୧୬୨୨) ବିଜୟ କରିଥିଲେ । ଅହମ୍ମଦ ନଗର ଆକ୍ରମଣାଭିଯାନରେ ପୁତ୍ର ଖୁରମ୍ ଅସାମାନ୍ୟ ସାହସ ପ୍ରଦର୍ଶନ କରିଥିବାରୁ ସେ ତାଙ୍କୁ 'ଶାହଜହାନ' (ପୃଥିବୀର ସମ୍ରାଟ) ଉପାଧିରେ ଭୂଷିତ କରିଥିଲେ । କିନ୍ତୁ ପରେ ଶାହଜହାନ ପିତାଙ୍କ ବିରୋଧରେ ବିଦ୍ରୋହ କରିଥିଲେ ଏବଂ ଜାହାଙ୍ଗିରଙ୍କ ଶେଷ ଜୀବନ ଦୁଃଖମୟ ଭାବରେ ଅତିବାହିତ ହୋଇଥିଲା । ତେବେ ୧୬୨୫ ବେଳକୁ ଜାହାଙ୍ଗିର ଓ ଶାହଜହାନଙ୍କ ମଧ୍ୟରେ ସଦ୍‌ଭାବ ଫେରି ଆସିଥିଲା । ତାଙ୍କ ରାଜତ୍ୱ କାଳରେ ଉଇଲିୟମ ହକିନ୍‌ସ ଓ ଟମାସ୍ ରୋ ଇଂଲଣ୍ଡର ରାଷ୍ଟ୍ରଦୂତ ହିସାବରେ ଭାରତ ଆସିଥିଲେ ଏବଂ ତଦ୍ଦ୍ୱାରା ଭବିଷ୍ୟତରେ ବ୍ରିଟିଶ ସାମ୍ରାଜ୍ୟ ପ୍ରତିଷ୍ଠା ପଥ ପ୍ରଶସ୍ତ ହୋଇଥିଲା ।

ଜାହାଙ୍ଗିରଙ୍କ ବ୍ୟକ୍ତିତ୍ୱ ଅତି ବିଚିତ୍ର । ସେ ଯେତିକି ସ୍ନେହଶୀଳ, ନ୍ୟାୟପରାୟଣ ଓ ଦୟାଳୁ, ସେତିକି ନିର୍ମମ ଓ କଠୋର ଥିଲେ । ତାଙ୍କର ଧର୍ମ ମନୋଭାବ ଆକବରଙ୍କ ଭଳି ମହାନ୍ ଓ ଉଦାର ନଥିଲା । ତେବେ ସେ ସଙ୍କୀର୍ଣ୍ଣମନା ନଥିଲେ; ହିନ୍ଦୁ ଓ ଖ୍ରୀଷ୍ଟିୟାନଙ୍କ ପ୍ରତି ଅବିଚାର କରୁନଥିଲେ । ସେ ନିଜେ ଥିଲେ ଜଣେ ବିଶିଷ୍ଟ ଚିତ୍ର ଶିଳ୍ପୀ ଏବଂ କଳା, ସାହିତ୍ୟ ଓ ପ୍ରକୃତି ପ୍ରେମୀ ।

**ଶାହଜହାନ** (୧୫୯୨-୧୬୬୬)

୧୬୨୭ ଅକ୍ଟୋବର ୨୮ ତାରିଖରେ ଜାହାଙ୍ଗିରଙ୍କର ମୃତ୍ୟୁ ପରେ ନୁରଜାହାନ ନିଜର ଜାମାତା ତଥା ଜାହାଙ୍ଗିରଙ୍କ କନିଷ୍ଠ ପୁତ୍ର ଶାହାରିୟାରଙ୍କୁ ଉତ୍ତରାଧିକାରୀ ରୂପେ ଘୋଷଣା କରିବା ଲାଗି ଚକ୍ରାନ୍ତ କରିଥିଲେ । କିନ୍ତୁ ନୁରଜାହାନଙ୍କ ଭ୍ରାତା ଆସଫ ଖାଁ ଯଥା ସମୟରେ ହସ୍ତକ୍ଷେପ କରି ସ୍ୱର୍ଗତ ଖୁସ୍ରୁଙ୍କ ପୁତ୍ର ବାବରଙ୍କୁ ଅନ୍ତଃବର୍ତ୍ତୀ ରାଜା ବୋଲି ଘୋଷଣା କରିଥିଲେ ଏବଂ ଶାହଜହାନଙ୍କୁ ଦାକ୍ଷିଣାତ୍ୟରୁ ଡକାଇ ଆଣିଥିଲେ । ତା ଫଳରେ ୧୬୨୮ ଫେବୃୟାରୀ ମାସରେ ଶାହଜହାନ 'ଅବଦୁଲ ମୁଜାଫର ସିହାବୁଦ୍ଦିନ

ମହମ୍ମଦ ସାହବଦ୍ଦିନ୍ ( ଯୁ ) ଶାହଜହାନ ବାଦଶାହ ଘାଜୀ’ ଉପାଧି ଗ୍ରହଣ ପୂର୍ବକ ସିଂହାସନ ଆରୋହଣ କରିଥିଲେ ଏବଂ ବାବରଙ୍କୁ ଗାଦିଚ୍ୟୁତ କରି କାରାରୁଦ୍ଧ କଲାପରେ ତାଙ୍କୁ ପେର୍ଶିଆକୁ ନିର୍ବାସନ କରି ଦେଇଥିଲେ ।

କ୍ଷମତାସୀନ ହେବା ପରେ ପରେ ଶାହଜହାନ ଦୁଇଟି ବିଦ୍ରୋହର ସମ୍ମୁଖୀନ ହୋଇଥିଲେ; ଜଣେ ବିଦ୍ରୋହୀ ଥିଲେ ବୁନ୍ଦେଲ ମୁଖ୍ୟ ବୀର ଯୁଝାର ସିଂ, ଅନ୍ୟ ଜଣେ ଥିଲେ ଶକ୍ତିଶାଳୀ ଆଫଗାନ୍ ନେତା ଖାଁ ଜହାନ୍ ଲୋଦୀ । କିନ୍ତୁ ଶାହଜହାନ ଯଥାକ୍ରମେ ୧୬୨୯ ଓ ୧୬୩୦ରେ ଦୃଢ଼ତାର ସହିତ ତାହା ଦମନ କରିଥିଲେ । ସେତେବେଳେ ବଙ୍ଗରେ ପର୍ତ୍ତୁଗୀଜମାନଙ୍କର ଦୌରାତ୍ମ୍ୟ ବୃଦ୍ଧି ପାଇଥିଲା । ୧୫୮୦ରୁ ପର୍ତ୍ତୁଗୀଜମାନେ ବଙ୍ଗର ହୁଗୁଳି ଓ ସାତଗାଁ ଠାରେ ବସତି ସ୍ଥାପନ କରି ବାଣିଜ୍ୟ ବ୍ୟବସାୟ କରୁଥିଲେ, କିନ୍ତୁ ତା ସଙ୍ଗେ ସଙ୍ଗେ ସେମାନେ ହିନ୍ଦୁ ଓ ମୁସଲମାନ ଶିଶୁମାନଙ୍କୁ ବଳାତ୍କାରରେ ଅପହରଣ କରି ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଉଥିଲେ । ଏପରିକି ସେମାନେ ମମତାଜ ମହଲଙ୍କର ଦୁଇଜଣ ଦାସୀଙ୍କୁ ମଧ୍ୟ ସେଥିରୁ ବାଦ୍ ଦେଇ ନଥିଲେ । ଏହି ଅସାମାଜିକ କାର୍ଯ୍ୟ ପ୍ରତିରୋଧ କରିବାକୁ ଯାଇ ଶାହଜହାନ ୧୬୩୨ରେ ବଙ୍ଗର ଗଭର୍ଣ୍ଣର କାଶିମ ଆଲି ଖାଁଙ୍କ ଦ୍ୱାରା ପର୍ତ୍ତୁଗୀଜମାନଙ୍କୁ ବନ୍ଦୀ ଓ ହତ୍ୟା କରି ନିର୍ମମ ଭାବରେ ଦମନ କରିଥିଲେ ।

ସେତେବେଳକୁ ଗୁଜରାଟ ଓ ଦାକ୍ଷିଣାତ୍ୟରେ ଏକ ଉତ୍କଟ ଦୁର୍ଭିକ୍ଷ ଦେଖାଦେଇଥିଲା ଏବଂ ସାଧାରଣ ଜୀବନ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ତାହା ଶାହଜହାନଙ୍କ ରାଜ୍ୟ ବିସ୍ତାର ନିମିତ୍ତ ଅନୁକୂଳ ହୋଇଥିଲା ଏବଂ ସେ ଅଚିରେ ଅହମ୍ମଦ ନଗର (୧୬୩୩), ଦୌଲତାବାଦ, ବିଜାପୁର ଓ ଗୋଲକୁଣ୍ଡା (୧୬୩୬) ନିଜ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ କରିଥିଲେ । ସେତେବେଳେ ସେ କନିଷ୍ଠ ପୁତ୍ର ଅଉରଙ୍ଗଜେବଙ୍କୁ ଖାନ୍ଦେଶ, ବେରାର, ଦୌଲତାବାଦ ଓ ତେଲେଙ୍ଗାନାର ଶାସନ ଦାୟିତ୍ୱ ଅର୍ପଣ କରିଥିଲେ । ପରେ ୧୬୪୪ରେ ଅଉରଙ୍ଗଜେବ ଦାକ୍ଷିଣାତ୍ୟ ରାଜ୍ୟଗୁଡ଼ିକର ଶାସନ ଦାୟିତ୍ୱ ପରିହାର କରିଦେବାରୁ ତା ପର ବର୍ଷ (୧୬୪୫) ତାଙ୍କୁ ଗୁଜରାଟର ଗଭର୍ଣ୍ଣର ନିଯୁକ୍ତ କରାଯାଇଥିଲା । ଏ ମଧ୍ୟରେ ଶାହଜହାନ ୧୬୩୮ରେ ପାରସ୍ୟ ରାଜାଙ୍କ ହସ୍ତରୁ କନ୍ଦାହାର ପୁନରୁଦ୍ଧାର କରିଥିଲେ । ଅବଶ୍ୟ ୧୬୪୯ରେ ତାହା ତାଙ୍କୁ ହରାଇବାକୁ ପଡ଼ିଥିଲା ।

ଶାହଜହାନଙ୍କ ଶେଷ ବର୍ଷଗୁଡ଼ିକ ଅତି ବିଷାଦମୟ ହୋଇଥିଲା । ୧୬୫୭ରେ ସେ ଯେତେବେଳେ ରୋଗଗ୍ରସ୍ତ ହୋଇପଡ଼ିଲେ ତାଙ୍କର ଚାରିପୁଅ ଦାରାସୁଖ (୪୩ ବର୍ଷ), ସୁଜା (୪୧ ବର୍ଷ), ଅଉରଙ୍ଗଜେବ (୩୯ ବର୍ଷ) ଓ କନିଷ୍ଠ ମୁରାଦ ସେମାନଙ୍କ ଭିତରେ ଉତ୍ତରାଧିକାରୀ ହେବାପାଇଁ ସଂଘର୍ଷ ଆରମ୍ଭ କରିଦେଇଥିଲେ । ଶାହଜହାନଙ୍କର ଦୁଇ କନ୍ୟାଙ୍କ ମଧ୍ୟରୁ ଜହାନାରା ଦାରାଙ୍କୁ ସମର୍ଥନ କରୁଥିଲେ ଏବଂ ରୋଶନାରା ଅଉରଙ୍ଗଜେବଙ୍କର ପକ୍ଷ ନେଇଥିଲେ । ଅବଶେଷରେ ଅଉରଙ୍ଗଜେବ ନିଜର ତିନିଭାଇଙ୍କୁ ପରାସ୍ତକରି ଏବଂ ପିତାଙ୍କୁ କାରାରୁଦ୍ଧ ରଖି ୧୬୫୮ରେ ଦିଲ୍ଲୀ ସିଂହାସନ ଆରୋହଣ କରିଥିଲେ ।

ଏହିଭଳି ଅତିକରୁଣ ପରିସ୍ଥିତିରେ ଶାହଜହାନଙ୍କର ସୁଶାସନର ଅବସାନ ଘଟିଥିଲା । କେତେକ ଐତିହାସିକ ତାଙ୍କ ଶାସନକାଳକୁ ଭାରତରେ ମୋଗଲ ରାଜତ୍ୱ ସମୟର 'ସୁବର୍ଣ୍ଣଯୁଗ' ବୋଲି ମତ ଦେଇଥାନ୍ତି । ସେହି ସମୟରେ ମୋଗଲ କ୍ଷମତା ବିଶେଷ ପ୍ରତିରୋଧର ସମ୍ମୁଖୀନ ହୋଇ ନଥିଲା ଏବଂ ଦେଶରେ 'ତାଜମହଲ' ✳, 'ଦିବାନ-ଇ-ଖାସ୍', 'ଶିସ୍‌ମହଲ', 'ମୋତି ମସ୍‌ଜିଦ', 'ଜାମି ମସ୍‌ଜିଦ', 'ମୟୂର ସିଂହାସନ' † ପ୍ରଭୃତି ଉନ୍ନତ ସ୍ଥାପତ୍ୟଶିଳ୍ପ ଓ କାରୁକଳାର ବିକାଶ ଘଟିଥିଲା । ତେବେ ସେସବୁ ଶୈଳ୍ପିକ ପ୍ରାଚୁର୍ଯ୍ୟ ମୂଳରେ ଯେଉଁ ଆର୍ଥିକ ଅପରିମିତତା ଓ ବାଧ୍ୟବାଧକତା ନିହିତ ଥିଲା, ତାହା ବହୁ କୃଷକ ଓ ଶ୍ରମିକଙ୍କ ପ୍ରାଣରେ ଅସନ୍ତୋଷ ଭରି ଦେଇଥିଲା ଏବଂ ପରବର୍ତ୍ତୀକାଳର ଜାତୀୟ ଅବସ୍ଥାକୁ ଦୁର୍ବଳ କରିପକାଇଥିଲା । ଏଥିପାଇଁ ଅନେକ ଐତିହାସିକ ଶାହଜହାନଙ୍କୁ ଯଥାର୍ଥରେ ଫ୍ରାନ୍ସର ଲୁଇ ଚତୁର୍ଦ୍ଦଶଙ୍କ ସହିତ ତୁଳନା କରିଛନ୍ତି ।

**ଅଉରଙ୍ଗଜେବ** (୧୬୫୮-୧୭୦୭)

୧୬୫୮ରେ ସିଂହାସନ ଅଧିକାର କରିବା ପରେ ଅଉରଙ୍ଗଜେବ ତାଙ୍କର ଭ୍ରାତା, ପୁଅ ଓ ଅନ୍ୟାନ୍ୟ ବିରୋଧକାରୀ ଆତ୍ମୀୟସ୍ୱଜନଙ୍କୁ ନିର୍ମମ ଭାବରେ

---

✳ ୧୬୩୧ରେ ମମତାଜ ମହଲ ପ୍ରସବ ବେଦନାରେ ପ୍ରାଣ ହରାଇଲାପରେ ତାଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଶାହଜହାନ ସେତେବେଳେ ୫୦ ଲକ୍ଷ ଟଙ୍କା ବ୍ୟୟରେ ତାଜମହଲ ନିର୍ମାଣ କରିଥିଲେ ।

† ଶାହଜାହାନ୍ ୮କୋଟି ଟଙ୍କା ବିନିଯୋଗ କରି ମଣିମୁକ୍ତା ଖଚିତ 'ମୟୂର ସିଂହାସନ'ଟି ନିର୍ମାଣ କରିଥିଲେ; ପରେ ନାଦିର ଶାହଙ୍କ ଦିଲ୍ଲୀ ଲୁଣ୍ଠନ କାଳରେ ତାହା ଅପହୃତ ହୋଇଥିଲା ।

ମୂଳପୋଛ କରି ୧୬୫୯ରେ ପୁଣି ଥରେ ବିଧିବଦ୍ଧ ଭାବରେ ଅଭିଷେକ ଉତ୍ସବ ଆୟୋଜନ ପୂର୍ବକ 'ଆଲମଗିର' (ବିଶ୍ୱବିଜୟୀ) ଓ 'ଘାଜି' (ଧର୍ମଯୋଦ୍ଧା) ଉପାଧିରେ ଭୂଷିତ ହୋଇ ନିଜର ପ୍ରଭୁତ୍ୱ ପ୍ରତିଷ୍ଠା କରିଥିଲେ । ପ୍ରଜାବର୍ଗଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ସେ ପ୍ରଥମେ କେତେକ ଉତ୍ପୀଡ଼କ ଶୁଳ୍କ ପ୍ରତ୍ୟାହାର କରିନେଇ ଥିଲେ ଏବଂ ଆକବରଙ୍କ ଇଲାହି–ପଞ୍ଜିକା ବଦଳରେ ମୁସଲମାନମାନଙ୍କର ଚାନ୍ଦ୍ରମାସୀ ପଞ୍ଜିକା ପ୍ରବର୍ତ୍ତନ କରିଥିଲେ । ତେବେ ତାଙ୍କର ଏହି ପ୍ରଜାମଙ୍ଗଳକର ପଦକ୍ଷେପ ବିଶେଷ ପ୍ରଭାବଶାଳୀ ହୋଇ ନଥିଲା ।

ଅଉରଙ୍ଗଜେବଙ୍କ ଅର୍ଦ୍ଧଶତାବ୍ଦୀର ଶାସନକାଳକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ; ଶାସନର ପ୍ରଥମାର୍ଦ୍ଧ (୧୬୫୮-୮୧)କାଳରେ ଉତ୍ତର ଭାରତ ଉପରେ ତାଙ୍କର ଦୃଷ୍ଟି ନିବଦ୍ଧ ଥିଲା ଏବଂ ଦ୍ୱିତୀୟାର୍ଦ୍ଧ (୧୬୮୨-୧୭୦୭)ରେ ସେ ଦକ୍ଷିଣାଞ୍ଚଳ ଉପରେ ପ୍ରାଧାନ୍ୟ ଦେଇ ଉତ୍ତର ଭାରତର ଶାସନ ପ୍ରତି ଅବହେଳା କରିଥିଲେ । ଏହା ଫଳରେ ତାଙ୍କୁ ଶୋଚନୀୟ ପରିଣତିର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ଅଉରଙ୍ଗଜେବଙ୍କ ସିଂହାସନାରୋହଣ ଜନିତ କ୍ଷମତା ସଂଘର୍ଷର ସୁଯୋଗ ନେଇ ୧୬୫୮ରେ ଆହୋମମାନେ ଗୌହାଟି ଦଖଲ କରିନେଇ ଥିଲେ । ସେଥିପାଇଁ ୧୬୬୧ରେ ସେ ମୀର ଜୁମଲାଙ୍କୁ ପଠାଇ କଚ୍ଛବିହାର ଓ ଆସାମ ଜୟ କରିବା ସଙ୍ଗେ ସଙ୍ଗେ ଆହୋମ ରାଜା ଜୟଧ୍ୱଜଙ୍କୁ ଆୟତ୍ତାଧୀନ କରିଥିଲେ । ଅବଶ୍ୟ ପରେ ୧୬୬୭ରେ ଆସାମ ଆହୋମମାନଙ୍କ ହାତକୁ ଚାଲି ଯାଇଥିଲା ।

ସେତେବେଳେ ଉତ୍ତର-ପଶ୍ଚିମ ସୀମାନ୍ତରେ ଆଫଗାନ୍‌ମାନଙ୍କ ଆକ୍ରମଣ ଏକ ସମସ୍ୟା ରୂପେ ଦେଖାଦେଇଥିଲା ଏବଂ ଅଉରଙ୍ଗଜେବ ଅର୍ଥ ବଳରେ ତାଙ୍କୁ ବଶୀଭୂତ କରିବାକୁ ବ୍ୟର୍ଥ ଉଦ୍ୟମ କରିଥିଲେ । ତେବେ ୧୬୬୭ରେ ସେ ହାକିମ ଠାରେ ୟୁସୁଫଜାମାନଙ୍କ ଆନ୍ଦୋଳନ ଦମନ କରିବାକୁ ସମର୍ଥ ହୋଇଥିଲେ । ୧୬୭୨ରେ ଆକମଲ୍ଲ ଖାଁଙ୍କ ନେତୃତ୍ୱରେ ମୁଣ୍ଡଟେକିଥିବା ଆଫ୍ରିଡ଼ିମାନଙ୍କ ବିଦ୍ରୋହ ଦମନ କରିବାକୁ ଯାଇ ଅଉରଙ୍ଗଜେବ ଅସଂଖ୍ୟ ମୋଗଲ ସୈନ୍ୟଙ୍କ ହରାଇଥିଲେ ଏବଂ ପରେ ଆଫ୍ରିଦି ଓ ଖଟକମାନଙ୍କର *

* ଖଟକମାନଙ୍କର ନେତା ଥିଲେ କୌଶଲ ଖାଁ । ସେ ଥିଲେ ଏକାଧାରରେ ଜଣେ ବୀର, ଯୋଦ୍ଧା ଓ ପ୍ରଭାବଶାଳୀ କବି । ଅସି ଓ ମସୀର ସଂଯୋଗ ବଳରେ ସେ ଖଟକମାନଙ୍କୁ ପ୍ରଭାବିତ କରିଥିଲେ ।

ମିଳିତ ଆକ୍ରମଣର ପ୍ରତିରୋଧ କରିବାକୁ ଯାଇ ମୋଗଲବାହିନୀ ୧୬୭୪ରେ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲେ । ଅବଶ୍ୟ ପରେ ଆଫଗାନିସ୍ଥାନର ଗଭର୍ଣ୍ଣର ଅମିନ ଖାଁଙ୍କର ସୁପରାମର୍ଶ କ୍ରମେ କେତେକ ବିଶିଷ୍ଟ ନେତାଙ୍କୁ ଜାଗିର ଓ ଭତ୍ତା ପ୍ରଭୃତି ଦ୍ୱାରା ସନ୍ତୁଷ୍ଟ କରି ଏବଂ କ୍ଷୁଦ୍ର କ୍ଷୁଦ୍ର ସଂପ୍ରଦାୟଗୁଡ଼ିକ ମଧ୍ୟରେ ମତାନ୍ତର ସୃଷ୍ଟି କରି ସେ ବିଭିନ୍ନ ଆନ୍ଦୋଳନକୁ ପ୍ରଶମିତ କରିପାରିଥିଲେ । ତେବେ ସାମରିକ ଅଭିଯାନ ଓ ଆର୍ଥିକ ସାହାଯ୍ୟ ବାବଦରେ ତାଙ୍କ ରାଜକୋଷରୁ ଅଜସ୍ର ଅର୍ଥ ବରବାଦ ହୋଇଥିଲା ।

ଅଉରଙ୍ଗଜେବ ଜଣେ ରକ୍ଷଣଶୀଳ ସୁନ୍ନି ମୁସଲମାନ ହିସାବରେ ଇସଲାମ ଧର୍ମର ଆଦର୍ଶ ପ୍ରତିଷ୍ଠା କରିବାକୁ ଯାଇ ରାଜ୍ୟରୁ ସଙ୍ଗୀତ, ସୁରାପାନ, ନିଶାଦ୍ରବ୍ୟ ସେବନ ପ୍ରଭୃତି ନିଷେଧ କରିବା ସଙ୍ଗେ ସଙ୍ଗେ ହିନ୍ଦୁମାନଙ୍କ ବିରୋଧରେ 'ଜିହାଦ' (ଧର୍ମଯୁଦ୍ଧ) ଆରମ୍ଭ କରିଦେଇଥିଲେ । ବନାରସ, ମଥୁରା ପ୍ରଭୃତି ସ୍ଥାନରେ ହିନ୍ଦୁଧର୍ମ ମନ୍ଦିରମାନଙ୍କର ଧ୍ୱଂସ ସାଧନ କରି ହିନ୍ଦୁମାନଙ୍କ ଉପରେ ଜିଜିୟା କର ବସାଇଥିଲେ । ଏହା ଦ୍ୱାରା ତାଙ୍କ ଶାସନନୀତି ଚରମ ବିଫଳତା ବରଣ କରିଥିଲା ଏବଂ ମଥୁରା, ବୁନ୍ଦେଲଖଣ୍ଡ, ଓ ପାତିଆଲା; ଅମୃତସର, ମାରବାଡ଼ରେ ଯଥାକ୍ରମେ ଜାଠ, ବୁନ୍ଦେଲ, ସତନାମୀ, ଶିଖ ଓ ରାଜପୁତମାନଙ୍କର ଆନ୍ଦୋଳନ ଅନିବାର୍ଯ୍ୟ ହୋଇ ଉଠିଥିଲା । ସର୍ବୋପରି, ଛତ୍ରପତି ଶିବାଜୀଙ୍କ ନେତୃତ୍ୱରେ ଜାଗ୍ରତ ମରହଟ୍ଟା ଶକ୍ତି ଅଉରଙ୍ଗଜେବଙ୍କ ମୋଗଲ ସାମ୍ରାଜ୍ୟକୁ ଦୋଦୁଲ୍ୟମାନ କରିପକାଇଲା । ଅବଶ୍ୟ ଶିବାଜୀଙ୍କ ପରେ ଅଉରଙ୍ଗଜେବ ଦାକ୍ଷିଣାତ୍ୟ ଅଭିଯାନରେ ଯାଇ ଗୋଲକୁଣ୍ଡା, ବିଜାପୁର ବିଜୟ କରି ଶିବାଜୀଙ୍କ ପୁତ୍ର ଶାମ୍ଭୁଜୀଙ୍କୁ ନିହତ କରିଥିଲେ । କିନ୍ତୁ ତାର ପରିଣାମ ବିଷମୟ ହୋଇଥିଲା । ପୁନର୍ଜାଗ୍ରତ ମରହଟ୍ଟା ଶକ୍ତିର ଦୃଢ଼ ଏକତା ଓ ସ୍ୱତନ୍ତ୍ର ଜାତୀୟତା ସମ୍ମୁଖରେ ମୋଗଲ ଶକ୍ତି ପରାସ୍ତ ହୋଇଥିଲା । ସେତେବେଳେ ପରାଜୟ ସ୍ୱୀକାର ପୂର୍ବକ ମୋଗଲ ବାହିନୀ ରଣକ୍ଷେତ୍ରରୁ ପ୍ରତ୍ୟାବର୍ତ୍ତନ କରି ଅହମ୍ମଦାବାଦ ଚାଲି ଆସିବା ପରେ ୧୭୦୭ରେ ସେଠାରେ ଅଉରଂଗଜେବଙ୍କର ପରଲୋକ ଘଟିଥିଲା ।

———

# ଚତୁର୍ଦ୍ଦଶ ପର୍ଯ୍ୟାୟ

# ମୋଗଲଯୁଗ (ଖ)

## ମୋଗଲ ସାମ୍ରାଜ୍ୟର କ୍ରମାବସାନ

ଅଉରଙ୍ଗଜେବଙ୍କର ଅବିବେକୀ ହିନ୍ଦୁ ବିଦ୍ୱେଷ ମଧ୍ୟରେ ଯେଉଁ ପ୍ରବଳ ପ୍ରତିକ୍ରିୟା ପ୍ରକାଶ ପାଇଥିଲା, ତାହା ମୋଗଲ ସାମ୍ରାଜ୍ୟର ଧ୍ୱଂସର କାରଣ ହୋଇଥିଲା । କେବଳ ସେତିକି ନୁହେଁ, ମରହଟ୍ଟା ଓ ମୁସଲମାନ ଶକ୍ତିର ପରସ୍ପର ସଂଘର୍ଷ ଫଳରେ ଉଭୟ ଶକ୍ତି ଦୁର୍ବଳ ହୋଇ ପଡ଼ିବା ଯୋଗୁଁ ଭାରତରେ ବ୍ରିଟିଶ ଆଧିପତ୍ୟ ବିସ୍ତାର ନିମିତ୍ତ ସୁଯୋଗ ମିଳିଥିଲା । ଅଉରଙ୍ଗଜେବ ମହମ୍ମଦ ବିନ୍ ତୋଗଲକଙ୍କ ପରି ରକ୍ତପିପାସୁ ନଥିଲେ; ନିଷ୍ଠାପର ସୁନି ମୁସଲ-ମାନ ଭାବରେ ସେ ଥିଲେ ଅତି ସରଳ, ସଂଯତ, ଆଦର୍ଶପ୍ରାଣ ଓ ଚରିତ୍ରବାନ । କିନ୍ତୁ ତାଙ୍କର ଚରମ ଧର୍ମାନ୍ଧତା ତଥା ହିନ୍ଦୁ ଓ ଅଣମୁସଲମାନଙ୍କ ପ୍ରତି ଅସହିଷ୍ଣୁତାହିଁ ତାଙ୍କ ସୁବିଶାଳ ସାମ୍ରାଜ୍ୟର ଅଧଃପତନ ଘଟାଇଥିଲା ।

### ଜାଠ, ବୁନ୍ଦେଲ ଓ ସତ୍ୟନାମୀ ବିଦ୍ରୋହ

ଅଉରଙ୍ଗଜେବଙ୍କର ହିନ୍ଦୁ ଆନ୍ଦୋଳନ ଦମନ ଅଭିଯାନର ପ୍ରଥମ ପ୍ରତିକ୍ରିୟା ସ୍ୱରୂପ ମଥୁରାଠାରେ ଜାଠ ବିଦ୍ରୋହ ମୁଣ୍ଡ ଟେକିଥିଲା । ଯେତେ-ବେଳେ ୧୬୬୯ରେ ଫଉଜଦାର ଅବଦୁନ୍ ନବି ମଥୁରା ନଗରୀର ବକ୍ଷ ଦେଶରେ ଏକ ଧ୍ୱସ୍ତ ହିନ୍ଦୁ ମନ୍ଦିରର ଭଗ୍ନାବଶେଷ ଉପରେ ଗୋଟିଏ ମସଜିଦ ନିର୍ମାଣ ନିମିତ୍ତ ଉଦ୍ୟମ କଲେ, ସେଥିରେ ଉତ୍ତ୍ୟକ୍ତ ହୋଇ କୃଷକ ଶ୍ରେଣୀ ତିଲପତର ଜମିଦାର ଗୋକୁଳଙ୍କ ନେତୃତ୍ୱରେ ଆନ୍ଦୋଳନ କରି ଉକ୍ତ ଫଉଜଦାରକୁ ହତ୍ୟା କରିଥିଲେ । ଅବଶ୍ୟ ପରେ ଗୋକୁଳଙ୍କୁ ନିହତ କରି ତାଙ୍କ ପରିବାର-ଜନଙ୍କୁ ବାଧ୍ୟତାମୂଳକ ମୁସଲମାନ ଧର୍ମରେ ଦୀକ୍ଷିତ କରାଯାଇଥିଲା । କିନ୍ତୁ ତଦ୍ଦ୍ୱାରା ଜାଠ ଆନ୍ଦୋଳନ ଶିଥିଳ ହୋଇ ନଥିଲା । ୧୬୮୫ରେ ରାଜାରାମଙ୍କ ନେତୃତ୍ୱରେ ଜାଠମାନେ ପୁଣି ଜାଗ୍ରତହୋଇ ଉଠିଥିଲେ ଏବଂ ୧୬୮୮ରେ ସିକନ୍ଦରାସ୍ଥ ଆକବରଙ୍କ କବରକୁ ଧ୍ୱସ୍ତବିଧ୍ୱସ୍ତ କରି ଦକାଇଥିଲେ ।

୧୬୯୧ରେ ରାଜାରାମ ପରାଜିତ ଓ ନିହତ ହେବା ପରେ ଦୁର୍ଦ୍ଧର୍ଷ ଚୁରାମନଙ୍କ ନେତୃତ୍ୱରେ ଜାଠମାନେ ମୋଗଲ ରାଜତ୍ୱର ଶେଷକାଳ ପର୍ଯ୍ୟନ୍ତ ଅପରାଜେୟ ହୋଇ ରହିଥିଲେ ।

ଅଉରଙ୍ଗଜେବଙ୍କ ହିନ୍ଦୁ ବିଦ୍ୱେଷ ନୀତିର ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ସାମରିକ ପ୍ରତିରୋଧ ଘଟିଥିଲା ବୁନ୍ଦେଲଖଣ୍ଡ ରାଜକୁମାର ଛତ୍ରଶାଳଙ୍କ ନେତୃତ୍ୱରେ । ଅଉରଙ୍ଗଜେବଙ୍କ ଶାସନର ପ୍ରାରମ୍ଭ କାଳରେ ହିଁ ବୁନ୍ଦେଲଖଣ୍ଡ ଓ ମାଳବର ଜନତା ଛତ୍ରଶାଳଙ୍କ ପିତା ଚମ୍ପତରାୟଙ୍କ ନେତୃତ୍ୱରେ ଆନ୍ଦୋଳନ କରିଥିଲେ । ତେଣୁ ୧୬୭୧ ରେ ସେମାନେ ଅଉରଙ୍ଗଜେବଙ୍କର ବିରୋଧରେ ଛତ୍ରଶାଳଙ୍କ ନେତୃତ୍ୱରେ ଐକ୍ୟବଦ୍ଧ ହୋଇ 'ବୁନ୍ଦେଲଖଣ୍ଡ ମୁକ୍ତି' ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ବହୁ ସ୍ଥଳରେ ମୋଗଲ ଶକ୍ତିକୁ ପରାସ୍ତ କରିଥିଲେ ଏବଂ ପୂର୍ବ-ମାଳବ ମୋଗଲ ଶାସନ କବଳରୁ ସ୍ୱାଧୀନ ହୋଇଥିଲା ।

ସେତେବେଳେ ନାର୍ଣ୍ଣୌଲ (ପାତିଆଲା) ଓ ମେବାତ (ଆଲବାର) ଅଞ୍ଚଳରେ ସତନାମୀ ନାମକ ଗୋଟିଏ କୃଷିଜୀବୀ ବର୍ଣ୍ଣକ ଗୋଷ୍ଠୀ ବାସ କରୁଥିଲେ । ସେମାନେ ଥିଲେ ନୈଷ୍ଠିକ ହିନ୍ଦୁ ଓ ନିତାନ୍ତ ଧର୍ମପରାୟଣ । ୧୬୭୨ ରେ ଯେତେବେଳେ ଜନୈକ ମୋଗଲ ପଦାତିକ ସୈନ୍ୟ ଜଣେ ସତନାମୀ କୃଷକକୁ ହତ୍ୟା କରିଦେଲା, ସେହି ଘଟଣାରେ ଉତ୍ତ୍ୟକ୍ତ ହୋଇ ସେମାନେ ମୋଗଲ ଶକ୍ତି ବିରୋଧରେ ସଶସ୍ତ୍ର ବିଦ୍ରୋହକରି ଅଉରଙ୍ଗଜେବଙ୍କର ବହୁ ସୈନ୍ୟଙ୍କୁ ହତାହତ କରି ତାଙ୍କ ସାମ୍ରାଜ୍ୟର ଅଜସ୍ର କ୍ଷୟକ୍ଷତି ଘଟାଇ-ଥିଲେ । ଅବଶ୍ୟ ଶେଷରେ ସତନାମୀମାନେ ମୋଗଲବାହିନୀ ଦ୍ୱାରା ପରାଜିତ ହୋଇଥିଲେ ।

## ଶିଖବିଦ୍ରୋହ

ଶିଖମାନେ ମଧ୍ୟ ଅଉରଙ୍ଗଜେବଙ୍କ ଧର୍ମାନ୍ଧ ନୀତିରେ ଉତ୍ତେଜିତ ହୋଇଥିଲେ । ୧୫ଶ ଶତାବ୍ଦୀରେ ଗୁରୁ ନାନକ ଇସଲାମ ଓ ହିନ୍ଦୁଧର୍ମ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା କରିବା ପାଇଁ ଯେଉଁ ପ୍ରୟାସ କରିଥିଲେ, ମୋଗଲ ସମ୍ରାଟଙ୍କ ହିନ୍ଦୁ ବିରୋଧୀ କାର୍ଯ୍ୟକଳାପ ଫଳରେ ତାହା ବିପରୀତ ରୂପ ଧାରଣ କରିଥିଲା । ପଞ୍ଚମ ଶିଖ ଗୁରୁ * ଅର୍ଜୁନ ମଲ୍ଲଙ୍କୁ ଇସଲାମ ଧର୍ମ ଗ୍ରହଣ

* ଗୁରୁ ନାନକ ଶିଖଧର୍ମର ପ୍ରତିଷ୍ଠାତା ତଥା ପ୍ରଥମ ଗୁରୁ । ଦ୍ୱିତୀୟ ଗୁରୁ ଅଙ୍ଗଦ (୧୫୩୯-୫୨), ତୃତୀୟ ଗୁରୁ ଅମର ଦାସ (୧୫୫୨-୭୪) ଏବଂ ଚତୁର୍ଥ ଗୁରୁ ରାମଦାସ (୧୫୭୪-୮୧) ।

ନ କରିବା କାରଣରୁ ଜାହାଙ୍ଗିର ୧୬୦୬ରେ ନିହତ କରିବା ପରଠୁଁ ଶିଖମାନେ ଅର୍ଜୁନଙ୍କ ପୁତ୍ର ହରଗୋବିନ୍ଦ ସିଂହଙ୍କ ଅଦମ୍ୟ ନେତୃତ୍ୱରେ ମୋଗଲ ରାଜତ୍ୱ ବିରୋଧରେ ବିଦ୍ରୋହୀ ହୋଇ ଉଠିଥିଲେ ଏବଂ ୧୬୨୮ରେ ଅମୃତସର ନିକଟରେ ଗୋଟିଏ ମୋଗଲ ବାହିନୀକୁ ପରାଭୂତ କରିଥିଲେ । ଗୁରୁ ହରଗୋବିନ୍ଦଙ୍କ ସମୟରେ ଶିଖ ଧର୍ମାବଲମ୍ବୀମାନଙ୍କର ସଂଖ୍ୟା ବୃଦ୍ଧି ଘଟିଥିଲା ଏବଂ କାଶ୍ମୀର ଉପତ୍ୟକା କିରାତପୁରଠାରେ ମୋଗଲ ସାମ୍ରାଜ୍ୟ ଭିତରେ ତାଙ୍କର ଏକ ସ୍ୱତନ୍ତ୍ର ରାଜ୍ୟ ଗଠିତ ହୋଇଥିଲା ।

ହରଗୋବିନ୍ଦଙ୍କ ପରେ ହର ରାଏ ଓ ଅଷ୍ଟମ ଗୁରୁ ହରକିଶନଙ୍କ ଅମଳରେ ସେଭଳି କୌଣସି ଉଲ୍ଲେଖଯୋଗ୍ୟ କାର୍ଯ୍ୟାନୁଷ୍ଠାନ କରାଯାଇ ନଥିଲା । ତେବେ ନବମଗୁରୁ ତେଜ ବାହାଦୁର ରାଜା ରାମସିଂହଙ୍କୁ ଅଉରଙ୍ଗଜେବଙ୍କ ବିରୁଦ୍ଧରେ ସମର୍ଥନ କରିଥିଲେ ଏବଂ ଧର୍ମାନ୍ଧ ମୋଗଲ ଶାସନ ବିପକ୍ଷରେ କାଶ୍ମୀର ଅଞ୍ଚଳର ବ୍ରାହ୍ମଣମାନଙ୍କୁ ପ୍ରରୋଚିତ କରିଥିଲେ । ଏଥିପାଇଁ ଅଉରଙ୍ଗଜେବ ତାଙ୍କୁ ବନ୍ଦୀ କରି ପ୍ରାଣଦଣ୍ଡ ବିନିମୟରେ ଇସଲାମଧର୍ମ ଗ୍ରହଣ କରିବା ପାଇଁ ବାଧ କରିଥିଲେ; କିନ୍ତୁ ତେଜ ବାହାଦୁର ପ୍ରାଣପାତ କରିଥିଲେ ସିନା ଧର୍ମତ୍ୟାଗ କରି ନଥିଲେ ।

୧୬୭୫ ରେ ତେଜ ବାହାଦୁର ଶହୀଦତ୍ୱ ପ୍ରାପ୍ତ ହେବା ପରେ ଶିଖଗୋଷ୍ଠୀ କ୍ରୋଧରେ ତାଙ୍କ ପୁତ୍ର ଗୋବିନ୍ଦ ସିଂହଙ୍କ ନେତୃତ୍ୱରେ ପ୍ରଜ୍ୱଳିତ ହୋଇ ଉଠିଥିଲେ । ଗୁରୁ ଗୋବିନ୍ଦ ସିଂହ ନିଜର ଅସାମାନ୍ୟ ସଂଗଠନ ଶକ୍ତି ବଳରେ ପଞ୍ଚ 'କ' ବିଶେଷ ମାନ୍ତି ('କେଶ' ରଖିବା, 'କାଚ୍ଛା' ପିନ୍ଧିବା, 'କଙ୍ଗା' (ପାନିଆ) ଖୋସିବା, 'କୃପାଣ' ଧରିବା ଓ 'କର' (ଲୌହ କଙ୍କଣ) ବ୍ୟବହାର କରିବା) ଉପରେ ପ୍ରାଧାନ୍ୟ ଦେଇ ଶିଖମାନଙ୍କୁ ଏକ 'ଖାଲସା' (ପବିତ୍ର) ଗୋଷ୍ଠୀରେ ସଙ୍ଘବଦ୍ଧ କରିଥିଲେ । ଅବଶ୍ୟ ଅଉରଙ୍ଗଜେବଙ୍କ ଜୀବନ କାଳ ମଧ୍ୟରେ ଗୁରୁ ଗୋବିନ୍ଦ ସିଂହଙ୍କ ଉଦ୍ୟମ ଫଳବତୀ ହୋଇ ପାରି ନଥିଲା । ମୋଗଲ ବାହିନୀ ହାତରେ ତାଙ୍କର ଦୁଇପୁତ୍ର ବନ୍ଦୀ ହୋଇ ଫାଶୀ ଦଣ୍ଡ ପାଇଥିଲେ ଏବଂ ଶିଖ ବିଦ୍ରୋହ ପ୍ରଶମିତ ହୋଇ ଯାଇଥିଲା । ତେବେ ଗୁରୁ ଗୋବିନ୍ଦ ସିଂହ ଅଉରଙ୍ଗଜେବଙ୍କର ଉତ୍ତରାଧିକାରୀ ବାହାଦୁର ଶାହଙ୍କର ପ୍ରିୟ ଭାଜନ ହୋଇ ପାରିଥିଲେ ଏବଂ ତାଙ୍କ ସହ ଦାକ୍ଷିଣାତ୍ୟ ଅଭିଯାନରେ ଯାଇଥିଲା ବେଳେ ଗୋଦାବରୀ ତଟବର୍ତ୍ତୀ ନାନ୍ଦେର ଠାରେ ଜନୈକ ଆଫଗାନ୍

ଅ।ତତାୟୀ ଦ୍ୱାରା ନିହତ ହୋଇଥିଲେ । ସେ ଥିଲେ ଶିଖମାନଙ୍କର ଦଶମ ଓ ଶେଷ ଗୁରୁ । ତାଙ୍କ ମୃତ୍ୟୁପରେ ତାଙ୍କର ଧର୍ମବାଣୀ ଓ ମତ ଉପଦେଶାବଳୀ 'ଦଶମ ବାଦଶାହ କା ଗ୍ରନ୍ଥ'ରେ ପ୍ରକାଶ ପାଇଥିଲା ।

## ରାଜପୁତ ଯୁଦ୍ଧ

ଅଉରଙ୍ଗ ଜେବଙ୍କ ଦୂରଦୃଷ୍ଟିବିହୀନ ରାଜପୁତ ମତ ଏବଂ ହିନ୍ଦୁଦମନ ଅଭିପ୍ରାୟ ଯୋଗୁଁ ମୋଗଲ ସାମ୍ରାଜ୍ୟ ଏକ ଦୀର୍ଘକାଳବ୍ୟାପୀ ବ୍ୟର୍ଥ ଓ ବ୍ୟୟବହୁଳ ସଂଗ୍ରାମର ସମ୍ମୁଖୀନ ହେବାକୁ ବାଧ ହୋଇଥିଲା । ଆକବର ଚତୁରତାର ସହ ବଦାନ୍ୟ ବ୍ୟବହାର ପ୍ରଦର୍ଶନପୂର୍ବକ ରାଜପୁତମାନଙ୍କୁ ନିଜ ଅକ୍ତିଆରରେ ରଖିଥିଲେ । କିନ୍ତୁ ଅଉରଙ୍ଗଜେବ ସେହି ମତର ବିପରୀତାଚରଣ କରି ଅମ୍ବରର ରାଜା ଜୟସିଂହଙ୍କୁ ବିଦ୍ରୋହୀ ହିନ୍ଦୁମାନଙ୍କର ନେତା ମନେ କରି ଗୁପ୍ତରେ ବିଷପ୍ରୟୋଗ ଦ୍ୱାରା ତାଙ୍କୁ ନିହତ କରିଥିଲେ ଏବଂ ୧୬୭୮ରେ ମାରବାରର ରାଜା ଯଶୋବନ୍ତ ସିଂହଙ୍କର ପରଲୋକ ପରେ ମାରବାରରେ ପ୍ରବେଶ କରି ଯଶୋବନ୍ତଙ୍କର ଜନୈକ ସୁଦୂର ବଂଶଧର ଇନ୍ଦ୍ରଜିତଙ୍କୁ ନାମକୁ ମାତ୍ର ରାଣା ପଦରେ ବସାଇ ନିଜର କର୍ତ୍ତୃତ୍ୱ ଜାରି କରିବା ପାଇଁ ଚେଷ୍ଟା କରିଥିଲେ । ପରେ ଯଶବନ୍ତ ସିଂହଙ୍କର ଦୁଇ ରାଣୀଙ୍କ ଗର୍ଭରୁ ଦୁଇଟି ସନ୍ତାନଙ୍କର ଆବିର୍ଭାବ ଘଟିଥିଲା । ତନ୍ମଧ୍ୟରୁ ଜଣକର ବାଲ୍ୟମୃତ୍ୟୁ ହୋଇଥିଲା ଓ ଅନ୍ୟ ଜଣକ ଥିଲେ ଇତିହାସ ବିଖ୍ୟାତ ଅଜିତ ସିଂହ । ଅଉରଙ୍ଗଜେବ ସେମାନଙ୍କୁ ଇସଲାମ ଧର୍ମରେ ଦୀକ୍ଷିତ କରିବା ଉଦ୍ଦେଶ୍ୟରେ ରାଜ ପ୍ରାସାଦରେ ନେଇ ରଖିଥିଲେ ।

କିନ୍ତୁ ତାଙ୍କର ସେହି ଦୁରଭିସନ୍ଧି ପ୍ରକାଶ ପାଇଯିବା ପରେ ରାଠୋରମାନେ ବୀର ଦୁର୍ଗାଦାସଙ୍କ ନେତୃତ୍ୱରେ ମୋଗଲମାନଙ୍କ ଉପରେ ଆକ୍ରମଣ ଚଳାଇଥିଲେ । ସେତେବେଳେ ଦୁର୍ଗାଦାସ କୌଶଳରେ ଦୁଇରାଣୀ ଓ ଅଜିତଙ୍କୁ ନେଇ ରାତାରାତି ମାରବାରର ରାଜଧାନୀ ଯୋଧପୁର ଚାଲିଯାଇଥିଲେ । ଅଉରଙ୍ଗଜେବ ମାରବାର ଆକ୍ରମଣ ଲାଗି ଉଦ୍ୟତ ହେଲାବେଳକୁ ଅଜିତଙ୍କ ମାତାଙ୍କ କରୁଣ ନିବେଦନ ଓ ଅଉରଙ୍ଗଜେବଙ୍କ ହିନ୍ଦୁଦମନ ଅଭିଯାନରେ ଉତ୍ତ୍ୟକ୍ତ ହୋଇ ମେବାରର ରାଣା ରାଜସିଂହ ତାଙ୍କ ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ । ସେହି ସମୟରେ ଅଉରଙ୍ଗଜେବ ଉଦୟପୁର ଓ ଚିତୋର ଆକ୍ରମଣ କରି ବହୁ ହିନ୍ଦୁମନ୍ଦିର ଧ୍ୱଂସ କରିଦେଇଥିଲେ ଏବଂ ଯୁବରାଜ

ଆକବରଙ୍କ ହାତରେ ଚତୋର ଦାୟିତ୍ୱ ଛାଡ଼ଦେଇ ଆଜମୀର ବିଜୟ ଉଦ୍ଦେଶ୍ୟରେ ମନ ବଳାଇଥିଲେ । ସେତେବେଳେ ରାଜସିଂହ ମେବାର ଓ ମାରବାରର ମଧ୍ୟବର୍ତ୍ତୀ ସୀମାନ୍ତ ପାହାଡ଼ିଆ ଅଞ୍ଚଳରେ ଲୁଚି ରହି ଗରିଲା ଯୁଦ୍ଧ କୌଶଳଦ୍ୱାରା ମୋଗଲ ବାହିନୀକୁ ସନ୍ତ୍ରସ୍ତ କରି ପକାଇଥିଲେ ଏବଂ ୧୬୮୦ରେ ଯୁବରାଜ ଆକବର ପରାଜିତ ହୋଇଥିଲେ । ମେବାରର ପରାଜୟ ପାଇଁ ଅଉରଙ୍ଗଜେବ ଆକବରଙ୍କୁ ଦାୟୀ କରି ତାଙ୍କୁ ମେବାରରୁ ପ୍ରତ୍ୟାହୃତ କରି ଆଣିଥିଲେ । ସେଥିରେ ଉତ୍ତ୍ୟକ୍ତ ହୋଇ ସେ ମଧ୍ୟ ପିତାଙ୍କ ବିରୋଧରେ ରାଜପୁତମାନଙ୍କୁ ସମର୍ଥନ କରିଥିଲେ ।

ଅବଶେଷରେ ଜୁନ ୧୬୮୧ରେ ଅଉରଙ୍ଗଜେବ ରାଜସିଂହଙ୍କର ପୁତ୍ର ଓ ଉତ୍ତରାଧିକାରୀ ଜୟସିଂହଙ୍କ ସହିତ ଏକ ଚୁକ୍ତି ସ୍ୱାକ୍ଷରିତ କରି ପାଞ୍ଚ ସହସ୍ର ମୁଦ୍ରା କ୍ଷତିପୂରଣ ଦେଇ ମେବାରରୁ ମୋଗଲ ବାହିନୀ ଫେରାଇ ଆଣିବାକୁ ବାଧ୍ୟ ହୋଇଥିଲେ । ତଥାପି ସଂଗ୍ରାମର ଅବସାନ ଘଟି ନଥିଲା । ଦୀର୍ଘ ତିରିଶ ବର୍ଷପରେ ଅଉରଙ୍ଗଜେବଙ୍କ ଉତ୍ତରାଧିକାରୀ ବାହାଦୁର ସିଂହ ଅଜିତ ସିଂହଙ୍କୁ ମାରବାରର ରାଣା ରୂପେ ସ୍ୱୀକାର କଲା ପର୍ଯ୍ୟନ୍ତ ଦୁର୍ଦ୍ଧର୍ଷ ଦୁର୍ଗାଦାସ ବରାବର ମୋଗଲ ବାହିନୀକୁ ବ୍ୟତିବ୍ୟସ୍ତ କରିପକାଉଥିଲେ ।

## ମରହଟ୍ଟା ଜାଗରଣ

୧୭ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ମରହଟ୍ଟା ଶକ୍ତିର ଅଭ୍ୟୁଦୟ ଭାରତୀୟ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା । ସେତେବେଳେ ଅଉରଙ୍ଗଜେବ ଦାକ୍ଷିଣାତ୍ୟ ବିଜୟ ନିମିତ୍ତ ଉଦ୍ୟମୀ ଥିଲେ ଏବଂ ମରହଟ୍ଟା ଜାଗରଣ ଫଳରେ ତାହା ଦୁଷ୍କର ହୋଇ ଉଠିଥିଲା । ମରହଟ୍ଟା ଶକ୍ତି ଜାଗ୍ରତ ଓ ଏକତ୍ରିତ ହେବା ମୂଳରେ ଅନେକ କାରଣ ନିହିତ ଥିଲା । ମରହଟ୍ଟାମାନଙ୍କର ଆବାସ ସ୍ଥଳୀ ମହାରାଷ୍ଟ୍ରର ଭୌଗୋଳିକ ଅବସ୍ଥିତି ସେମାନଙ୍କୁ ଦୁର୍ଜେୟ ଯୋଦ୍ଧା ରୂପେ ଗଢ଼ିବାରେ ଖୁବ ସାହାଯ୍ୟ କରିଥିଲା । ଦକ୍ଷିଣରୁ ଉତ୍ତରକୁ ବିସ୍ତାରିତ ଶାୟାଦ୍ରି ପର୍ବତମାଳା ଓ ପୂର୍ବ-ପଶ୍ଚିମରେ ବିସ୍ତୃତ ସାତପୁରା ଓ ବିନ୍ଧ୍ୟ ଗିରିଶ୍ରେଣୀ ମହାରାଷ୍ଟ୍ରକୁ ପ୍ରାକୃତିକ ପ୍ରାଚୀର ରୂପେ ଅବରୁଦ୍ଧ କରି ରଖିଥିଲା ଏବଂ ଅନ୍ୟ ଦିଗରେ ତାପ୍ତି ଓ ନର୍ମଦା ନଦୀଦ୍ୱୟ ଦୁର୍ଗର ଗଡଖାଇ ସ୍ୱରୂପ ଥିଲା । ଏତଦ୍ଭିନ୍ନ ବନ୍ଧୁର ଅଲଂଘ୍ୟ ପାହାଡ଼ିଆ ଅଞ୍ଚଳ ସେମାନଙ୍କର ପ୍ରତିରକ୍ଷା ପାଇଁ ଅନୁକୂଳ ଥିଲା ଏବଂ ସେମାନଙ୍କୁ ସାହସୀ ଓ କଷ୍ଟ ସହିଷ୍ଣୁ

କରି ଗଢ଼ିଥିଲା । ମରହଟ୍ଟା ଶକ୍ତିର ଏକତା ମୂଳରେ ଭୌଗୋଳିକ କାରଣ ବ୍ୟତୀତ ଧାର୍ମିକ ପ୍ରେରଣା ବି ବ୍ୟାପୃତ ଥିଲା । ଅଉରଙ୍ଗଜେବଙ୍କର ହିନ୍ଦୁ-ବିରୋଧୀ କାର୍ଯ୍ୟକଳାପ ସେମାନଙ୍କୁ ଉତ୍ତେଜିତ କରିଥିଲା ଏବଂ ତାହା ସଙ୍ଗେ ସଙ୍ଗେ ଏକନାଥ, ନାମଦେବ ଓ ତୁକାରାମ ପ୍ରଭୃତି ଧର୍ମ ସଂସ୍କାରକମାନଙ୍କର ଆଦର୍ଶ ପ୍ରଚାରରେ ସେମାନେ ଅନୁପ୍ରାଣିତ ହୋଇଥିଲେ । ଏହା ବ୍ୟତୀତ, ସର୍ବସାଧାରଣଙ୍କର ବୋଧଗମ୍ୟ, ଲୋକପ୍ରିୟ, ଧାର୍ମିକ ଓ ଦେଶାତ୍ମବୋଧ ମୂଳକ ସାହିତ୍ୟ ସୃଷ୍ଟି ମହାରାଷ୍ଟ୍ରର ସନ୍ତାନମାନଙ୍କୁ ଐକ୍ୟବଦ୍ଧ କରିଥିଲା ।

ଛତ୍ରପତି ଶିବାଜୀଙ୍କର ଅଦ୍ଭୁତ ବ୍ୟକ୍ତିତ୍ୱ ବଳରେ ମରହଟ୍ଟା ଶକ୍ତି ଦୃଢ଼ ଭାବରେ ଏକଜୁଟ ହୋଇଥିଲା ସତ, କିନ୍ତୁ ତା ପୂର୍ବରୁ ଶିବାଜୀଙ୍କର ପିତା ଶାହଜୀ ଭୋନ୍‌ସଲେ ମାଲିକ ଅମ୍ବରଙ୍କ ସେନାବାହିନୀ, ଶାହଜହାନଙ୍କ ମୋଗଲ ବାହିନୀ ଓ ପରେ ବିଜାପୁର ସୁଲତାନଙ୍କର ପ୍ରତିରକ୍ଷା ବାହିନୀରେ ଅସାମାନ୍ୟ ସାହସିକତା ପ୍ରଦର୍ଶନ କରିଥିଲେ ଏବଂ ୧୬୩୬ରେ ନିଜାମ ଶାହି ଶାସନର ପତନ ଘଟାଇ ଅହମ୍ମଦ ନଗରରେ ଜଣେ ସର୍ଖୀ-କଣ୍ଢେଇ ରାଜାଙ୍କୁ ସ୍ଥାପନ କରିବାକୁ ଯାଇ ଏକ ଶାସକ-ସ୍ରଷ୍ଟାର ଭୂମିକା ଗ୍ରହଣ କରିଥିଲେ । ପୁନା ଓ କର୍ଣ୍ଣାଟକ ଠାରେ 'ଜାଗିର' ଉପଭୋଗ କରି ଶାହଜୀ ପ୍ରଥମେ ମହାରାଷ୍ଟ୍ରରେ 'ସ୍ୱରାଜ' ଚିନ୍ତାଧାରାର ବୀଜ ବପନ କରିଥିଲେ ଏବଂ ଶିବାଜୀ ପିତାଙ୍କ କୃତିତ୍ୱ ଦ୍ୱାରା ବିଶେଷ ମାତ୍ରାରେ ପ୍ରଭାବିତ ହୋଇଥିଲେ ।

## ଶିବାଜୀ (୧୬୨୭-୮୦)

ଶିବାଜୀ ୧୬୨୭ * ମସିହାରେ ଅହମ୍ମଦ ନଗର ନିକଟବର୍ତ୍ତୀ ଏକ ପାହାଡ଼ିଆ ରାଜ୍ୟରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ବାଲ୍ୟାବସ୍ଥାରେ ଶାହଜୀ ବିଜାପୁର ସୁଲତାନଙ୍କ ଅଧୀନରେ ନିଯୁକ୍ତି ପାଇ ଶିବାଜୀ ଓ ତାଙ୍କ ମାତା (ଶାହଜୀଙ୍କ ପତ୍ନୀ) ଜିଜାବାଈଙ୍କୁ ଜନୈକ ବ୍ରାହ୍ମଣ ଖଣ୍ଡଦେବଙ୍କ ତତ୍ତ୍ୱାବଧାନରେ ଛାଡ଼ି ଦେଇ ନିଜର ଦ୍ୱିତୀୟା ପତ୍ନୀଙ୍କ ସହ ଜାଗିର ଉପଭୋଗ କରିବା ପାଇଁ ଚାଲି ଯାଇଥିଲେ । ପତିଙ୍କ ଦ୍ୱାରା ପରିତ୍ୟକ୍ତା ଜିଜାବାଈ ପୁଅକୁ ଜଣେ ବୀର ପୁରୁଷ ରୂପେ ଗଢ଼ିବା ଉଦ୍ଦେଶ୍ୟରେ ବାଲ୍ୟ ବୟସରୁ ହିଁ ତାଙ୍କୁ ବିଭିନ୍ନ ବୀରତ୍ୱ

* କେତେକ ଐତିହାସିକଙ୍କ ମତରେ ଶିବାଜୀଙ୍କ ଜନ୍ମ ଖ୍ରୀଷ୍ଟାବ୍ଦ ୧୬୩୦; କିନ୍ତୁ ୧୬୨୭କୁ ଆଧୁନିକ ଗବେଷକମାନେ ଠିକ୍ ବୋଲି ଗ୍ରହଣ କରିଛନ୍ତି ।

ଓ କୃତିତ୍ୱପୂର୍ଣ୍ଣ କାହାଣୀ ଓ ଆଧ୍ୟାତ୍ମିକ ତତ୍ତ୍ୱ ସମ୍ବଳିତ ଗଳ୍ପାଦି ଶୁଣାଉଥିଲେ ଏବଂ ତାଙ୍କୁ ସ୍ୱଧର୍ମର ମହତ୍ତ୍ୱ ସମ୍ବନ୍ଧରେ ବୁଝାଉଥିଲେ । ମହାଦେବ ଗୋବିନ୍ଦ ରାନାଡ଼େଙ୍କ ଭାଷାରେ କହିବାକୁ ଗଲେ, "ଯଦି କୌଣସି ମହାମାନବ ତାଙ୍କ ମାତାଙ୍କ ପ୍ରେରଣା ବଳରେ ବଡ଼ ହୋଇ ପାରଥାନ୍ତି, ଶିବାଜୀଙ୍କ ଜୀବନ ଗଠନରେ ଜିଜାବାଈଙ୍କ ପ୍ରଭାବ ଏକ ପ୍ରଧାନ ଦୃଷ୍ଟାନ୍ତ ।" *

୧୬୪୬ରେ ଶିବାଜୀ ଯୌବନର ପ୍ରଥମ ପାଦରେ ହିଁ ବିଜାପୁର ସାମ୍ରାଜ୍ୟ ଅନ୍ତର୍ଗତ ତୋର୍ଣ୍ଣଦୁର୍ଗ ଅଧିକାର କରିଥିଲେ ଏବଂ ସେଠାରୁ ପାଞ୍ଚ ମାଇଲ ଦୂରରେ ରାଜଗଡ଼ ଦୁର୍ଗ ନିର୍ମାଣ କରିଥିଲେ । ତା ପରବର୍ଷ (୧୬୪୭) ଖଣ୍ଡଦେବଙ୍କ ତିରୋଭାବ ପରେ ସେ ଅଧିକ ଦୁଃସାହସିକ ପଦକ୍ଷେପମାନ ନେଇ ବହୁ ଦୁର୍ଗ ବିଜୟ କରିବା ସଙ୍ଗେ ସଙ୍ଗେ ରାୟଗଡ଼, ପ୍ରତାପଗଡ଼ ପ୍ରଭୃତି ଅନେକ ନୂତନ ଦୁର୍ଗ ଗଢ଼ି ଏକ ବିସ୍ତୃତ ଅଞ୍ଚଳରେ ନିଜର ପ୍ରଭୁତ୍ୱ ବିସ୍ତାର କରିଥିଲେ । ତାର ପରିଣାମରେ ବିଜାପୁର ସୁଲତାନ ଶିବାଜୀଙ୍କ ପିତାଙ୍କୁ ବନ୍ଦୀ କରିଥିଲେ ଏବଂ ପୁତ୍ର ଶିବାଜୀଙ୍କ ଆଚରଣ ସଂଯତ ନ ହେବା ପର୍ଯ୍ୟନ୍ତ ତାଙ୍କୁ ମୁକ୍ତ କରିବେ ନାହିଁ ବୋଲି ଦୃଢ଼ ରହିଥିଲେ । ସେଥିଯୋଗୁଁ ଶିବାଜୀ ୧୬୪୯ ଠାରୁ ୧୬୫୫ ପର୍ଯ୍ୟନ୍ତ ନିଷ୍କ୍ରିୟ ରହି ଶାହଜହାନଙ୍କ ସାହାଯ୍ୟରେ ପିତାଙ୍କୁ କାରାମୁକ୍ତ କରାଇଥିଲେ ।

ଏହାପରେ ୧୬୫୬ରେ ଶିବାଜୀ ଏକ କ୍ଷୁଦ୍ର ମରହଟ୍ଟା ଶାସିତ ସାମନ୍ତ ରାଜ୍ୟ ଜାବଲୀ ଅଧିକାର କରି ତା ପରବର୍ଷ ଅଉରଙ୍ଗଜେବ ବିଜାପୁର ଅଭିଯାନରେ ବ୍ୟସ୍ତ ଥିଲା ବେଳେ ଅହମ୍ମଦ ନଗର ଓ ଜୁନାର ଆକ୍ରମଣ କରି-ଥିଲେ । ମୋଗଲ ବାହିନୀ ଦ୍ୱାରା ସେ ପରାଜିତ ହୋଇଥିଲେ ମଧ୍ୟ ଅଉରଙ୍ଗ-ଜେବଙ୍କୁ ଶାହଜହାନଙ୍କ ରୋଗଗ୍ରସ୍ତ ହେବାର ସମ୍ବାଦ ପାଇ ଫେରିଯିବାକୁ ପଡ଼ିଥିବାରୁ ସେ ଶିବାଜୀଙ୍କ ସହିତ ଅଧିକ ସଂଘର୍ଷ ନକରି ରାଜିନାମା କରିବାକୁ ବାଧ୍ୟ ହୋଇଥିଲେ । ଏହାପରେ ଶିବାଜୀ ମହାରାଷ୍ଟ୍ରର ପଶ୍ଚିମ ଉପକୂଳସ୍ଥ କଂକଣ ରାଜ୍ୟର ଉତ୍ତରାଞ୍ଚଳ ଉପରେ ଆକ୍ରମଣ ଚଳାଇ ପ୍ରାୟ ସମସ୍ତ ଅଞ୍ଚଳ ନିଜର ଅଧୀନକୁ ଆଣିଥିଲେ ।

---

* ରାନାଡେଙ୍କ ପ୍ରଣୀତ "Rise of the Maratha power" ପୁସ୍ତକ (ପ୍ରଥମ ଭାଗ) ଦ୍ରଷ୍ଟବ୍ୟ ।

ଅଉରଙ୍ଗଜେବ ଦାକ୍ଷିଣାତ୍ୟ ଛାଡ଼ି ଚାଲିଯିବାପରେ ବିଜାପୁର ସୁଲତାନ ଶିବାଜୀଙ୍କୁ ଧ୍ୱଂସ କରିଦେବା ଉଦ୍ଦେଶ୍ୟରେ ୧୬୫୯ରେ ଅଫଜଲ ଖାଁଙ୍କ ନେତୃତ୍ୱରେ ଏକ ବିରାଟ ସେନାବାହିନୀ ପ୍ରେରଣ କରିଥିଲେ । କିନ୍ତୁ ନାନା ଉତ୍ତେଜନା ସୃଷ୍ଟି କରିବା ସତ୍ତ୍ୱେ ସେମାନେ ଶିବାଜୀଙ୍କୁ ଦୁର୍ଲଙ୍ଘ୍ୟ ପ୍ରତାପଗଡ଼ ଦୁର୍ଗରୁ ବାହାରକୁ ଆଣିପାରି ନଥିଲେ । ଶେଷରେ ଅଫଜଲ ଚକ୍ରାନ୍ତ କରି କୃଷ୍ଣାଜୀ ଭାସ୍କର ନାମକ ଜନୈକ ମରାଠୀ ବ୍ରାହ୍ମଣ ଦ୍ୱାରା ତାଙ୍କୁ ଏକ ସମ୍ମିଳନୀ ଉଦ୍ଦେଶ୍ୟରେ ନିମନ୍ତ୍ରଣ କରିଥିଲେ । କିନ୍ତୁ ଶିବାଜୀ ଉକ୍ତ ବ୍ରାହ୍ମଣଙ୍କ ଠାରୁ ଅଫଜଲଙ୍କ ପ୍ରକୃତ ଉଦ୍ଦେଶ୍ୟ ଜାଣିପାରି ସାଞ୍ଜୁ ଓ କରତ୍ରାଣ ପରିଧାନ କରି ତାଙ୍କୁ ଭେଟ କରିବାକୁ ଗଲେ ଏବଂ ଯେତେବେଳେ ଅଫଜଲ ତାଙ୍କୁ ଆଲିଙ୍ଗନ ପୂର୍ବକ ବର୍ଚ୍ଛା ଦ୍ୱାରା ଆଘାତ କଲେ ତାଙ୍କର କୌଣସି କ୍ଷତି ହୋଇ ନଥିଲା; ବରଂ, ଅନ୍ୟ ପକ୍ଷରେ, ସେ ବାଘନଖ (ଲୌହଦନ୍ତ) ସଂଯୋଜିତ କରତ୍ରାଣ ଦ୍ୱାରା ଅଫଜଲଙ୍କୁ ହତ୍ୟା କରିଥିଲେ ।

ଏହାପରେ ଶିବାଜୀ ଦକ୍ଷିଣ କଙ୍କଣ ଓ କୋହ୍ଲାପୁର ଉପରେ ଦୃଷ୍ଟି ନିକ୍ଷେପ କରିଥିଲେ । କିନ୍ତୁ ସେତେବେଳକୁ ଅଉରଙ୍ଗଜେବ ଶାଇସ୍ତା ଖାଁଙ୍କୁ ଦାକ୍ଷିଣାତ୍ୟର ଗଭର୍ଣ୍ଣର ନିଯୁକ୍ତ କରି ଶିବାଜୀଙ୍କୁ ଦମନ କରିବା ଦାୟିତ୍ୱ ଦେଇଥିଲେ ଏବଂ ଶାଇସ୍ତା ପୁନା ଅଧିକାର କରି କଲ୍ୟାଣ ଜିଲ୍ଲାରୁ ମରହଟ୍ଟା-ମାନଙ୍କୁ ବିତାଡ଼ିତ କରିଥିଲେ । ନିଜ ପିତାଙ୍କ ହସ୍ତକ୍ଷେପ ବଳରେ ବିଜାପୁର ସୁଲତାନଙ୍କ ସହିତ ଶାନ୍ତିଚୁକ୍ତି ନିଷ୍ପାଦନ କରିବା ଫଳରେ ଶିବାଜୀଙ୍କୁ ମୋଗଲମାନଙ୍କ ଉପରେ ପୂର୍ଣ୍ଣଦୃଷ୍ଟି ଦେବାକୁ ସୁଯୋଗ ମିଳିଥିଲା । ଶିବାଜୀ ଦୀର୍ଘ ଦୁଇବର୍ଷ କାଳ ଅବ୍ୟବସ୍ଥିତ ସଂଗ୍ରାମ ଚଳାଇଲା ପରେ ୧୬୬୩ ଏପ୍ରିଲ ୧୫ ତାରିଖ ରାତିରେ ସେ ଆକସ୍ମିକ ଭାବରେ ଶାୟିସ୍ତା ଖାଁଙ୍କ ଶିବିର ଉପରେ ଚଢ଼ାଉ କରି ତାଙ୍କ ପୁତ୍ର ଅବୁଲ ଫତଙ୍କ ସହିତ ପ୍ରାୟ ଅର୍ଦ୍ଧଶତ ରକ୍ଷୀଙ୍କୁ ନିହତ କରିଥିଲେ । ସେତେବେଳେ ଶାୟିସ୍ତା ଆହତାବସ୍ଥାରେ ପ୍ରାଣଧରି ପଳାଇ ଯାଇଥିଲେ । ଏହାପରେ ୧୬୬୪ ଜାନୁୟାରୀ ମାସରେ ଶିବାଜୀ ଅକ୍ଲେଶରେ ମୋଗଲ ସାମ୍ରାଜ୍ୟର ଏକ ବଣିଷ୍ଠ ନଗରୀ ସୁରାଟ ଆକ୍ରମଣ କରି ଅଜସ୍ର ଧନ ସମ୍ପତ୍ତି ଲୁଣ୍ଠନ କରି ନେଇଥିଲେ ।

ମୋଗଲ ବାହିନୀର ବାରମ୍ବାର ପରାଜୟରେ ଅପମାନିତ ଓ କ୍ଷୁବ୍ଧ ହୋଇ ଆଉରଙ୍ଗଜେବ ୧୬୬୫ରେ ଅମ୍ବରର ରାଜା ଜୟସିଂହ ଓ ଦିଲ୍ଲୀରଖାଁଙ୍କ

ଦାୟିତ୍ୱରେ ଏକ ବିଶାଳ ସେନାବାହିନୀ ଶିବାଜୀଙ୍କୁ ଦମନ କରିବା ଉଦ୍ଦେଶ୍ୟରେ ଦାକ୍ଷିଣାତ୍ୟକୁ ପ୍ରେରଣ କରିଥିଲେ । କୁଶଳୀ ଜୟସିଂହଙ୍କର କୂଟନୀତି ଦ୍ୱାରା ଶିବାଜୀ ସନ୍ଧି ପାଇଁ ସ୍ୱୀକୃତ ହୋଇଥିଲେ ଏବଂ ୧୬୬୫ରେ ହିଁ ପୁରନ୍ଦର ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ତାପରେ ସେ ସମ୍ରାଟଙ୍କ ପକ୍ଷ ସମର୍ଥନ କରି ବିଜାପୁର ବିରୋଧରେ ଯୁଦ୍ଧ ଯାତ୍ରା କରିଥିଲେ । ଜୟସିଂହଙ୍କର ସେହି ବିଜାପୁର ଅଭିଯାନ ବିଫଳ ହୋଇଥିଲା; ତଥାପି ସେ ନାନା ପ୍ରଲୋଭନ ଦର୍ଶାଇ ଶିବାଜୀଙ୍କୁ ଆଗ୍ରା ଦରବାରକୁ ନେଇ ଯାଇଥିଲେ । ସେଠାରେ ତାଙ୍କୁ ଅତି ସାଧାରଣ ଭାବରେ ସ୍ୱାଗତ କରାଯିବାରୁ ଓ ମାତ୍ର ପାଞ୍ଚ ହଜାର ସୈନ୍ୟଙ୍କ ଦାୟିତ୍ୱ ଦିଆଯିବାରୁ, ସେ ନିଜକୁ ଅପମାନିତ ମନେକରି ସମ୍ରାଟ ଅଉରଙ୍ଗଜେବଙ୍କ ବିରୋଧରେ ଦୃଢ଼ ଅଭିଯୋଗ କରିଥିଲେ ଏବଂ ତା ଫଳରେ ତାଙ୍କୁ ନଜରବନ୍ଦୀକରି ରଖାଯାଇଥିଲା । କିନ୍ତୁ ଖୁବ୍ ଚତୁରତାର ସହିତ ଶିବାଜୀ ନିଜର କାଳ୍ପନିକ ରୋଗର ମୁକ୍ତି ସକାଶେ ପ୍ରତ୍ୟହ ବ୍ରାହ୍ମଣମାନଙ୍କୁ ଫଳଦାନ କରିବା ବାହାନା କରି ଦିନେ ସେହି ଫଳଟୁଙ୍ଗି ଭିତରେ ବସି ମୋଗଲ ରକ୍ଷୀଙ୍କ ଆଖିରେ ଧୂଳିଦେଇ ନିଜକୁ କାରାମୁକ୍ତ କରି ଛଦ୍ମବେଶରେ ସ୍ୱଗୃହରେ ପହଞ୍ଚିଗଲେ ।

ତାପରେ ଅନ୍ତତଃ ତିନିବର୍ଷ (୧୬୬୭-୬୯) ପାଇଁ ସେ ମୋଗଲମାନଙ୍କର ବିରୁଦ୍ଧାଚରଣ ନକରି ନିଜର ଆଭ୍ୟନ୍ତରୀଣ ଶକ୍ତି ସମୃଦ୍ଧିରେ ମନଯୋଗ କରିଥିଲେ । ଏହାପରେ ୧୬୭୦ରେ ମୋଗଲ ବାହିନୀ ଉପରେ ଆକ୍ରମଣ କରି ପୁରନ୍ଦର ଚୁକ୍ତି ବଳରେ ସମର୍ପଣ କରିଥିବା ଦୁର୍ଗଗୁଡ଼ିକୁ ପୁନର୍ଦଖଲ କରିନେଇଥିଲେ । କେବଳ ସେତିକି ନୁହେଁ, ସୁରଟ ଉପରେ ପୁନର୍ବାର ଆକ୍ରମଣ କରି ଅନ୍ୟୂନ କୋଟିଏ ମୁଦ୍ରା ମୂଲ୍ୟର ଦ୍ରବ୍ୟ ଲୁଣ୍ଠନ କରିନେଇଥିଲେ ଏବଂ ପ୍ରତ୍ୟାବର୍ତ୍ତନ ମାର୍ଗରେ ନାସିକଠାରେ ମୋଗଲ ଜେନେରାଲ ଦାଉଦ ଖାଁଙ୍କ ପ୍ରତିରୋଧକୁ ଦୃଢ଼ ହସ୍ତରେ ଦମନ କରିଥିଲେ । ପ୍ରକୃତରେ ସେହି ପାଞ୍ଚ ବର୍ଷ (୧୬୭୦-୭୪) ଥିଲା ଶିବାଜୀଙ୍କ ପକ୍ଷରେ ଗୌରବାବହ ସମୟ । ଏହି ସମୟ ମଧ୍ୟରେ ସେ ସର୍ବତ୍ର ବିଜୟୀ ହୋଇଥିଲେ । ସର୍ବୋପରି ସେ ୧୬୭୪ରେ ନିଜକୁ ହିନ୍ଦୁ ରାଜା ରୂପେ ଅଭିଷେକ କରାଇ 'ଛତ୍ରପତି' ଉପାଧିରେ ମଣ୍ଡିତ ହୋଇଥିଲେ ଏବଂ ହିନ୍ଦୁ ବିରୋଧୀ ମୋଗଲ ସାମ୍ରାଜ୍ୟର ପ୍ରତିବାଦ ସ୍ୱରୂପ ଏକ ସାର୍ବଭୌମ ମରହଟ୍ଟା ରାଜ୍ୟ ପ୍ରତିଷ୍ଠା କରି ହିନ୍ଦୁ ସ୍ୱରାଜ୍ୟର ମୂଳଭିତ୍ତି ସ୍ଥାପନ କରିଥିଲେ ।

ଏହାପରେ ଶିବାଜୀ ଗୋଲକୁଣ୍ଡା ସୁଲତାନଙ୍କ ସହିତ ବନ୍ଧୁତା ସ୍ଥାପନକରି ଦାକ୍ଷିଣାତ୍ୟ ଅଭିଯାନରେ ବାହାରିଥିଲେ ଏବଂ ଜିଞ୍ଜି, ତାଞ୍ଜୋର, ଭେଟଲୋର ପ୍ରଭୃତି କର୍ଣ୍ଣାଟ ଅଞ୍ଚଳର ପ୍ରାୟ ଏକଶତ ଦୁର୍ଗ ଅଧିକାର କରିଥିଲେ । କିନ୍ତୁ ବିଧାତାର ଉପହାସରେ ସେ ତାହା ଉପଭୋଗ କରିନପାରି ୧୬୮୦ରେ ମୃତ୍ୟୁ ବରଣ କରିଥିଲେ । ସେତେବେଳକୁ ମାନ୍ଦ୍ରାଜର ବେଲାରୀ ଜିଲ୍ଲା ଓ ମହୀଶୂରର ବେଲଗାଁ ଓ ତୁଙ୍ଗଭଦ୍ରା ଉପତ୍ୟକା ସମେତ ସୁରଟର ରାମନଗର-ଠାରୁ ଆରମ୍ଭ କରି ଦାକ୍ଷିଣାତ୍ୟର କୋହ୍ଲାପୁର ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ତାଙ୍କର ଶାସନାଧୀନ ଥିଲା ।

## ଶିବାଜୀଙ୍କ ଶାସନ ପ୍ରଣାଳୀ

ଶିବାଜୀ କେବଳ ଜଣେ ଅପରାଜେୟ ଯୋଦ୍ଧା ଓ ରାଜ୍ୟ ବିଜେତା ନଥିଲେ, ତାହା ସଙ୍ଗେ ସଙ୍ଗେ ସେ ଥିଲେ ଜଣେ ମହାନ୍ ସଙ୍ଗଠକ ଓ ସୁଶାସକ । ତାଙ୍କର ଏକଛତ୍ରପତି ଶାସନରେ ହିନ୍ଦୁ ଆଦର୍ଶ ପ୍ରତିଫଳିତ ହୋଇଥିଲା ଏବଂ ସେ ସମସ୍ତ କ୍ଷମତାର ଆଧାର ଥିଲେ ସୁଦ୍ଧା 'ଅଷ୍ଟ ପ୍ରଧାନ' ( ଆଠଜଣିଆ ମନ୍ତ୍ରିପରିଷଦ)ଙ୍କ ପରାମର୍ଶ କ୍ରମେ ପରିଚାଳିତ ହେଉଥିଲେ । ସେମାନେ ଥିଲେ 'ପେଶବା' (ମୁଖ୍ୟମନ୍ତ୍ରୀ), ଅମାତ୍ୟ (ଅର୍ଥମନ୍ତ୍ରୀ), ମନ୍ତ୍ରୀ (ରାଜାଙ୍କର ବ୍ୟକ୍ତିଗତ ସହକାରୀ), ସଚିବ (ସଂଯୋଗମନ୍ତ୍ରୀ), ସାମନ୍ତ (ବୈଦେଶିକ ବ୍ୟାପାର ମନ୍ତ୍ରୀ), ସେନାପତି (ସେନାବାହିନୀର ମୁଖ୍ୟ), ଦାନାଧ୍ୟକ୍ଷ (ରାଜ ପୁରୋହିତ) ଓ ନ୍ୟାୟାଧୀଶ (ପ୍ରଧାନ ବିଚାରପତି) । ଅବଶ୍ୟ ମନ୍ତ୍ରିପରିଷଦର ମତ ନିର୍ଦ୍ଧାରଣ କ୍ଷମତା ନଥିଲା, ସେମାନେ ଥିଲେ କେବଳ ପରାମର୍ଶଦାତା ତଥା ଉପଦେଷ୍ଟା । ଶିବାଜୀ ତାଙ୍କର ରାଜ୍ୟକୁ ତିନୋଟି ପ୍ରଦେଶରେ ବିଭକ୍ତ କରିଥିଲେ ଏବଂ ପ୍ରତ୍ୟେକ ପ୍ରଦେଶର ମୁଖ୍ୟ ରୂପେ ଜଣେ ଜଣେ ରାଜପ୍ରତିନିଧି (Viceroy) ନିଯୁକ୍ତ ଥିଲେ । ପ୍ରଦେଶ ପ୍ରତିନିଧିମାନଙ୍କୁ ଶାସନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ମଧ୍ୟ 'ଅଷ୍ଟପ୍ରଧାନ' ରହିଥିଲେ ।

ରାଜସ୍ୱ ଆଦାୟ ନିମିତ୍ତ ସେ ରାଜ୍ୟକୁ ବହୁ ପ୍ରାନ୍ତ, ପର୍ଗଣା ଓ ଗ୍ରାମରେ ବିଭକ୍ତ କରିଥିଲେ । ଉତ୍ପାଦନର ଦୁଇପଞ୍ଚମାଂଶ ରାଜସ୍ୱ ଧାର୍ଯ୍ୟ ହୋଇଥିଲା ଏବଂ ତାହା କୃଷକମାନଙ୍କଠାରୁ ମୁଦ୍ରା ବା ଦ୍ରବ୍ୟ ଆକାରରେ ନିଆଯାଉଥିଲା । ଏତଦ୍‌ବ୍ୟତୀତ, ବିଜିତ ରାଜ୍ୟ ବା ଶତ୍ରୁମାନଙ୍କ ପ୍ରତି 'ଚଉଠ' ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଥିଲା । ମରହଟ୍ଟା ସୈନ୍ୟଙ୍କ ଆକ୍ରମଣରୁ ରକ୍ଷାପାଇବା ଲାଗି

ସେମାନେ ଉତ୍ପାଦନର ଏକଚତୁର୍ଥାଂଶ ରାଜସ୍ୱ ସ୍ୱରୂପ ଦେଉଥିଲେ ଏବଂ ଶିବାଜୀଙ୍କ ଦପ୍ତର ପାଇଁ ହୋଇ ରହୁଥିଲେ । ଏତଦ୍ବ୍ୟତୀତ ମହାରାଷ୍ଟ୍ରର ମୁଖ୍ୟ-ବ୍ୟକ୍ତି (Head man) ହିସାବରେ ସେ ଶତକଡ଼ା ଦଶଭାଗ ଅଧିକା ଶୁଳ୍କ 'ସରଦଶମୁଖୀ' ଆଦାୟ କରୁଥିଲେ ।

ଏହା ବ୍ୟତୀତ, ସୁଦକ୍ଷ ସାମରିକ ଶାସନ ପରଂପରା ସୃଷ୍ଟି କରିବା ଦିଗରେ ଶିବାଜୀଙ୍କର ଅବଦାନ ରହିଥିଲା । ତାଙ୍କର ସୈନ୍ୟବାହିନୀ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ ଥିଲା—ଅଶ୍ୱାରୋହୀ ଓ ପଦାତିକ । ସେମାନଙ୍କର ଏକାଗ୍ରତା ଅକ୍ଷୁର୍ଣ୍ଣ ରଖିବା ଉଦ୍ଦେଶ୍ୟରେ ସେ 'ଜାଗିର ପ୍ରଥା' ପରିବର୍ତ୍ତେ ନଗଦ ଦରମା ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ପୁଣି ସେନାବାହିନୀର ଦୃଢ଼ ଶୃଙ୍ଖଳା ଓ ନୈତିକତା ରକ୍ଷାଦିଗରେ ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ । ଦୁର୍ଗ ପ୍ରତିଷ୍ଠା ଓ ପରିଚାଳନା ଶିବାଜୀଙ୍କ ସାମରିକ ଶାସନର ସ୍ୱତନ୍ତ୍ର ଆକର୍ଷଣ । ତାଙ୍କ ରାଜ୍ୟସୀମା ମଧ୍ୟରେ ଶ୍ରେଷ୍ଠ ବଡ଼ ୨୮୦ ଗୋଟି ଦୁର୍ଗ ରହିଥିଲା ଏବଂ ପ୍ରତି ଦୁର୍ଗ ଦାୟିତ୍ୱରେ 'ହାବିଲ୍‌ଦାର' ପଦବୀର ଜଣେ ଜଣେ ସୈନିକ ନିଯୁକ୍ତ ଥିଲେ । ସର୍ବୋପରି, ଶିବାଜୀଙ୍କ ଶାସନ କାଳରେ ମହାରାଷ୍ଟ୍ରରେ ଜଳବାହିନୀର ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥିଲା ।

ଏକାଧାରରେ ଜଣେ ନିଷ୍ଠାପର ହିନ୍ଦୁ, ଦୁର୍ଦ୍ଦାନ୍ତ ଯୋଦ୍ଧା ଓ ଦୃଢ଼ ଶାସକ ହିସାବରେ ଶିବାଜୀଙ୍କର ବ୍ୟକ୍ତିତ୍ୱ ଥିଲା ଅନନ୍ୟ ସାଧାରଣ । ନିଜର ଅନୁଗାମୀମାନଙ୍କ ମଧ୍ୟରେ ଜାତୀୟ ଭାବନା ଉଦ୍ରେକ କରି ଏକ ନବଜାଗରଣ ଆଣି ଅଷ୍ଟାଦଶ ଶତାବ୍ଦୀ ଭାରତରେ ଦୁର୍ଦ୍ଧର୍ଷ ମରହଟ୍ଟା ଶକ୍ତି ସଂସ୍ଥାପନା କରିବା ଦୃଷ୍ଟିରୁ ସେ ଯଥାର୍ଥରେ 'ଜାତି ନିର୍ମାତା' ଆଖ୍ୟା ପାଇଛନ୍ତି ।

## ଶିବାଜୀଙ୍କ ଉତ୍ତରାଧିକାରୀଗଣ

ଶିବାଜୀଙ୍କ ପରେ ତାଙ୍କ ଜ୍ୟେଷ୍ଠପୁତ୍ର ଶମ୍ଭୁଜୀ କନୌଜର ଜନୈକ ମତିହୀନ ବ୍ରାହ୍ମଣ କବି କୈଳାସଙ୍କ ପରାମର୍ଶ କ୍ରମେ ସମ୍ଭୋଗବିଳାସୀ ହୋଇ-ପଡ଼ିଥିଲେ ସୁଦ୍ଧା ଦାକ୍ଷିଣାତ୍ୟର ଅବସ୍ଥାପିତ ମୋଗଲ୍ ବାହିନୀ ସହିତ ଅସାମାନ୍ୟ ସାହସର ସହିତ ଦୀର୍ଘକାଳ ସଂଗ୍ରାମ ଚଳାଇଥିଲେ । କିନ୍ତୁ ଅବଶେଷରେ ୧୬୮୯ ଫେବୃୟାରୀ ୧୧ ତାରିଖରେ ରତ୍ନଗିରିଠାରୁ ୨୨ ମାଇଲ ଦୂରବର୍ତ୍ତୀ ସଙ୍ଗମେଶ୍ୱରଠାରେ ଦୁର୍ଦ୍ଦାନ୍ତ ମୋଗଲ ସେନାପତି ମୁକର୍ରବ ଖାଁଙ୍କ ହାତରେ

**ବନ୍ଦୀ** ହୋଇ ସେ ମାର୍ଚ୍ଚ ୧୧ ତାରଖରେ ମୃତ୍ୟୁଦଣ୍ଡ ଭୋଗିଥିଲେ । ଶମ୍ଭୁଜୀଙ୍କ ପତ୍ନୀ ଓ ଶିଶୁପୁତ୍ର ଶାହୁଜୀଙ୍କୁ ମଧ୍ୟ ଅନୁରୂପ ଦଶା ଭୋଗିବାକୁ ପଡ଼ିଥିଲା । ସେତେବେଳେ ମରହଟ୍ଟା ଶକ୍ତି କ୍ଷଣକାଳ ପାଇଁ ଅସ୍ତମିତ ହେଲଭଳି ପ୍ରତୀତ ହୋଇଥିଲେ ମଧ୍ୟ ଆତ୍ମଗୋପନ କରି ଚାଲିଯାଇଥିବା ଶମ୍ଭୁଜୀଙ୍କର ବୈମାତ୍ରେୟ ଭ୍ରାତା ରାଜାରାମଙ୍କ ସଙ୍ଗଠିତ ନେତୃତ୍ୱ ଆଗରେ ମୋଗଲ ବାହିନୀ ଖୁବ୍ ଶୀଘ୍ର ପୁଣି ଦୁଃସମୟର ସମ୍ମୁଖୀନ ହୋଇଥିଲା ।

ରାଜାରାମଙ୍କ ବ୍ୟତୀତ ମହାରାଷ୍ଟ୍ରର ନେତା ରାମଚନ୍ଦ୍ର ପନ୍ଥ, ଶଙ୍କରଜୀ ମାଲହାର୍ ଓ ପର୍ଶୁରାମ ତ୍ରିମ୍ବକ; କର୍ଣ୍ଣାଟକର ପ୍ରତିନିଧି ପ୍ରହଲ୍ଲାଦ ନୀରଜୀ **ଏବଂ ଦୁଇଜଣ** ଦୁର୍ଦ୍ଧର୍ଷ ମରହଟ୍ଟା ଜେନେରାଲ୍ ଶାନ୍ତାଜୀ ଓ ଧନଜୀ ମଧ୍ୟ ଅପହୃତ ମରହଟ୍ଟା ଅଞ୍ଚଳର ପୁନରୁଦ୍ଧାର ଦିଗରେ ସଫଳ ଉଦ୍ୟମ କରିଥିଲେ । ମୋଗଲମାନଙ୍କର ତତ୍କାଳୀନ ଅବସ୍ଥା ସମ୍ବନ୍ଧରେ ସାର୍ ଯଦୁନାଥ ସରକାର ଯଥାର୍ଥରେ କହିଛନ୍ତି—"ମୋଗଲ ଶାସନ ପ୍ରକୃତରେ ଧ୍ୱଂସ ପାଇଥିଲା । ସମ୍ରାଟଙ୍କର ଉପସ୍ଥିତି ଥିଲା ଏକ ଭ୍ରାନ୍ତିମୟ ପ୍ରେତମୂର୍ତ୍ତି (a delusive phantom) ମାତ୍ର । 'ଶାନ୍ତା' ଓ 'ଧନା' ଥିଲେ ସେ ଯୁଗର ବୀର । ସେମାନେ ହିଁ ଥିଲେ ସମସ୍ତ ପ୍ରେରଣାର ଆଧାର ଏବଂ ମୋଗଲ ଶାସକମାନଙ୍କର ପ୍ରତ୍ୟେକ ଯୋଜନା, ଗଣନା ଓ ଷଡ଼ଯନ୍ତ୍ରକୁ ଭଣ୍ଡୁର କରିଦେଉଥିଲେ ।"*

ଖ୍ରୀ: ୧୭୦୦ରେ ରାଜାରାମଙ୍କ ମୃତ୍ୟୁପରେ ତାଙ୍କ ବିଧବା ପତ୍ନୀ ତାରାବାଈ ମରହଟ୍ଟା-ଜାତୀୟତା-ପ୍ରଦୀପକୁ ପ୍ରଦୀପିତ ରଖିଥିଲେ ଏବଂ ଅସାମାନ୍ୟ ବୀରତ୍ୱ ଓ ଅଦ୍‌ଭୁତ କୌଶଳ ବଳରେ ମାଳବ, ମଣ୍ଡସର, ବେରାର, ଗୁଜରାଟ, ବରୋଦା ପ୍ରଭୃତି ପ୍ରଧାନ ଅଞ୍ଚଳମାନ ଦଖଲକରି ମୋଗଲବାହିନୀକୁ ସନ୍ତ୍ରସ୍ତ ଓ ପରାହତ କରିଥିଲେ । ଅଉରଙ୍ଗଜେବଙ୍କର ଜାଗ୍ରତ ମରହଟ୍ଟା ଶକ୍ତିକୁ ଦମନ କରିବା ଅଭିଳାଷ କେବଳ ବ୍ୟର୍ଥ ହୋଇ ନଥିଲା, ତାଙ୍କର ଅଯୋଗ୍ୟ ଉତ୍ତରାଧିକାରୀମାନେ ମଧ୍ୟ ତାର ପ୍ରତିରୋଧ କରିବାକୁ ସମର୍ଥ ହୋଇନଥିଲେ ।

---

* 'An Advanced History of India' (୧୯୬୭) ପୁସ୍ତକର ୫୧୭ପୃଷ୍ଠାରୁ ଉଦ୍ଧୃତ ସାର୍ ଯଦୁନାଥ ସରକାରଙ୍କ ମନ୍ତବ୍ୟ ଦ୍ରଷ୍ଟବ୍ୟ ।

## ଅଉରଙ୍ଗଜେବଙ୍କର ଉତ୍ତରାଧିକାରୀଗଣ

ଅଉରଙ୍ଗଜେବଙ୍କର ମୃତ୍ୟୁପରେ ତାଙ୍କର ତିନି ପୁତ୍ର † ଆଜମ୍, ମୁଜାମ୍ ଓ ମହମ୍ମଦ କାମ୍‌ଙ୍କ ମଧ୍ୟରେ ଦିଲ୍ଲୀ ସିଂହାସନ ପାଇଁ ସଶସ୍ତ୍ର ସଂଘର୍ଷ ସଂଘଟିତ ହୋଇଥିଲା ଏବଂ ମୁଜାମ୍ ନିଜର ବିବାଦୀ ଭ୍ରାତା ଦ୍ୱୟଙ୍କୁ ନିହତ ଓ ପରାହତ କରି 'ବାହାଦୁର ଶାହ' ଉପାଧି ଗ୍ରହଣ ପୂର୍ବକ ସିଂହାସନ ଆରୋହଣ କରିଥିଲେ । ମାତ୍ର ଗ୍ଟରିବର୍ଷ ଗାଦିରେ ବସିଲା ପରେ ୧୭୧୨ ମସିହା ଫେବୃୟାରୀ ମାସରେ ସେ ମୃତ୍ୟୁବରଣ କଲେ ଏବଂ ତାଙ୍କର ଗ୍ଟରିପୁତ୍ର ମଧ୍ୟରେ ଅନୁରୂପ ସଂଘର୍ଷର ସୂତ୍ରପାତ ହୋଇଥିଲା । ସେଥିରେ ଜହାନ୍ଦାର ଶାହ ଜୁଲ୍‌ଫିକର୍ ଖାଁଙ୍କ ସାହାଯ୍ୟରେ ନିଜର ତିନିଭାଇ ଅଜିମ୍-ଉସ୍-ସାନ୍, ଜହାନ୍ ଶାହ ଓ ରଫି-ଉସ୍-ସାନ୍‌ଙ୍କୁ ନିହତକରି ବିଜୟୀ ହୋଇଥିଲେ ଏବଂ ନିଜେ ସମ୍ରାଟ ସାଜି ଜୁଲ୍‌ଫିକର୍‌ଙ୍କୁ ପ୍ରଧାନମନ୍ତ୍ରୀ ଆସନ ଅର୍ପଣ କରିଥିଲେ । ଲାଲକୁମାରୀ ନାମ୍ନୀ ଜନୈକା ରୂପସୀର ପ୍ରେମରେ ବଶୀଭୂତ ହୋଇ ବିଳାସ ବ୍ୟସନରେ ଗୋଟିଏ ବର୍ଷ ଅତିବାହିତ ନକରୁଣୁ ସେ ନିଜର ଭ୍ରାତୁଷ୍ପୁତ୍ର (ଅଜିମ୍-ଉସ୍-ସାନଙ୍କ ପୁତ୍ର) ଫରୁକ୍ ସାୟାର୍‌ଙ୍କ ଦ୍ୱାରା ସିଂହାସନ ଚ୍ୟୁତ ହୋଇଥିଲେ ।

ଫରୁକ୍‌ସାୟାର ଆଲ୍ଲାହାବାଦର ଗଭର୍ଣ୍ଣର ସୟଦ ଅବଦୁଲ୍ଲା ଖାଁ ଓ ପାଟନାର ଗଭର୍ଣ୍ଣର ସୟଦ ହୁସେନ ଅଲ୍ଲିଙ୍କ ସହାୟତାରେ ସିଂହାସନ ଲାଭ କରିଥିବାରୁ ସେ ତାଙ୍କୁ ଯଥାକ୍ରମେ ପ୍ରଧାନମନ୍ତ୍ରୀ ଓ ମୁଖ୍ୟ ସେନାଧ୍ୟକ୍ଷ ରୂପେ ନିଯୁକ୍ତ ଦେଇଥିଲେ । କିନ୍ତୁ ଅଳ୍ପକାଳ ମଧ୍ୟରେ ସୟଦ ଭ୍ରାତାଦ୍ୱୟ ଅତ୍ୟଧିକ ପ୍ରଭାବ ବିସ୍ତାର କରିବା ଯୋଗୁଁ ଫରୁକ୍‌ସାୟାର ମୀର୍ ଜୁମ୍ଲାଙ୍କୁ ନିଜର ବିଶ୍ୱସ୍ତ ରୂପେ ନିଯୁକ୍ତକରି ଅବଦୁଲ୍ଲା ଓ ହୁସେନ୍ ଅଲ୍ଲିଙ୍କ ପ୍ରାଧାନ୍ୟ ଖର୍ବ କରିବା ଉଦ୍ଦେଶ୍ୟରେ ବିଭିନ୍ନ ଷଡ଼ଯନ୍ତ୍ର ଆରମ୍ଭ କଲେ । ଅବଶ୍ୟ ତାର ପରିଣାମ ବିପରୀତ ହୋଇଥିଲା ଏବଂ ସୟଦ ଭ୍ରାତାଙ୍କର ବିଶ୍ୱାସଭାଜନ ହେବା-ପାଇଁ ତାଙ୍କୁ ମୀର ଜମ୍ଲାଙ୍କୁ ବରଖାସ୍ତ କରିବାକୁ ପଡ଼ିଥିଲା । ତଥାପି ଫରୁକ୍‌ସାୟାର ସେମାନଙ୍କ ବିରୋଧରେ ନିଜର ଗୁପ୍ତ ଷଡ଼ଯନ୍ତ୍ର ଅବ୍ୟାହତ ରଖିଥିଲେ ଏବଂ ତାର ତୀବ୍ର ପ୍ରତିକ୍ରିୟାର ଫଳ ସ୍ୱରୂପ ହୁସେନ୍ ଅଲ୍ଲି ମରହଟ୍ଟା

† ଅଉରଙ୍ଗଜେବଙ୍କର ଅନ୍ୟ ଦୁଇପୁତ୍ର ମହମ୍ମଦ ସୁଲତାନ ଓ ଆକବର ଯଥାକ୍ରମେ ୧୬୭୬ ଓ ୧୭୦୪ରେ ମୃତ୍ୟୁ ଲଭି ସାରିଥିଲେ ।

ବାହ୍ମମୀର ସାହାଯ୍ୟ ନେଇ ତାଙ୍କୁ ଗାଦିଚ୍ୟୁତ କରି ନିର୍ମମ କାରାଦେଶ ପୂର୍ବକ ୧୭୧୯ରେ ମୃତ୍ୟୁ ମୁଖକୁ ଠେଲି ଦେଇଥିଲେ ।

ଏହାପରେ 'ସମ୍ରାଟ-ସ୍ରଷ୍ଟା' ସୟଦ ଭ୍ରାତାଦ୍ୱୟ ନିଜର ଆଧିପତ୍ୟ ବିସ୍ତାର କରିବା ଉଦ୍ଦେଶ୍ୟରେ ରଫି ଉଦ୍ଦର୍ଜା ଓ ରଫି ଉଦ୍ଦୌଲାଙ୍କୁ ସିଂହାସନରେ ଅଧିଷ୍ଠିତ କରାଇଥିଲେ । କିନ୍ତୁ ଅଳ୍ପ କେତେ ମାସ ଭିତରେ ସେ ଦୁହେଁ ମୃତ୍ୟୁ ବରଣ କରିବାରୁ ସେମାନେ ବାହାଦୁର ଶାହଙ୍କର ପୌତ୍ର ରୋଶାନ୍ ଅକତାରଙ୍କୁ ମହମ୍ମଦ ଶାହ ଉପାଧିରେ ଭୂଷିତ କରି ସିଂହାସନ ଅର୍ପଣ କରିଥିଲେ । କିନ୍ତୁ ମହମ୍ମଦ ଶାହ ସୟଦ ଭ୍ରାତା ଦ୍ୱୟଙ୍କର ପ୍ରାଧାନ୍ୟ ସ୍ୱୀକାର ନକରି ଅପରପକ୍ଷର ସମର୍ଥନ କରିଥିଲେ । ମହମ୍ମଦଙ୍କ ସିଂହାସନାରୋହଣର ଅଳ୍ପ କାଳ ମଧ୍ୟରେ ହୁସେନ୍ ଅଲ୍ଲି ନିର୍ମମ ଭାବରେ ନିହତ ହୋଇଥିଲେ ଏବଂ ତାଙ୍କ ଭ୍ରାତା ଅବଦୁଲ୍ଲା ରଫି ଉଦ୍ଦୌଲାଙ୍କ ଭ୍ରାତା ମହମ୍ମଦ ଇବ୍ରାହିମଙ୍କୁ ସିଂହାସନାସୀନ କରିବାକୁ ଯାଇ କାରାବରଣ କରିଥିଲେ ।

ସୟଦ ଭ୍ରାତାଙ୍କର ଅପସାରଣ ପରେ ମଧ୍ୟ ତାଙ୍କ ସାମ୍ରାଜ୍ୟରେ କୌଣସି ଉନ୍ନତି ଘଟି ନଥିଲା; ବରଂ ତାଙ୍କ ନିଷ୍କର୍ମତା ଓ ବିଳାସପ୍ରିୟତାର ସୁଯୋଗ ନେଇ ମରହଟ୍ଟା, ଜାଠ, ଶିଖ ଓ ଆଫଗାନ୍‌ମାନେ ମୋଗଲ ସାମ୍ରାଜ୍ୟର ବହୁ ଅଞ୍ଚଳ ଅଧିକାର କରି ନେଇଥିଲେ । ଦାକ୍ଷିଣାତ୍ୟ, ବଙ୍ଗ ଓ ଅଉଧରୁ ତାଙ୍କ ଆଧିପତ୍ୟ ଲୋପ ପାଇଲା; ସବଳ ମରହଟ୍ଟାମାନେ ପ୍ରଭୁତ୍ୱ ବିସ୍ତାର କଲେ; ଆଗ୍ରା ନିକଟସ୍ଥ ଜାଠମାନେ ତାଙ୍କ ଅଞ୍ଚଳର ସ୍ୱାଧୀନତା ଘୋଷଣା କଲେ, ଆଫଗାନ୍‌ମାନେ ରୋହିଲଖଣ୍ଡ ରାଜ୍ୟ ପ୍ରତିଷ୍ଠା କଲେ; ପଞ୍ଜାବରେ ଶିଖମାନେ ସକ୍ରିୟ ହୋଇ ଉଠିଲେ । ଏହିଭଳି ଅଉରଙ୍ଗଜେବଙ୍କ ତିରୋଧାନର ତୃତୀୟ ଦଶକ ସୁଦ୍ଧା ମୋଗଲ ସାମ୍ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇ ଯାଇଥିଲା ଏବଂ ତାହା ପାରସ୍ୟ ସମ୍ରାଟ ନାଦିର ଶାହଙ୍କର ଲୋଲୁପ ଦୃଷ୍ଟି ଆକର୍ଷଣ କରିଥିଲା ।

## ନାଦିରଶାହଙ୍କ ଆକ୍ରମଣ

ନାଦିରଶାହ ଜଣେ ସାଧାରଣ ତୁର୍କି ବଂଶୋଦ୍ଭବ ପାର୍ସିୟାନ୍ ହେଲେ ମଧ୍ୟ ନିଜର ସାମରିକ ନୈପୁଣ୍ୟ ବଳରେ ପେର୍ସିଆକୁ ଆଫଗାନ୍‌ମାନଙ୍କ କବଳରୁ ମୁକ୍ତକରି ୧୭୩୬ରେ ପାରସ୍ୟ ସିଂହାସନ ଅଧିକାର କରିଥିଲେ ଏବଂ

ତାର ଦୁଇ ବର୍ଷପରେ କାନ୍ଦାହାରକୁ ମଧ୍ୟ ନିଜ ଦଖଲକୁ ଆଣିଥିଲେ । ସେତେ-ବେଳେ ପତନୋନ୍ମୁଖୀ ମୋଗଲ ସାମ୍ରାଜ୍ୟର ଅବସ୍ଥା ଦେଖି ସେ ଭାରତ ଆକ୍ରମଣ ଲାଗି ମନସ୍ଥ କଲାବେଳକୁ କାନ୍ଦାହାର ଛାଡ଼ି ଆସିଥିବା ଶରଣାର୍ଥୀ-ମାନଙ୍କୁ ଆଶ୍ରୟ ଦେଇ ଏବଂ ନାଦିରଶାହଙ୍କର ଉତ୍ସଙ୍କାନ୍ତୀୟ ପ୍ରତିବାଦକୁ ଭ୍ରୂକ୍ଷେପ ନକରି ମହମ୍ମଦଶାହ ପାରସ୍ୟ ସମ୍ରାଟଙ୍କୁ ୧୭୩୮ରେ ଭାରତ ଆକ୍ରମଣ ପାଇଁ ସୁଯୋଗ ଯୋଗାଇ ଦେଇଥିଲେ ।

ନାଦିରଶାହ ପ୍ରଥମେ ଆଫଗାନିସ୍ଥାନରେ ପ୍ରବେଶ କରି କାବୁଲ ଓ ଘଜନୀ ଅଧିକାର କଲାପରେ ପେଶାଓ୍ୱାର, ପଞ୍ଜାବ, ଲାହୋର, କର୍ଣ୍ଣାଲ * ପ୍ରଭୃତି ଦଖଲକୁ ଆଣି ଦିଲ୍ଲୀ ଉପରେ ଆକ୍ରମଣ ଚଳାଇଥିଲେ । ମୋଗଲ ବାହିନୀର ଶୋଚନୀୟ ପରାଜୟରେ ବିବ୍ରତ ହୋଇ ମହମ୍ମଦଶାହ ସନ୍ଧି ସ୍ଥାପନ ଲାଗି ବ୍ୟଗ୍ର ହୋଇ ଉଠିଥିଲେ । କିନ୍ତୁ ନାଦିରଶାହ ସେଥିପାଇଁ ପ୍ରସ୍ତୁତ ହେବା ପୂର୍ବରୁ ଦୁର୍ବୃତ୍ତଙ୍କ ହସ୍ତରେ ସେ ନିହତ ହେଲେ ବୋଲି ଗୋଟିଏ ମିଥ୍ୟା ଗୁଜବ ପ୍ରଚ୍ଛର ହୋଇଯିବା ଯୋଗୁଁ ସହରବାସୀ ପାରସ୍ୟ ସୈନ୍ୟମାନଙ୍କୁ ହତ୍ୟା କରିବା ଆରମ୍ଭ କରିନେଲେ ଏବଂ ନିଜ ସୈନ୍ୟମାନଙ୍କର ଶୋଚନୀୟ ଅବସ୍ଥା ଦେଖି ନାଦିରଶାହ ଦିଲ୍ଲୀ ଲୁଣ୍ଠନ ଲାଗି ଆଦେଶ ଦେଇ ମାତ୍ର ନ'ଘଣ୍ଟା ମଧ୍ୟରେ ସମଗ୍ର ନଗରୀକୁ ଏକ ଶ୍ମଶାନରେ ପରିଣତ କରିଦେଲେ । ଅବଶ୍ୟ, ପରେ ମହମ୍ମଦ ଶାହଙ୍କ ହସ୍ତକ୍ଷେପ ଫଳରେ ସେ ସେଥିରୁ ନିବୃତ୍ତ ହୋଇଥିଲେ । ତଥାପି ଭାରତରେ ମାତ୍ର ୫୨ ଦିନର ଅବସ୍ଥାନ ପରେ ସେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲାବେଳକୁ ଅନ୍ୟୂନ ୧୫ କୋଟି ମୁଦ୍ରା, ତିନିଶତ ହସ୍ତୀ, ସହସ୍ରାଧିକ ଅଶ୍ୱ ଓ ଉଷ୍ଟ୍ର ସମେତ ପୃଥିବୀ ବିଖ୍ୟାତ ମୟୂର ସିଂହାସନ, କୋହିନୂର ହୀରାଖଣ୍ଡ ଓ କେତେକ ଦୁର୍ଲଭ ପାଣ୍ଡୁଲିପି ନେଇ ଯାଇଥିଲେ ।

ଏହି ପରେ ମହମ୍ମଦ ଶାହ ଆହୁରି ନ'ବର୍ଷ ରାଜତ୍ୱ କରିଥିଲେ ସୁଦ୍ଧା ମୋଗଲ ଶକ୍ତିକୁ ସଙ୍ଗଠିତ କରିପାରି ନଥିଲେ । ତାଙ୍କ ପରେ ଅହମ୍ମଦ ଶାହ (୧୭୪୮—୫୪), ଦ୍ୱିତୀୟ ଆଲମଗିର (୧୭୫୪—୫୯), ଦ୍ୱିତୀୟ ଶାହ ଆଲମ (୧୭୫୯—୧୮୦୬), ଦ୍ୱିତୀୟ ଆକବର (୧୮୦୬—୩୭) କ୍ରମ୍ଯା

* ପାନିପଥ ଠାରୁ ୨୦ ମାଇଲ ଉତ୍ତରରେ ଅବସ୍ଥିତ ।

ତାଙ୍କ ପୁତ୍ର ଦ୍ୱିତୀୟ ବାହାଦୁର ଶାହ † କେହିହେଲେ ମୋଗଲ ସାମ୍ରାଜ୍ୟକୁ ଧ୍ୱଂସ ମୁଖରୁ ରକ୍ଷା କରିପାରିନଥିଲେ । ସଂକ୍ଷେପରେ ପ୍ରକାଶ କଲେ, ନାଦିର ଶାହାଙ୍କ ଆକ୍ରମଣ ଫଳରେ ମୋଗଲ ସାମ୍ରାଜ୍ୟର ମେରୁଦଣ୍ଡ ଭାଙ୍ଗି ଯାଇଥିଲା ।

## ମରହଟ୍ଟା ଶାସନର ଶେଷାବସ୍ଥା

ଅଷ୍ଟାଦଶ-ଶତାବ୍ଦୀ ଭାରତରେ ମ୍ରିୟମାଣ ମୋଗଲ ସାମ୍ରାଜ୍ୟର ପତନାବସ୍ଥାର ସୁଯୋଗ ନେଇ ନିଜର ଆଧିପତ୍ୟ ବିସ୍ତାର କରିବା ନିମନ୍ତେ ଶିଖ, ରାଜପୁତ ପ୍ରଭୃତି ହିନ୍ଦୁ ଶକ୍ତିମାନେ ଯେଉଁ ଉଦ୍ୟମ କରିଥିଲେ ସେମାନଙ୍କ ମଧ୍ୟରେ ମରହଟ୍ଟାମାନଙ୍କ ଅବଦାନ ବିଶେଷ ଉଲ୍ଲେଖ ଯୋଗ୍ୟ । ଯେତେବେଳେ ସମ୍ରାଟ ଅଉରଙ୍ଗଜେବଙ୍କର ପରଲୋକ ଘଟିଲା ତାଙ୍କ ପୁତ୍ର ଆଜମ୍‌ଶାହ ଜୁଲଫିକର ଖାଁଙ୍କ ପରାମର୍ଶ କ୍ରମେ ମରହଟ୍ଟାମାନଙ୍କ ମଧ୍ୟରେ ଗୃହଯୁଦ୍ଧ ଲଗାଇ ଦେବା ଉଦ୍ଦେଶ୍ୟରେ ଶାହୁଜୀଙ୍କୁ କାରାମୁକ୍ତ କରିଦେଇଥିଲେ । ଏହା ଫଳରେ ମରହଟ୍ଟା ସିଂହାସନ ନିମିତ୍ତ ଶାହୁଜୀ ଓ ତାରାବାଈଙ୍କ ମଧ୍ୟରେ ଗୃହଯୁଦ୍ଧର ସୂତ୍ରପାତ ହୋଇଥିଲା ସତ, କିନ୍ତୁ କଙ୍କଣ ରାଜ୍ୟର ଜନୈକ ବ୍ରାହ୍ମଣ ବାଲାଜୀ ବିଶ୍ୱନାଥଙ୍କ ସହାୟତାରେ ଶାହୁଜୀ ବିଜୟ ହାସଲ କରିଥିଲେ ଏବଂ ମରହଟ୍ଟା-ଶକ୍ତି ଦୃଢ଼ୀଭୂତ ହୋଇଥିଲା ।

ବାଲାଜୀ ବିଶ୍ୱନାଥ ପ୍ରଥମେ ୧୭୦୮ରେ ଶାହୁଜୀଙ୍କ ସେନାପତି ଧନାଜୀଙ୍କ ଅଧୀନରେ ଜଣେ ସାଧାରଣ କିରାଣୀ ଭାବରେ ଯୋଗଦେଇ ତାଙ୍କ ମୃତ୍ୟୁ ପରେ ଧନାଜୀଙ୍କ ପୁତ୍ର ଚନ୍ଦ୍ରସେଣାଙ୍କ ଦ୍ୱାରା ୧୭୧୨ରେ ସେନାଧ୍ୟକ୍ଷ ଭାବରେ ନିଯୁକ୍ତି ପାଇଥିଲେ ଏବଂ ତା ପରବର୍ଷ ତାଙ୍କର ପେଶୱା ବା ପ୍ରଧାନମନ୍ତ୍ରୀ ରୂପେ ନିଯୁକ୍ତ ହୋଇଥିଲେ । ଧନାଜୀଙ୍କ ଅସାମାନ୍ୟ ବ୍ୟକ୍ତିତ୍ୱ ଓ ବିଚକ୍ଷଣ ବୁଦ୍ଧି ବଳରେ ଶାହୁଜୀ ମୋଗଲ ବାଦଶାହ ହୁସେନ୍ ଅଲ୍ଲିଙ୍କ ସହିତ ସନ୍ଧିକରି ଦାକ୍ଷିଣାତ୍ୟରେ ମରହଟ୍ଟା ଆଧିପତ୍ୟ ବିସ୍ତାର କରିଥିଲେ ଏବଂ ହାଇଦ୍ରାବାଦ, କର୍ଣ୍ଣାଟକ, ଖାନ୍ଦେଶ, ଗଣ୍ଡୱାନା, ବେରାର ପ୍ରଭୃତି ହୃତ ରାଜ୍ୟ ଫେରି ପାଇଥିଲେ ।

†—ବାହାଦୁର ଶାହ (୨ୟ)ଙ୍କୁ ୧୮୫୭ ସିପାହୀ ବିଦ୍ରୋହର ଅଂଶୀଦାର ବୋଲି ସନ୍ଦେହ କରି ରେଙ୍ଗୁନକୁ ନିର୍ବାସିତ କରାଯାଇଥିଲା ଏବଂ ସେ ସେଠାରେ ୧୮୬୨ରେ ଇହଧାମ ତ୍ୟାଗ କରିଥିଲେ । ସେ ଥିଲେ ମୋଗଲ ରାଜବଂଶର ଶେଷ ନିଦର୍ଶନ ।

୧୭୨୦ରେ ବାଲାଜୀ ବିଶ୍ୱନାଥଙ୍କ ମୃତ୍ୟୁପରେ ତାଙ୍କପୁତ୍ର ବାଜିରାଓ ପେଶୱା ପଦରେ ନିଯୁକ୍ତ ହୋଇଥିଲେ । ସେହି ସମୟରୁ 'ପେଶୱା' ବଂଶାନୁକ୍ରମ ପଦବୀରେ ପରିଣତ ହୋଇଥିଲା ଏବଂ 'ପେଶୱା' ହିଁ ଥିଲେ ମରହଟ୍ଟା ସାମ୍ରାଜ୍ୟର ମୁଖ୍ୟ ଶାସକ । ବାଜିରାଓ ଭଗ୍ନୋନ୍ମୁଖୀ ମୋଗଲ ସାମ୍ରାଜ୍ୟର ମୂଳୋତ୍ପାଟନ କରି କୃଷ୍ଣାନଦୀଠାରୁ ସିନ୍ଧୁ ଉପତ୍ୟକା ପର୍ଯ୍ୟନ୍ତ ଏକ ହିନ୍ଦୁ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ମାଳବ ଓ ଗୁଜରାଟ ଅଧିକାର କରିଥିଲେ ଏବଂ ଅମ୍ବରର ରାଜା ଜୟସିଂହ (୨ୟ)ଙ୍କ ସହିତ ବନ୍ଧୁତା ସ୍ଥାପନ ପୂର୍ବକ ଦିଲ୍ଲୀ ଅଭିମୁଖରେ ଅଭିଯାନ ଚଳାଇଥିଲେ ।

୧୭୪୦ରେ ବାଜିରାଓଙ୍କ ମୃତ୍ୟୁପରେ ନାନା ସାହେବ ନାମରେ ସୁପରିଚିତ ତାଙ୍କ ପୁତ୍ର ତଥା ଉତ୍ତରାଧିକାରୀ ବାଲାଜୀ ବାଜିରାଓ (୨ୟ) ମରହଟ୍ଟା ସାମ୍ରାଜ୍ୟକୁ ଅଧିକ ଶକ୍ତିଶାଳୀ କରି ଗଢ଼ିବା ଦିଗରେ ମନୋନିବେଶ କରିଥିଲେ ସତ, କିନ୍ତୁ ହିନ୍ଦୁରାଜ୍ୟ ସମୂହକୁ ଏକତ୍ରିତ କରିବା ପରିବର୍ତ୍ତେ କେବଳ ମରହଟ୍ଟା ସାମ୍ରାଜ୍ୟ ଗଢ଼ିବାକୁ ଯାଇ ରାଜପୁତ ଓ ଅନ୍ୟାନ୍ୟ ହିନ୍ଦୁ ରାଜ୍ୟ ମାନଙ୍କର ସମର୍ଥନ ହରାଇଥିଲେ । ତଥାପି ତାଙ୍କ ଶାସନ କାଳରେ ମରହଟ୍ଟା ଶକ୍ତିର ଉଲ୍ଲେଖ ଯୋଗ୍ୟ ବିସ୍ତାର ଘଟିଥିଲା ।

## ଦୁରାନୀଙ୍କ ଆକ୍ରମଣ ଓ ମରହଟ୍ଟା ଶକ୍ତିର ପତନ

କିନ୍ତୁ ସେତେବେଳକୁ ନାଦିର ଶାହଙ୍କର ସହଯାତ୍ରୀ ତଥା ଆଫଗାନ୍ ଅବ୍‌ଦାଲୀ ବଂଶର ମୁଖ୍ୟ ଅହମ୍ମଦ ଶାହ ନିଜକୁ 'ଦୁରାନୀ' (ମୁକ୍ତା) ଉପାଧିରେ ଭୂଷିତ କରି ଭାରତରେ ଅନୁପ୍ରବେଶ କରିଥିଲେ । ସେ ନାଦିର ଶାହଙ୍କ ସହିତ ଭାରତ ଆସିଥିଲା ବେଳେ ମୋଗଲ ଶାସନର ଦୁର୍ବଳତା ତଥା ରାଜ୍ୟମାନଙ୍କର ସ୍ୱାଧୀନ ମନୋବୃତ୍ତି ସ୍ୱଚକ୍ଷୁରେ ଦେଖି ପାଇଥିଲେ । ତେଣୁ ୧୭୪୭ରେ ନାଦିର ଶାହଙ୍କ ମୃତ୍ୟୁପରେ ନିଜର ପ୍ରଭୁତ୍ୱ ପ୍ରତିଷ୍ଠା କରିସାରି ଦୁରାନୀ ୧୭୪୮ଠାରୁ ୧୭୬୯ ମଧ୍ୟରେ ବହୁବାର ଭାରତ ଅଭିଯାନରେ ଆସିଥିଲେ ।

ଅହମ୍ମଦ ଦୁରାନୀ କାବୁଲ, କନ୍ଦାହାର, ପେଶାୱାର ଜୟ କରିସାରି ୧୭୪୮ରେ ପ୍ରଥମବାର ଭାରତ ଆକ୍ରମଣ କରି ଭାବୀ ମୋଗଲ ସମ୍ରାଟ ଅହମ୍ମଦ ଶାହଙ୍କ ଦ୍ୱାରା ପରାସ୍ତ ହୋଇ ଫେରି ଯାଇଥିଲେ । କିନ୍ତୁ ୧୭୪୯ରେ ତାଙ୍କର ଦ୍ୱିତୀୟ ଆକ୍ରମଣ ବେଳେ ସେ ପଞ୍ଜାବ ଅଧିକାର କରିଥିଲେ । ତୃତୀୟବାର

୧୭୫୧ରେ ସେ କାଶ୍ମୀର ଅଧିକାର କରି ଅହମ୍ମଦ ଶାହଙ୍କଠାରୁ ବାଧ୍ୟତା-ମୂଳକ କେତେକ ଅଞ୍ଚଳ ଦଖଲ କରିନେଇଥିଲେ । ୧୭୫୬ରେ ତାଙ୍କର ଚତୁର୍ଥ ଆକ୍ରମଣରେ ଦୁରାନୀ ଦିଲ୍ଲୀରେ ପ୍ରବେଶକରି ଲୁଣ୍ଠନ ଓ ଅତ୍ୟାଗ୍ରର ଚଳାଇ ଆତଙ୍କ ସୃଷ୍ଟି କରିଥିଲେ ଏବଂ ଏହା ପରେ ୧୭୫୭ରେ ଦିଲ୍ଲୀର ଦକ୍ଷିଣବର୍ତ୍ତୀ ଜାଠ ରାଜ୍ୟ ମଧ୍ୟ ଲୁଣ୍ଠନ କରିନେଇଥିଲେ । ୧୭୫୮ ରେ ମରହଟ୍ଟା ସେନାଧିପତି ରଘୁନାଥ ରାଓ ଯେତେବେଳେ ଆଫଗାନ୍ ଶାସକ ତୈମୁର ଶାହଙ୍କୁ କ୍ଷମତା ଚ୍ୟୁତକରି ଲାହୋର ଓ ପଞ୍ଜାବ ଅଧିକାର କଲେ, ଦୁରାନୀ ପଞ୍ଚମବାର ଭାରତ ଆକ୍ରମଣକରି ୧୭୫୯ରେ ପଞ୍ଜାବ ଦଖଲ କଲେ ।

## ତୃତୀୟ ପାନିପଥ ସମର

ଏହାପରେ ୧୭୬୧ ଜାନୁୟାରୀ ୧୪ ତାରିଖରେ ପାନିପଥଠାରେ ମରହଟ୍ଟା—ଆଫଗାନ ସଂଘର୍ଷର ଏକ ଉଲ୍ଲେଖ ଯୋଗ୍ୟ ପର୍ଯ୍ୟାୟ ଉନ୍ମୋଚିତ ହୋଇଥିଲା । ଏଥିରେ ମରହଟ୍ଟା ବାହିନୀର ଦାୟିତ୍ୱରେ ଥିଲେ ବୀର ସଦାଶିବ ରାଓ ଓ ପେଶୱାଙ୍କ ପୁତ୍ର ବିଶ୍ୱାସ ରାଓ । କିନ୍ତୁ ସେହି ଐତିହାସିକ ତୃତୀୟ ପାନିପଥ ସମରରେ ବିଶାଳ ଆଫଗାନ ବାହିନୀର ଉନ୍ନତ ସମର କୌଶଳ ନିକଟରେ ସଦାଶିବ ଓ ବିଶ୍ୱାସଙ୍କର ପ୍ରାଣପାତ ଘଟିଥିଲା ଏବଂ ଜାଗ୍ରତ ମରହଟ୍ଟା ଶକ୍ତି ଅବଲୁପ୍ତ ହୋଇଥିଲା । ସେହି ଦାରୁଣ ଦୁର୍ବିପାକରେ ମର୍ମାହତ ହୋଇ ୧୭୬୧ ଜୁନ୍ ୨୩ ତାରିଖରେ ବାଲାଜୀ ବାଜି ରାଓ (୨ୟ) ମୃତ୍ୟୁବରଣ କରିଥିଲେ ।

ଅବଶ୍ୟ ତୃତୀୟ ପାନିପଥ ଯୁଦ୍ଧ ଫଳରେ ମରହଟ୍ଟା ଶକ୍ତିର ସମ୍ପୂର୍ଣ୍ଣ ପତନ ଘଟିନଥିଲା । ବାଲାଜୀ ବାଜିରାଓଙ୍କ ପୁତ୍ର ମାଧବ ରାଓ (୧୭୬୧—୭୨) ମରହଟ୍ଟା ଶକ୍ତିର ପୁନରୁଦ୍ଧାର ନିମନ୍ତେ ଆପ୍ରାଣ ଉଦ୍ୟମ କରି ଆଂଶିକ ସଫଳ ହୋଇଥିଲେ । ତଥାପି ତୃତୀୟ ପାନିପଥ ଯୁଦ୍ଧର ସୁଦୂର ପରିଣାମ ଭାରତୀୟ ଇତିହାସର ଗତିଧାରା ବଦଳାଇ ଦେଇଥିଲା । ସେହି ସମରରେ ମରହଟ୍ଟା ଓ ମୁସଲମାନ ଉଭୟ ଶକ୍ତି ଦୁର୍ବଳ ହୋଇ ପଡ଼ିବା ଫଳରେ ଭବିଷ୍ୟତରେ ଇଂରେଜମାନଙ୍କୁ ଭାରତରେ ଆଧିପତ୍ୟ ବିସ୍ତାର କରିବା ପାଇଁ ସୁଯୋଗ ମିଳିଥିଲା ।

---

## ପଞ୍ଚଦଶ ପର୍ଯ୍ୟାୟ

# ମୋଗଲଯୁଗ (ଗ)

## ଐତିହାସିକ ମୂଲ୍ୟାୟନ

ମୋଗଲ ଯୁଗୀୟ ଶାସନ ପଦ୍ଧତିରେ ଅନେକାଂଶରେ ପେର୍ଶିଆ ଓ ଆରେବଆବ୍ଦ ଇସଲାମୀ ପରଂପରାର ପ୍ରତିଫଳନ ଘଟିଥିବାରୁ ଏହାକୁ "ଭାରତୀୟ ଓ ବହିର୍ଭାରତୀୟ ଉପାଦାନର ସମ୍ମିଶ୍ରଣ ତଥା ଭାରତୀୟ ଭିତ୍ତି ଭୂମିରେ ପାର୍ଶି-ଆରବୀୟ ପ୍ରଣାଳୀ" ✻ ବୋଲି କୁହାଯାଇ ଥାଏ । ତଥାପି ଭାରତୀୟ ଇତିହାସକୁ ତାର ଅବଦାନ ନଗଣ୍ୟ ନୁହେଁ । ସୁଲତାନୀ ଶାସନ ପ୍ରଣାଳୀଠାରୁ ତାହା ଯଥେଷ୍ଟ ଉନ୍ନତ, ଉଦାର ଓ ଉଚ୍ଚ କୋଟିର ଥିଲା । ଦିଲ୍ଲୀ ସୁଲତାନୀ ସାମ୍ରାଜ୍ୟର ଶାସନାଦର୍ଶ ଥିଲା ମୁଖ୍ୟତଃ ସାମରିକ ଶକ୍ତିମୂଳକ ଏବଂ ସାମନ୍ତ ରାଜ୍ୟଗୁଡିକର ଆନୁଗତ୍ୟ ତରବାରୀର ଦୃଢତା ଉପରେ ହିଁ ନିର୍ଭର କରୁଥିଲା । କିନ୍ତୁ ମୋଗଲ ଶାସନ ପ୍ରଣାଳୀ ସାମରିକ ଥିଲେ ସୁଦ୍ଧା ତାର ଶ୍ଵତକର ଏକଚ୍ଛତ୍ରବାଦୀ ଶାସନରେ କେନ୍ଦ୍ର ଓ ପ୍ରାଦେଶିକ ସମ୍ପର୍କ ସୁସଙ୍ଗଠିତ ଓ ସୁସମନ୍ଵିତ ହୋଇଥିଲା ଏବଂ ସମଗ୍ର ସାମ୍ରାଜ୍ୟରେ ଏକତା, ସଙ୍ଗତି ଓ ସମଧର୍ମୀ ଶାସନନୀତି ପ୍ରଚଳିତ ଥିଲା । ଏଥିପାଇଁ ଏଡ୍‌ଓ୍ଵାର୍ଡ୍‌ସ୍ ଓ ଗାରେଟ୍ ଯଥାର୍ଥରେ କହିଛନ୍ତି, "ଆଧୁନିକ ଭାରତ ମହାନ୍ ମୋଗଲ ଶାସନ-ପ୍ରତିଷ୍ଠା ନିକଟରେ ଯେତିକି ପ୍ରଶାସନ, ତାଠାରୁ ଅଧିକ ମାତ୍ରାରେ ଋଣୀ ।" ✝

---

✻ ସାର୍ ଯଦୁନାଥ ସରକାରଙ୍କ ମନ୍ତବ୍ୟ ।

✝ Edwardes ଓ Garret ଙ୍କ "Moghul Rule in India" ପୁସ୍ତକ ଦ୍ରଷ୍ଟବ୍ୟ ।

## ଶାସନ ପ୍ରଣାଳୀ

ମୋଗଲ ଶାସନ ଥିଲା ପ୍ରଧାନତଃ କେନ୍ଦ୍ରୀଭୂତ ନିରଙ୍କୁଶ ଶାସନ ଏବଂ ସମ୍ରାଟଙ୍କର ସ୍ୱେଚ୍ଛାନୁମେନ୍ଦ୍ରୀ ରାଜ୍ୟଶାସନ ନିର୍ବାହିତ ହେଉଥିଲା । ତେବେ ମୋଗଲ ଯୁଗର ପ୍ରଥମ ଏକ ଶତାବ୍ଦୀ (ବା ତାଠାରୁ କିଞ୍ଚିତ ଅଧିକ କାଳ)ର ସମ୍ରାଟଗଣ ସେମାନଙ୍କର ତୀକ୍ଷ୍ଣ ଶାସନ ଜ୍ଞାନ ତଥା ଦୂରଦର୍ଶିତା ଓ ପ୍ରଜାବତ୍ସଳତା ଯୋଗୁଁ କୌଣସି ଧ୍ୱଂସାତ୍ମକ ଅପରାଧ ବା ରାଜାଦେଶ ଲଙ୍ଘନର ପର୍ଯ୍ୟାପ୍ତ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ଗ୍ରାମ ତଥା ନଗର ବାସୀଙ୍କର ବ୍ୟକ୍ତିଗତ ଜୀବନରେ ହସ୍ତକ୍ଷେପ କରୁ ନଥିଲେ । ଏଥିଲାଗି ତାତ୍କାଳୀନ ସ୍ୱେଚ୍ଛାଚାରୀ ଶାସନ ଅସହନୀୟ ଅତ୍ୟାଚାର ରୂପେ ପ୍ରତିଭାତ ହେଉ ନଥିଲା । ପୁଣି, ଆଉରଙ୍ଗଜେବଙ୍କ ବ୍ୟତୀତ, ମୋଗଲ ଯୁଗର ପ୍ରଥମାର୍ଦ୍ଧର ପଞ୍ଚ ସମ୍ରାଟ ବାବର, ହୁମାୟୁନ, ଆକବର, ଜାହାଙ୍ଗିର ଓ ଶାହାଜହାନ ଅତି ମାତ୍ରାରେ ଧର୍ମାନ୍ଧ ନଥିଲେ ଏବଂ କଳା ଓ ସାହିତ୍ୟର ପୃଷ୍ଠପୋଷକତା କରୁଥିଲେ ।

ସେହି ଶାସନ ପ୍ରଣାଳୀ ସାମରିକ ଢାଞ୍ଚାରେ ଗଠିତ ହୋଇଥିଲା ଏବଂ ପ୍ରତ୍ୟେକ ରାଜକର୍ମଚାରୀଙ୍କୁ ସେନାବାହିନୀରେ ଅନ୍ତର୍ଭୁକ୍ତ ହେବାକୁ ପଡୁଥିଲା । ସେତେବେଳେ ସାମରିକ ଓ ବେସାମରିକ ଶାସକଗୋଷ୍ଠୀ ମଧ୍ୟରେ କୌଣସି ଶ୍ରେଣୀଗତ ପାର୍ଥକ୍ୟ ନଥିଲା । ଆକବର ଦଶଜଣଙ୍କର ସେନାପତିଠାରୁ ଆରମ୍ଭ କରି ଦଶ ସହସ୍ରଙ୍କର ସେନାଧିପତି ପର୍ଯ୍ୟନ୍ତ ତାଙ୍କର ରାଜକର୍ମଚାରୀମାନଙ୍କୁ ତେତିଶଟି ସ୍ତରରେ ବିଭକ୍ତ କରିଥିଲେ । ଅବଶ୍ୟ ଉଚ୍ଚ ସ୍ତରର ପଦବୀଗୁଡ଼ିକ ( ଅର୍ଥାତ୍ ୭୦୦ ଠାରୁ ୧୦,୦୦୦ ସୈନ୍ୟଙ୍କର ସେନାପତି ) କେବଳ ରାଜ ପରିବାରଜନଙ୍କ ନିମିତ୍ତ ସଂରକ୍ଷିତ ରହୁଥିଲା । ରାଜକର୍ମଚାରୀ ତଥା ମନସବଦାରମାନେ ଥିଲେ ସମ୍ଭ୍ରାନ୍ତ ସମାଜର ମୂଳପିଣ୍ଡ । ତେବେ ମନସବଦାରୀ ବଂଶାନୁକ୍ରମିକ ନଥିଲା କିମ୍ବା ବିଶେଷଜ୍ଞମାନଙ୍କୁ କୌଣସି ନିର୍ଦ୍ଦିଷ୍ଟ ପଦବୀ ଅର୍ପଣ କରାଯାଉ ନଥିଲା । ସମ୍ରାଟ ଯେତେବେଳେ ଯାହାକୁ ଯେଉଁ କାର୍ଯ୍ୟ ନିମନ୍ତେ ଉପଯୁକ୍ତ ବୋଲି ବିଚାରୁଥିଲେ ତାଙ୍କୁ ସେହି କାର୍ଯ୍ୟରେ ସଙ୍ଗେ ସଙ୍ଗେ ନିଯୁକ୍ତ କରୁଥିଲେ । ଦ୍ୱିବିଧ ଭାବରେ ସେମାନଙ୍କୁ ପାରିଶ୍ରମିକ ଦିଆ ଯାଉଥିଲା— ନଗଦ ହିସାବରେ କିମ୍ବା ସାମୟିକ 'ଜାଗିର' ଆକାରରେ । ମୁରଲ୍ୟାଣ୍ଡଙ୍କ ବିବରଣୀ ପ୍ରକାରରେ ପାଞ୍ଚହଜାର ଜଣଙ୍କର ମନସବଦାରଙ୍କର ମାସିକ ଦରମା

ଥିଲା ଅଠର ହଜାର ଟଙ୍କା ଏବଂ ଏକ ହଜାର ଜଣଙ୍କର ମନସବଦାରଙ୍କୁ ମାସିକ ପାଞ୍ଚହଜାର ଟଂକା ମିଳୁଥିଲା । ❋

ମୋଗଲ ଶାସନ ସଂସ୍ଥାର ବିଭିନ୍ନ ବିଶିଷ୍ଟ ବିଭାଗଗୁଡ଼ିକରେ 'ଖାନସମା' (ରାଜ ମହଲ ବ୍ୟାପାର ନିମିତ୍ତ), 'ଦିବାନ୍' (ଭଣ୍ଡାର ଦାୟିତ୍ୱରେ), 'ମୀର ବକ୍ସି' (ସାମରିକ ଖର୍ଚ୍ଚ ହିସାବ ରଖିବା ଦାୟିତ୍ୱରେ), 'କାଜୀ' (ନ୍ୟାୟ ବିତରଣ ପାଇଁ), 'ସାଦୁର୍' ( ଧର୍ମସଂସ୍ଥା ପରିଚାଳନା ନିମନ୍ତେ ), 'ମୁତାସିବ୍' (ସାଧାରଣ ନୀତି-ନିଷେଧର ପର୍ଯ୍ୟବେକ୍ଷକ ଭାବରେ) ପ୍ରଭୃତି ଉଚ୍ଚ ପଦବୀ-ସମ୍ପନ୍ନ କର୍ମଚାରୀଗଣ ନିଯୁକ୍ତ ଥିଲେ । ସେମାନଂକ ବ୍ୟତୀତ, 'ମୀର୍‌ମଲ୍ଲ' (ରାଜମୋହର ରକ୍ଷୀ), 'ମୁସ୍ତାଫି' (ହିସାବ ନିରୀକ୍ଷକ), 'ମୀର୍‌ବର୍' (ବନାଧିପତି), 'ମୁସରଫ' (ରାଜସ୍ୱ ସଚିବ), 'ଓ୍ୱାକନବିଶ' (ସମ୍ବାଦ ଦାତା) ପ୍ରଭୃତି ଅଧସ୍ତନ ଅଧିକାରୀମାନେ ରହିଥିଲେ । ଅପରାଧ ନିବାରଣ ତଥା ଶାନ୍ତିଶୃଙ୍ଖଳା ରକ୍ଷା ଦାୟିତ୍ୱ ଗ୍ରାମାଞ୍ଚଳରେ 'ଗ୍ରାମମୁଖ୍ୟ' ବା 'ଗ୍ରାମଣି' ଏବଂ ସହରାଞ୍ଚଳରେ 'କୋଟୁଆଳ'ମାନଙ୍କୁ ଦିଆ ଯାଇଥିଲା । 'ଆଇନ-ଈ-ଆକବରୀ' ଅନୁସାରେ 'କୋଟୁଆଳ'ର କର୍ତ୍ତବ୍ୟ ଥିଲା—(କ) ଚୋର ଧରିବା; (ଖ) ମାପ, ଓଜନ ଓ ଦର ନିର୍ଦ୍ଧାରଣ କରିବା, (ଗ) ରାତ୍ର କାଳରେ ନଗର ପରିକ୍ରମା କରିବା; (ଘ) ଗୃହ ଓ ନଗରବାସୀଙ୍କର ତାଲିକା ପ୍ରସ୍ତୁତ କରି ଅଜ୍ଞାତ ଲୋକ-ଙ୍କର ଚଳାଚଳଣି ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିବା; (ଙ) ବାରବୁଲା ଲୋକଙ୍କୁ ଗୁପ୍ତଚର ନିଯୁକ୍ତ କରି ଆଖପାଖ ଗାଁ ମହଲର ଏବଂ ବିଭିନ୍ନ ଶ୍ରେଣୀର ଲୋକଙ୍କର ଆୟବ୍ୟୟ ସମ୍ପର୍କରେ ସମ୍ବାଦ ସଂଗ୍ରହ କରିବା; (ଚ) ଉତ୍ତରାଧିକାରୀହୀନ ବ୍ୟକ୍ତିଙ୍କର ନିରୁଦ୍ଦେଶ ବା ମୃତ୍ୟୁପରେ ତାଙ୍କ ସମ୍ପତ୍ତିର ଦାୟିତ୍ୱ ନେବା; (ଛ) ଗୋ, ମହିଷ, ଅଶ୍ୱ, ଉଷ୍ଟ୍ରାଦି ପଶୁହତ୍ୟା ରୋକିବା; (ଜ) ବାଧ୍ୟତାମୂଳକ ସତୀଦାହକୁ ବନ୍ଦ କରିବା ଏବଂ (ଝ) ବାର ବର୍ଷରୁ କମ ବାଳକ ବାଳିକା-ମାନଙ୍କର ଶିଶ୍ନାଗ୍ରତ୍ୱକ ଓ ସୁନ୍ନତ ଛେଦନ ନ କରାଇବା । ❋

---

❋ Moreland ଙ୍କର "India at the Death of Akbar" ପୁସ୍ତକର ପୃ. ୭୬ ଦ୍ରଷ୍ଟବ୍ୟ ।

❋ An Advanced History of India ପୁସ୍ତକର ପୃ. ୫୫୧ ଦ୍ରଷ୍ଟବ୍ୟ ।

ପ୍ରଧାନ କାଜୀ ଥିଲେ ବିଭିନ୍ନ ଅଭିଯୋଗ ଓ ଅପରାଧର ବିଚାର କର୍ତ୍ତା । ସେ ବିଭିନ୍ନ ପ୍ରଦେଶର ¶ ରାଜଧାନୀଗୁଡ଼ିକରେ ଅନ୍ୟ କାଜୀମାନଙ୍କୁ ନିଯୁକ୍ତ କରୁଥିଲେ । ଗ୍ରାମ ସ୍ତରରେ ଜାତି-ଦରବାର (Caste Courts) ବା ପଞ୍ଚାୟତ ମାଧ୍ୟମରେ ଚୁକ୍ତିଭଙ୍ଗ, ଜମି ସୀମା ଅତିକ୍ରମ, ଭୂମି ଅଧିକାର, ଜଳ ଅବରୋଧ, ପ୍ରଚଳିତ ପ୍ରଥାର ବିରୁଦ୍ଧାଚରଣ, ଉତ୍ତରାଧିକାରୀ ନିରୂପଣ ପ୍ରଭୃତି ସାଧାରଣ ବିବାଦଗୁଡ଼ିକର ବିଚାର ଓ ମୀମାଂସା କରାଯାଉଥିଲା † । ସର୍ବୋପରି, ପ୍ରଜାମାନଙ୍କର ବିଶେଷ ଗୁହାରୀ ଶୁଣିବା ପାଇଁ ସମ୍ରାଟ ନିଜେ ମଧ୍ୟ ସମୟ ଦେଉଥିଲେ । ସମ୍ରାଟଙ୍କର ବିନା ସମ୍ମତିରେ କାହାକୁ ମୃତ୍ୟୁଦଣ୍ଡ ଦିଆଯାଉ ନଥିଲା । ସେତେବେଳେ ବିଧିବଦ୍ଧ କାରାଗାର ନଥିଲା, ଦୁର୍ଗମାନଙ୍କରେ ହିଁ ବନ୍ଦୀମାନଙ୍କୁ ଆବଦ୍ଧ ରଖାଯାଉ ଥିଲା ।

ମୋଗଲ ସାମ୍ରାଜ୍ୟର ରାଜସ୍ୱ କେନ୍ଦ୍ର ଓ ଆଞ୍ଚଳିକ ଉଭୟ ସ୍ତରରେ ଆଦାୟ କରାଯାଉଥିଲା । ଆଞ୍ଚଳିକ ଆୟମାନ କେନ୍ଦ୍ରର ବିନାନୁମୋଦନରେ ବ୍ୟୟିତ ହେଉଥିଲା । କେନ୍ଦ୍ର ସରକାରଙ୍କ ମୁଖ୍ୟ ଆୟ ଥିଲା ଭୂ-ରାଜସ୍ୱ, ଅବକାରୀ ଶୁଳ୍କ, ଖଣିପଞ୍ଜା, ଉତ୍ତରାଧିକାର ଦେୟ, ମୁଣ୍ଡପିଛାକର ଇତ୍ୟାଦି । ଭୂ-ରାଜସ୍ୱ ନିରୂପଣ ନିମିତ୍ତ ଜମିଗୁଡ଼ିକୁ ତିନି ଭାଗରେ ବିଭକ୍ତ କରାଯାଇ ଥିଲା—'ଖଲସା' (ବା ରାଜାଧିକୃତ ଜମି), ଜାଗିର ଓ ନିଷ୍କର ଜମି । ପୁଣି ୧୫୮୨ ରେ ତୋଡର ମଲ୍ଲଙ୍କ ଦ୍ୱାରା ପ୍ରବର୍ତ୍ତିତ ପରିମାର୍ଜିତ ରାଜସ୍ୱ ଆଇନ ବଳରେ ଜମିର ପରିସୀମନ, ଶ୍ରେଣୀ ବିଭାଜନ ଓ ରାଜସ୍ୱ ନିର୍ଦ୍ଧାରଣ ନିର୍ଦ୍ଦିଷ୍ଟ ରୂପ ନେଇଥିଲା । ସେତେବେଳେ ଜମିଗୁଡ଼ିକୁ କର ନିରୂପଣ ଉଦ୍ଦେଶ୍ୟରେ ଚାରି ଭାଗରେ ବିଭକ୍ତ କରାଯାଇଥିଲା; ଯଥା –'ପଲଜ' (ପୂର୍ଣ୍ଣ ଆବାଦୀ), 'ପରଉତି' (ସ୍ୱଳ୍ପ ଆବାଦୀ) 'ଚଚର' (କ୍ୱଚିତ ଆବାଦୀ) ଏବଂ 'ବଞ୍ଜର' (ଅନାବାଦୀ) । ଏହା ସତ୍ତ୍ୱେ ରାଜସ୍ୱ ଆଦାୟର ମୂଲ୍ୟ ଓ ପରିମାଣ ସମ୍ରାଟଙ୍କର ବ୍ୟକ୍ତିତ୍ୱ ତଥା ରାଜକର୍ମଚାରୀମାନଙ୍କର ନିଷ୍ଠା ଓ ସାଧୁତା ଉପରେ ହିଁ ନିର୍ଭର

---

¶ ସେହି ସମୟର ବିଭିନ୍ନ ପ୍ରଦେଶଗୁଡ଼ିକ ଥିଲା—ଆଗ୍ରା, ଆଲ୍ଲାହାବାଦ, ଅଉଧ, ଦିଲ୍ଲୀ, ଲାହୋର, କାବୁଲ, ଆଜମୀର, ବଙ୍ଗ, ବିହାର, ଅହମ୍ମଦାବାଦ, ଅହମ୍ମଦନଗର, ବେରାର, ମାଳବ, ଖାନ୍ଦେଶ ଓ ମୁଲତାନ ।

† ଡକ୍ଟର୍ ତାରାଚାନ୍ଦଙ୍କର "Society and State in the Mughal Period" ପୁସ୍ତକର ପୃ. ୫୧ ଦ୍ରଷ୍ଟବ୍ୟ ।

କରୁଥିଲା । ଏଥିପାଇଁ ମୋଗଲ ଶାସନର ଦୁର୍ନୀତି ବିଷୟରେ ବହୁ ଐତିହାସିକ କଟୁ ମନ୍ତବ୍ୟମାନ ପ୍ରକାଶ କରିଛନ୍ତି ।

ମୋଗଲ ଶାସନ ସେନା ବାହିନୀ ଉପରେ ବିଶେଷ ନିର୍ଭରଶୀଳ ଥିଲା । ପ୍ରତ୍ୟେକ ସୁସ୍ଥ, ସବଳ ନାଗରିକ ସେନାବାହିନୀର ଜଣେ ଜଣେ ସୈନିକ ଥିଲେ । ପଦାତିକ, ଅଶ୍ୱାରୋହୀ, ନୌସେନା ଓ ଗୋଲନ୍ଦାଜ ସୈନ୍ୟଙ୍କୁ ନେଇ ମୋଗଲ ବାହିନୀ ଗଠିତ ହୋଇଥିଲା । ମୋଗଲ ବାହିନୀ ଅପାରଗ ନଥିଲେ ମଧ୍ୟ ସୁଦକ୍ଷ ଥିଲା ବୋଲି କୁହାଯାଇ ନପାରେ । ସେନାବାହିନୀର ଅଯଥା ସଂଖ୍ୟାବୃଦ୍ଧି, ବିକେନ୍ଦ୍ରୀଭୂତ ଶାସନ ଓ ସୈନ୍ୟ ଶିବିରଗୁଡ଼ିକର ବାହ୍ୟାଡ଼ମ୍ବର ମୋଗଲ ବାହିନୀର ଦକ୍ଷତା ବୃଦ୍ଧି ଓ ଶୃଙ୍ଖଳା ରକ୍ଷାର ପରିପନ୍ଥୀ ହୋଇଥିଲା । ଏହି ଦୃଷ୍ଟିରୁ ଶିବାଜୀଙ୍କର ମରହଟ୍ଟା ବାହିନୀ ବରଂ ଅଧିକ ଉନ୍ନତ ଥିଲା ।

## ସାମାଜିକ ଜୀବନ

ମୋଗଲ ଯୁଗୀୟ ଇତିହାସର ବିଶେଷ ଆକର୍ଷଣ ହେଉଛି ତଦାନୀନ୍ତନ ସାମାଜିକ ଜୀବନ । ସେହି ସମାଜ ଥିଲା ଏକ ସାମନ୍ତବାଦୀ ସମାଜ; ସେଥିରେ ସମ୍ରାଟ ଥିଲେ ସର୍ବେସର୍ବା । ରାଜକର୍ମଚାରୀଗଣ ସମ୍ପତ୍ତିଶାଳୀ ଓ ଭୋଗବିଳାସୀ ଥିଲେ ଏବଂ ସାଧାରଣ ଜନତା ଦୁଃଖ ଓ କଷ୍ଟମୟ ଜୀବନ ଯାପନ କରୁଥିଲେ । ସେହି ସମାଜରେ ମଧ୍ୟବିତ୍ତ ଗୋଷ୍ଠୀ ମଧ୍ୟ ରହିଥିଲେ ଏବଂ ସେମାନେ ଅତି ସୁଖରେ କାଳାତିପାତ କରୁଥିଲେ । ଡକ୍ଟର୍ ରାଧାକୁମୁଦ ମୁଖାର୍ଜୀଙ୍କ ଭାଷାରେ "ଦୋକାନୀ, ବ୍ୟବସାୟୀ ସାହୁକାର, ଚିକିତ୍ସକ ଓ ଲେଖକ ଗୋଷ୍ଠୀକୁ ନେଇ ମୋଗଲ-ଭାରତର ମଧ୍ୟବିତ୍ତ ଶ୍ରେଣୀ ଗଠିତ ହୋଇଥିଲା ।"* ଏଣୁ ବେର୍ନିୟର ପ୍ରଭୃତି ସମାଲୋଚକମାନେ ମୋଗଲ ଯୁଗରେ ମଧ୍ୟବିତ୍ତ ଶ୍ରେଣୀର ଅସ୍ତିତ୍ୱ ନଥିଲା ଏବଂ ଲୋକମାନେ ଅତି ବିଳାସୀ ନତୁବା ନିତାନ୍ତ କଦର୍ଯ୍ୟ ଜୀବନ ଯାପନ କରୁଥିଲେ ବୋଲି ଯେଉଁ ମତ ପ୍ରକାଶ କରିଛନ୍ତି, ତାହା ଯଥାର୍ଥ ମନେହୁଏ ନାହିଁ । ତେବେ ସପ୍ତଦଶ ଶତାବ୍ଦୀର ପ୍ରଥମାର୍ଦ୍ଧ ପରେ ପ୍ରାଦେଶିକ ଗଭର୍ଣ୍ଣରମାନଙ୍କର ନିଷ୍ପେଷଣ ଓ ଅତ୍ୟାଚାର ବଢ଼ିଯିବା ଫଳରେ କୃଷକ ଓ

* Prof. L. Mukherjee : History of India (Mediaeval Period) P. 320 ଦ୍ରଷ୍ଟବ୍ୟ ।

ଶ୍ରମିକଶ୍ରେଣୀ ଦାରୁଣ ଦୁରବସ୍ଥା ଭୋଗିଥିଲେ ଏବଂ ସମାଜରେ ଦରିଦ୍ର ଭିକ୍ଷୁକଙ୍କ ସଂଖ୍ୟା ଆଶାତୀତ ଭାବେ ବଢ଼ିଯାଇଥିଲା ।

ସେହି ସମାଜର ସାମାଜିକ ପ୍ରଥାଗୁଡ଼ିକ ମଧ୍ୟରେ ବାଲ୍ୟବିବାହ, ଯୌତୁକ ଓ ସତୀଦାହ ପ୍ରଧାନ । ସମ୍ରାଟ ଆକବର ଏସବୁ ସାମାଜିକ କଳଙ୍କ ଦୂର କରିବା ନିମନ୍ତେ ଉଦ୍ୟମ କରିଥିଲେ ମଧ୍ୟ ସେଥିରେ ସଫଳ ହୋଇ ନଥିଲେ । ତେବେ ତାତ୍କାଳୀନ ମରହଟ୍ଟା ସମାଜ ଏ କ୍ଷେତ୍ରରେ କିଞ୍ଚିତ ଅଗ୍ରଗାମୀ ଥିଲା । ମହାରାଷ୍ଟ୍ରର ଅବ୍ରାହ୍ମଣ ସଂପ୍ରଦାୟରେ ବିଧବା ବିବାହ ମଧ୍ୟ ପ୍ରଚଳିତ ଥିଲା । ପଞ୍ଜାବର ଜାଠ ସମାଜରେ ବହୁପତି ବିବାହ ପ୍ରଥା ବି ଆଦୃତ ହୋଇଥିଲା । ନାରୀମାନେ ସାଧାରଣତଃ ଅବଗୁଣ୍ଠିତା ଓ ସ୍ୱାମୀ-ଆଜ୍ଞାନୁବର୍ତ୍ତିନୀ ଥିଲେ ମଧ୍ୟ ସେମାନେ ଶାସନ କାର୍ଯ୍ୟରେ ଅଂଶ ଗ୍ରହଣ କରିବା ଦୃଷ୍ଟାନ୍ତ ବିରଳ ନଥିଲା । ପୁଣି, ସ୍ତ୍ରୀ ଶିକ୍ଷା ମଧ୍ୟ ସେତେବେଳେ ବେଶ୍ ଉନ୍ନତ ଥିଲା । ବାବରଙ୍କ କନ୍ୟା ଗୁଲ୍‌ବଦନ, ହୁମାୟୁନଙ୍କ ଭ୍ରାତୁଷ୍ପୁତ୍ରୀ ସାଲିମା ସୁଲତାନା, ଔରଙ୍ଗଜେବଙ୍କ କନ୍ୟା ଜେବୁନିଶା, ଜାହାଙ୍ଗିରଙ୍କ ପ୍ରିୟ ମାନସୀ ନୁରଜାହାନ, ଶାହଜାହାନଙ୍କ ପ୍ରେମପ୍ରତିମା ମମତାଜ ମହଲ ଓ ଆଦରଣୀୟା କନ୍ୟା ଜହାନାରା ପ୍ରଭୃତି ନାରୀମାନେ ଉଚ୍ଚ ଶିକ୍ଷିତା ଥିଲେ ଏବଂ ପାର୍ସି ଓ ଆରବୀୟ ସାହିତ୍ୟରେ ବିଶେଷ ଜ୍ଞାନ ଅର୍ଜନ କରିଥିଲେ । ଏପରିକି ହୁମାୟୁନଙ୍କ ଶାସନ କାଳର ଶ୍ରେଷ୍ଠ ନିବନ୍ଧ ଗ୍ରନ୍ଥ 'ହୁମାୟୁନ ନାମା' ଗୁଲ୍‌ବଦନଙ୍କ ଦ୍ୱାରା ପ୍ରଣୀତ ହୋଇଥିଲା ।

ଆଲୋଚ୍ୟ ଯୁଗର ପର୍ବପର୍ବାଣି ମଧ୍ୟରେ ବସନ୍ତୋତ୍ସବ ବା ହୋଲି, ଦୁର୍ଗାପୂଜା, ରାକ୍ଷୀବନ୍ଧନ ଓ ମହରମ ବିଶେଷ ଲୋକପ୍ରିୟ ଥିଲା ଏବଂ ଖୁବ୍ ଆଡ଼ମ୍ବର ସହକାରେ ପାଳିତ ହେଉଥିଲା । ଏସବୁ ଉତ୍ସବରେ ଉଭୟ ହିନ୍ଦୁ ଓ ମୁସଲମାନ ସଂପ୍ରଦାୟର ଲୋକେ ଅଂଶ ଗ୍ରହଣ କରୁଥିଲେ । ମୁସଲମାନ ଯୁଗରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଯେଉଁ ଧର୍ମଗତ ଭେଦଭେଦ ରହିଥିଲା, ମୋଗଲ ଶାସନ କାଳରେ ତାହା ଖୁବ୍ ହ୍ରାସ ପାଇଥିଲା । ମୁସଲମାନ ଯୁଗ ଥିଲା "ଏକ ଦୃଢ଼ ଓ ସଂକୀର୍ଣ୍ଣ ଧାର୍ମିକ ରକ୍ଷଣଶୀଳତାର ଯୁଗ";* ମୋଗଲ ଯୁଗରେ ହିନ୍ଦୁ-ମୁସଲମାନ ସଦ୍‌ଭାବ ପୁନଃପ୍ରତିଷ୍ଠିତ

---

*, A. L. Shrivastav : 'The Sultanate of Delhi', P. 307

ହୋଇଥିଲା । ଏପରି ଔରଙ୍ଗଜେବଙ୍କ ଶାସନ କାଳରେ ମଧ୍ୟ ସାମାଜିକ ଜୀବନରେ ହିନ୍ଦୁ ମୁସଲମାନ ସମ୍ପର୍କ ଅନ୍ତରଙ୍ଗ ତିକ୍ତ ହୋଇ ନଥିଲା । ପଣ୍ଡିତ ନେହରୁଙ୍କ ଭାଷାରେ କହିବାକୁ ଗଲେ :

"Partly because the great majority of Moslems in India were converts from Hinduism, partly because of long contact, Hindus and Moslems in India developed numerous common traits, habits, ways of living and artistic tastes, especially in northern India in music, painting, architecture, food, clothes, and common traditions. They lived together peacefully as one people, joined each others festivals and celebrations, spoke the same language, lived in more or less the same way, and faced identical economic problems ... .....They developed a highly intricate and sophisticated culture. They wore the same kind of clothes, ate the same type of food, had common artistic pursuits, military pasttimes, haunting, chivalry and games. Polo was a favourite game and elephant fights were popular. All this intercourse and common living took place inspite of the caste system." †

ଏହାର ସାରମର୍ମ ହେଲା—ଭାରତର ଅଧିକାଂଶ ମୁସଲମାନ ହିନ୍ଦୁଧର୍ମାବଲମ୍ବୀଙ୍କ ଭିତରୁ ହିଁ ଆସିଥିଲେ । ପୁଣି ସେମାନଙ୍କ ମଧ୍ୟରେ ଦୀର୍ଘକାଳର ସୁସଂପର୍କ ରହିଥିଲା । ସେଥିପାଇଁ ସେତେବେଳର ଭାରତରେ ହିନ୍ଦୁ ଓ ମୁସଲମାନମାନଙ୍କ ଠାରେ ବହୁ ସାଧାରଣ ତଥା ଅଭିନ୍ନ ଲକ୍ଷଣ, ଆଚରଣ, ଜୀବନ ଧାରଣ ପନ୍ଥା ଓ କଳାନୁରାଗ ପ୍ରକାଶ ପାଇଥିଲା । ବିଶେଷତଃ ଉତ୍ତର ଭାରତର ସଙ୍ଗୀତ, ଚିତ୍ରାଂକନ, ସ୍ଥାପତ୍ୟକଳା, ଖାଦ୍ୟ, ପରିଧାନ ଓ ପରଂପରାରେ ଐକ୍ୟଭାବ ପ୍ରକଟିତ ହୋଇଥିଲା । ଗୋଟିଏ ଜାତି ଭଳି ସେମାନେ ମିଳିମିଶି ରହୁଥିଲେ । ସେମାନେ ପରସ୍ପରଙ୍କର ପର୍ବପର୍ବାଣିରେ ଯୋଗ ଦେଉଥିଲେ,

† Jawaharlal Nehru : 'The Discovery of India', P. 264-265.

ଗୋଟିଏ ଭାଷା ବ୍ୟବହାର କରୁଥିଲେ, ଉଣା ଅଧିକେ ଗୋଟିଏ ପ୍ରକାର ଚଳୁଥିଲେ ଏବଂ ଏକବିଧ ଅର୍ଥନୈତିକ ସମସ୍ୟାର ସମ୍ମୁଖୀନ ହେଉଥିଲେ । ସେମାନେ ଏକ ଅତି ଜଟିଳ ଓ ବିକୃତ ସମ୍ପ୍ରଦାୟର ବିକାଶ ଘଟାଇଥିଲେ । ସେମାନଙ୍କର ଭୋଜନ, ପରିଧାନ, କଳାନୁରାଗ, ସାମରିକ ଅଭ୍ୟାସ, ଶିକାର, ଘୋଡା ଦୌଡ଼ ଓ କ୍ରୀଡ଼ା କସରତରେ କୌଣସି ଭିନ୍ନତା ପ୍ରକାଶ ପାଉ ନଥିଲା । ପୋଲ (ଅଶ୍ୱପୃଷ୍ଠରେ ବସି କନ୍ଦୁକ କ୍ରୀଡ଼ା) ଥିଲା ସେତେବେଳର ପ୍ରିୟ ଖେଳ ଏବଂ ହସ୍ତୀଯୁଦ୍ଧ ଲୋକପ୍ରିୟ ହେଉଥିଲା । ଏହି ସବୁ ସଂସର୍ଗତା ଓ ସହଗୃହିତା ଜାତିଭେଦ ପ୍ରଥାର ପ୍ରଚଳନ ସତ୍ତ୍ୱେ ଅବ୍ୟାହତ ରହିଥିଲା ।

## ଅର୍ଥନୈତିକ ଅବସ୍ଥା

ମୋଗଲ ଯୁଗରେ ଭାରତର ଅର୍ଥନୈତିକ ଅବସ୍ଥା ବିଶେଷ ଉନ୍ନତ ଥିଲା ଏବଂ ତାହା ବିଦେଶୀମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ପ୍ରଥମ ମୋଗଲ ସମ୍ରାଟ ବାବର ତାଙ୍କର 'ଆତ୍ମଜୀବନୀ'ରେ ଉଲ୍ଲେଖ କରିଥିଲେ, "The chief excellence of Hindusthan is that it is a big country with plenty of gold and silver, coined and uncoined." ଅର୍ଥାତ୍, ଭାରତ ତଥା ହିନ୍ଦୁସ୍ଥାନର ପ୍ରଧାନ ଉତ୍କର୍ଷ ଏହି ଯେ ଏହା ପର୍ଯ୍ୟାପ୍ତ ସ୍ୱର୍ଣ୍ଣ ଓ ରୌପ୍ୟ ଏବଂ ସ୍ୱର୍ଣ୍ଣ-ରୌପ୍ୟ ମୋହରରେ ପରିପୂର୍ଣ୍ଣ ଏକ ବିରାଟ ଦେଶ । ସେତେବେଳର ସମୃଦ୍ଧଶାଳୀ ନଗରୀମାନଙ୍କ ମଧ୍ୟରେ ଆଗ୍ରା, ଫତେପୁର, ପଞ୍ଜାବ, ଲାହୋର, ଅହମଦାବାଦ, ବନାରସ, ପାଟନା, ଢ଼ାକା ଓ ଚିଟଗଙ୍ଗ ଅଗ୍ରଗଣ୍ୟ ।

ଅବଶ୍ୟ ସମ୍ପତ୍ତିର ସମବଣ୍ଟନ ଅଭାବରୁ ସମାଜର ନିମ୍ନଶ୍ରେଣୀର ଲୋକମାନେ ଭୋଗବିଳାସମୟ ଜୀବନଯାପନ କରି ପାରୁ ନଥିଲେ । ତେଣୁ ବେର୍‌ନିୟର୍ ଓ ମୁରଲାଣ୍ଡ୍ ପ୍ରଭୃତି ସମାଲୋଚକମାନେ ତାତ୍କାଳୀନ ଅର୍ଥନୈତିକ ବ୍ୟବସ୍ଥାର ତୀବ୍ର ନିନ୍ଦା କରି ତାକୁ ଏକ 'ପ୍ରଶାସନିକ ଲୁଣ୍ଠନ' * ଆଖ୍ୟା ଦେଇ ସେତେବେଳେ ସାଧାରଣ ଜନତା ବର୍ତ୍ତମାନ ଭଳି ଆର୍ଥିକ ବୈଷମ୍ୟ ମଧ୍ୟରେ ହିଁ ଚଳୁଥିଲେ ବୋଲି ମତ ପ୍ରଦାନ କରିଅଛନ୍ତି । ମୁରଲାଣ୍ଡ ଆଗ୍ରର

---

* "The economic system was on the whole was one of administrative exploitation."—Bernier.

ଗୋଟିଏ ପାଦ ଆଗେଇ ଯାଇ କହିଛନ୍ତି, "Weavers, naked themselves, toiled to clothe others. Peasants, themselves hungry, toiled to feed towns and cities." ଅର୍ଥାତ୍ ତନ୍ତୀମାନେ ନିଜେ ଉଲଗ୍ନ ରହି ଅନ୍ୟମାନଙ୍କୁ ଲୁଗା ପିନ୍ଧାଇବା ପାଇଁ କଠୋର ପରିଶ୍ରମ କରୁଥିଲେ; କୃଷକମାନେ ନିଜେ ଅନାହାର ରହି ସହର ଓ ନଗରବାସୀଙ୍କୁ ଖାଦ୍ୟ ଯୋଗାଇବା ପାଇଁ ଅହରହ ଖଟୁଥିଲେ ।

କିନ୍ତୁ ଅର୍ଥନୈତିକ ସମତାର ଅଭାବ ସତ୍ତ୍ୱେ ସେତେବେଳର ସାଧାରଣ ଜୀବନଯାପନ ପ୍ରଣାଳୀ ଯେ ବର୍ତ୍ତମାନ ଠାରୁ ଉନ୍ନତତର ଥିଲା, ନିମ୍ନରେ ପ୍ରଦତ୍ତ ମୂଲ୍ୟ ତାଲିକାରୁ ✝ ଏହାର ପ୍ରମାଣ ମିଳୁଛି ।

ଖ୍ରୀ: ୧୬୦୦ ଠାରୁ ୧୭୨୯ ମଧ୍ୟରେ ବିଭିନ୍ନ ପଦାର୍ଥର ମୂଲ୍ୟ—

| ପଦାର୍ଥର ନାମ | ପ୍ରତ୍ୟେକ ଟଙ୍କା ପ୍ରତି ପଦାର୍ଥର ପରିମାଣ | | |
|---|---|---|---|
| | ୧୬୦୦ ଖ୍ରୀ | ୧୬୫୦ ଖ୍ରୀ | ୧୭୨୯ ଖ୍ରୀ |
| ଗହମ | ୯୦ ସେର | ୧୦୬ ସେର | ୧୩୧ ସେର |
| ବୁଟ | ୧୩୦ „ | ୧୬୦ „ | ୧୭୧ „ |
| ଗୁଡ଼ିଲା | ୫୪ „ | ୬୪ „ | ୧୫୩ „ |
| ଘିଅ | ୧୦.୩ „ | — | ୯.୬ „ |
| ତେଲ | ୧୩.୫ „ | — | ୨୧ „ |
| ଚିନି | ୧୯.୩ „ | — | — |

ଏ ପ୍ରସଙ୍ଗରେ ଡକ୍ଟର୍ ତାରାଚାନ୍ଦ ସ୍ପଷ୍ଟ ମତ ବ୍ୟକ୍ତ କରିଛନ୍ତି, "ସେତେବେଳେ ମଜୁରିର ମୂଲ୍ୟ କମ୍ ଥିଲେ ମଧ୍ୟ ମୋଟ ଉପରେ ଶ୍ରମିକମାନଙ୍କର

✝ ଡକ୍ଟର୍ ତାରାଚାନ୍ଦଙ୍କର ୧୯୬୦ ରେ ପ୍ରଦତ୍ତ ଅଭିଭାଷଣର ଗ୍ରନ୍ଥରୂପ "Society and state in the Mughal period" (1961 ed) ପୃଷ୍ଠା—୫୬ ଦ୍ରଷ୍ଟବ୍ୟ ।

ପ୍ରକୃତ ଉପାର୍ଜନ ବର୍ତ୍ତମାନ ଅପେକ୍ଷା ଅଧିକ ଥିଲା । ମୋଗଲ ଯୁଗର କୃଷକ ବ୍ରିଟିଶ ସମୟର କୃଷକ ଅପେକ୍ଷା ଅଧିକ ଆହାର ସଂଗ୍ରହ କରି ପାରୁଥିଲା ଏବଂ ଜଣେ ଗୃହକର୍ତ୍ତାର ଉପାର୍ଜନରେ ସ୍ତ୍ରୀ ଓ ପାଞ୍ଚୋଟି ସନ୍ତାନ ମନ୍ତ୍ରଣ ବିଶିଷ୍ଟ ଗୋଟିଏ ପରିବାରର ଆବଶ୍ୟକତା ପରିପୂର୍ଣ୍ଣ ହୋଇ ଯାଉଥିଲା ।" * ଏହା ବ୍ୟତୀତ, ଏଡ୍‌ଓ୍ୱାର୍ଡ୍ ଟେରୀ ମତ ପ୍ରକାଶ କରନ୍ତି ଯେ ସେତେବେଳେ 'ସମଗ୍ର ଦେଶର ପ୍ରାଚୁର୍ଯ୍ୟର ପ୍ରଚୁରତା ପର୍ଯ୍ୟାପ୍ତ ଥିଲା' (*the plenty of provisions was very great through out the whole country*) ଏବଂ ଡକ୍ଟର ସ୍ମିଥ୍ § ପ୍ରତିପାଦିତ କରିଛନ୍ତି ଯେ, 'ଆକବର ଓ ଜାହାଙ୍ଗିରଙ୍କ ସମୟରେ ଭୂମିହୀନ ଶ୍ରମିକମାନେ ବର୍ତ୍ତମାନ ଅପେକ୍ଷା ଯଥେଷ୍ଟ ଭଲ ଭାବରେ ଜୀବିକା ନିର୍ବାହ କରୁଥିଲେ ।' ସୁତରାଂ, ବେର୍‌ନିୟର୍ ଓ ମୁରଲାଣ୍ଡଙ୍କ ଉପର୍ଯ୍ୟୁକ୍ତ କଠୋର ମନ୍ତବ୍ୟ ଗୁଡ଼ିକ ନିଃସନ୍ଦେହରେ ଅତିରଞ୍ଜିତ ଏବଂ ପରିହାର୍ଯ୍ୟ ।

## ଶିଳ୍ପ ଓ ବାଣିଜ୍ୟ

ମୋଗଲ ଯୁଗୀୟ ଭାରତ କେବଳ କୃଷିଜାତ ପଦାର୍ଥରେ ସମୃଦ୍ଧ ନଥିଲା, ତତ୍ ସଙ୍ଗେ ସଙ୍ଗେ ଶିଳ୍ପ ଓ ବାଣିଜ୍ୟ କ୍ଷେତ୍ରରେ ମଧ୍ୟ ବେଶ୍ ଅଗ୍ରଗତି କରିଥିଲା । ତଦାନୀନ୍ତନ କାର୍ପାସ, ରେଶମ ଓ ପଶମ ଶିଳ୍ପ ପୃଥିବୀ ବିଖ୍ୟାତ ଥିଲା ଏବଂ ସେସବୁ ଜିନିଷ ବିଦେଶକୁ ରପ୍ତାନି କରା ଯାଉଥିଲା । ଏହା ବ୍ୟତୀତ, ସିନ୍ଦୁକ, ଲେଖନୀ, ମେଜ, ଚୌକି ପ୍ରଭୃତି ବ୍ୟାବହାରିକ ପଦାର୍ଥ ଖୁବ୍ ନିଖୁଣ, ସୁନ୍ଦର ଓ କୁନ୍ଦ ବିକୁନ୍ଦିତ ହୋଇ କାଷ୍ଠ ଓ ଗଜଦନ୍ତରୁ ନିର୍ମିତ ହେଉଥିଲା । ଏସବୁ ଶିଳ୍ପ କାରଖାନା ମଧ୍ୟରୁ କେତେକ ରାଜାଧୀନ ଥିଲା ଓ ଅନ୍ୟ କେତେକ ଘରୋଇ ଉଦ୍ୟମରେ ରାଜାଙ୍କର ପୃଷ୍ଠପୋଷକତାରେ ପରିଚାଳିତ ହେଉଥିଲା । ଏସବୁ ଶିଳ୍ପ କାରଖାନାରେ ନିଯୁକ୍ତ ବିଶେଷଜ୍ଞମାନଙ୍କର ଦକ୍ଷତା ଓ କର୍ମକୁଶଳତା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖା ଯାଉଥିଲା ଏବଂ ସେମାନଙ୍କୁ ଆବଶ୍ୟକୀୟ ତାଲିମ ମଧ୍ୟ ଦିଆ ଯାଉଥିଲା । ୧୬୦୦ରେ ଆମେରିକାରୁ ଆମଦାନୀ କରି ଧୂଆଁ ବୃକ୍ଷ ପ୍ରବର୍ତ୍ତନ କରାଗଲା ପରେ ତମାଖୁ ଜାତ ପଦାର୍ଥର ଉତ୍ପାଦନ ଏଭଳି ବୃଦ୍ଧି ପାଇଲା ଯେ ଜାତୀୟ ସ୍ୱାସ୍ଥ୍ୟ ଦୃଷ୍ଟିରୁ ୧୬୧୭ ରେ ଜାହାଙ୍ଗିର ଧୂମପାନକୁ ନିଷେଧ କରିବାକୁ ବାଧ୍ୟ ହୋଇଥିଲେ ।

---

* ଏକନ ।

§ *An Advanced History of India.* ପୁସ୍ତକର ପୃ-୫୬୭ ଦ୍ରଷ୍ଟବ୍ୟ ।

ସେତେବେଳର ଯାତାୟାତ ପଥ ଗୁଡ଼ିକ ବିଶେଷ ଉନ୍ନତ ନଥିଲା ସତ, କିନ୍ତୁ ବିଭିନ୍ନ ସହର ଓ ନଗର ମଧ୍ୟରେ ସଂଯୋଗ ରକ୍ଷା ନିମିତ୍ତ ତାହା ଯଥେଷ୍ଟ ଥିଲା । ଏହା ବ୍ୟତୀତ, ଜଳପଥରେ ମଧ୍ୟ ଯୋଗାଯୋଗ ସ୍ଥାପନ କରାଯାଇ ପାରୁଥିଲା । ସେତେବେଳକୁ ପ୍ରାଚୀନ କାଳୀନ ନୌବାଣିଜ୍ୟର ପ୍ରସାର ହ୍ରାସ ପାଇଥିଲେ ସୁଦ୍ଧା ନୌଶିଳ୍ପର ଅବସାନ ଘଟି ନଥିଲା । ତାତ୍କାଳୀନ ପ୍ରଧାନ ବନ୍ଦରଗୁଡ଼ିକ ମଧ୍ୟରେ ସୁରାଟ, କାମ୍ବେ, କାଲିକଟ, କୋଚିନ, ଗୋଆ, ମସୁଲିପଟ୍ଟମ, ଚଟ୍ଟଗାଁ ବନ୍ଦରର ନାମ ଉଲ୍ଲେଖ ଯୋଗ୍ୟ । ସେସବୁ ବନ୍ଦରରୁ ପଡ଼ୋଶୀ ଏସୀୟ ଓ ୟୁରୋପୀୟ ରାଜ୍ୟଗୁଡ଼ିକୁ କାର୍ପାସ ବସ୍ତ୍ର, ଶାଳ, ଯବକ୍ଷାର, ଅଫିମ, ଚିନି, ଗୋଲମରିଚ ପ୍ରଭୃତି ପଦାର୍ଥ ରପ୍ତାନି ସୂତ୍ରରେ ପ୍ରେରଣ କରା-ଯାଉଥିଲା । ପୁଣି ସେତେବେଳେ ରପ୍ତାନି ଶୁଳ୍କ ମଧ୍ୟ ବେଶୀ ବାଧକର ନଥିଲା, କାରଣ ତାହା ପ୍ରାୟ ଶତକଡ଼ା ଦୁଇଭାଗ ଠାରୁ ସାଢ଼େ ତିନିଭାଗ ମଧ୍ୟରେ ଧାର୍ଯ୍ୟ ହୋଇଥିଲା ।

ତାତ୍କାଳୀନ ଭାରତର ବହିର୍ବାଣିଜ୍ୟ କିଭଳି ଉନ୍ନତ ଥିଲା, ତାହା ନିମ୍ନରେ ପ୍ରଦତ୍ତ ପଣ୍ଡିତ ନେହରୁଙ୍କର ବିବରଣୀରୁ ସ୍ପଷ୍ଟ ଉପଲବ୍ଧ ହୁଏ । ସେ ତାଙ୍କର 'ଭାରତ ଆବିଷ୍କାର' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ଯେ, ମୋଗଲ ଯୁଗ ସାରା କେନ୍ଦ୍ର-ଏସିଆ ସହିତ ଭାରତର ଘନିଷ୍ଠ ସମ୍ପର୍କ ରହିଥିଲା । ଏହି ସମ୍ପର୍କ କାଳକ୍ରମେ ରୁଷିଆକୁ ପ୍ରସାରିତ ହୋଇଥିଲା ଏବଂ ସେଠାକୁ ଭାରତରୁ କୂଟନୀତିକ ପ୍ରତିନିଧି ଓ ବାଣିଜ୍ୟ ଦୂତ ଯାଇଥିଲେ । ୧୫୩୨ ରେ ବାବରଙ୍କ ରାଜଦୂତ ଖୋଜା ହୁସେନ୍ ଏକ ବନ୍ଧୁତ୍ୱପୂର୍ଣ୍ଣ ଚୁକ୍ତି ସଂପାଦନା କରିବା ଉଦ୍ଦେଶ୍ୟରେ ରୁଷିଆରେ ପହଞ୍ଚିଥିଲେ । ୧୬୧୩ ଠାରୁ ୧୬୭୫ ମଧ୍ୟରେ ଫେଡ଼ୋରଭିଚଙ୍କ ଶାସନ କାଳରେ ଭାରତୀୟ ବ୍ୟବସାୟୀମାନେ ଭଲଗା ଉପତ୍ୟକାରେ ବସତି ସ୍ଥାପନ କରିଥିଲେ । ୧୬୨୫ ରେ ଭାରତର ବୟନଶିଳ୍ପୀମାନଙ୍କୁ ରୁଷିଆକୁ ନିମନ୍ତ୍ରଣ କରାଯାଇଥିଲା । ୧୬୯୫ ରେ ସିମନ ମେଲେନ୍କି ନାମକ ଜନୈକ ରୁଷ ବାଣିଜ୍ୟ ପ୍ରତିନିଧି ଭାରତକୁ ଆସିଥିଲେ ଏବଂ ଆଉରଙ୍ଗଜେବଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇଥିଲେ । *

---

* Jawaharlal Nehru ଙ୍କର 'The Discovery of India', (1960 ed) ପୃ· ୨୬୧ ଦ୍ରଷ୍ଟବ୍ୟ ।

ଏହା ସତ୍ତ୍ୱେ ମୋଗଲ ଯୁଗର ଶେଷାବସ୍ଥାରେ ରାଜନୈତିକ ଅବ୍ୟବସ୍ଥା ଓ ଶାସନ ତାନ୍ତ୍ରିକ ସଙ୍କଟ ଉତ୍କଟ ହୋଇ ଉଠିବା ଫଳରେ ଭାରତର ଅର୍ଥ-ନୈତିକ ଅବସ୍ଥାରେ ଘୋର ବିପର୍ଯ୍ୟୟ ଦେଖା ଦେଇଥିଲା ଏବଂ ତାର ଶିଳ୍ପ ଓ ବାଣିଜ୍ୟର ବିକାଶ ମୂଳରେ କୁଠାରାଘାତ ହୋଇଥିଲା ।

## ସ୍ଥାପତ୍ୟଶିଳ୍ପ ଓ ଚିତ୍ରକଳା

କଳା ଓ ସ୍ଥାପତ୍ୟର ବିକାଶ ଓ ପ୍ରସାର କ୍ଷେତ୍ରରେ ମୋଗଲ ଯୁଗର ଅବଦାନ ବିଶେଷ ଉଲ୍ଲେଖନୀୟ । ବରଂ, ଗୋଟିଏ ଦୃଷ୍ଟିରୁ ବିଚାର କଲେ, ରାଜ୍ୟ ଶାସନ କ୍ଷେତ୍ରରେ ରହିଥିବା ହିନ୍ଦୁ ମୁସଲମାନ ବ୍ୟବଧାନ କଳା ଓ ସାହିତ୍ୟର ପରସ୍ପର ମଧ୍ୟରେ ଲୁକ୍‌କାୟିତ ହୋଇ ଯାଉଥିଲା । ଅଉରଙ୍ଗଜେବଙ୍କୁ ବାଦ ଦେଲେ ତାଙ୍କ ପୂର୍ବବର୍ତ୍ତୀ ସମଗ୍ର ମୋଗଲ ସମ୍ରାଟ ଥିଲେ ଶିଳ୍ପ କଳାର ପ୍ରକୃତ ଉପାସକ । ବାବରଙ୍କ ବେଳର ବହୁ କଳାକୃତି ସମୟର ସ୍ରୋତରେ ଲୋପ ପାଇ ଯାଇଥିଲେ ସୁଦ୍ଧା ୧୫୨୬ ରେ ନିର୍ମିତ ପାନିପଥ ନିକଟବର୍ତ୍ତୀ କାବୁଲ ବାଗର ମସଜିଦ୍, ରୋହିଲାଖଣ୍ଡ ଅନ୍ତର୍ଗତ ସାମ୍ଭଲସ୍ଥିତ ଜାମି ମସଜିଦ୍ ଓ ଆଗ୍ରାସ୍ଥ ଲୋଦୀ ଦୁର୍ଗର ମସଜିଦ୍ ତାଙ୍କର ଅମର କୀର୍ତ୍ତିର ସ୍ମାରକୀ ରୂପେ ଅଦ୍ୟାବଧି ଦଣ୍ଡାୟମାନ । ପଞ୍ଜାବର ଫତେବାଦ ଠାରେ ଥିବା ସୁବିଶାଳ ଭଗ୍ନ ମସଜିଦ୍‌ଟି ହୁମାୟୁନଙ୍କ କଳା ପ୍ରେମର କମ୍ ନିଦର୍ଶନ ନୁହେଁ ।

ତେବେ ଶେରଶାହଙ୍କ ସମୟରେ ଭାରତୀୟ ସ୍ଥାପତ୍ୟକଳା କ୍ଷେତ୍ରରେ ଯୁଗାନ୍ତର ସୃଷ୍ଟି ହୋଇଥିଲା । ଦିଲ୍ଲୀର 'ପୁରୁଣା କିଲ୍ଲା' ଠାରେ ନିର୍ମିତ କିଲା-ଇ-ଖୁନା ମସଜିଦ ଭାରତର ଏକ ଶ୍ରେଷ୍ଠ କାରୁକାର୍ଯ୍ୟ ବିମଣ୍ଡିତ ରମଣୀୟ କଳାକୃତି ରୂପେ ଖ୍ୟାତି ଅର୍ଜନ କରିଥିଲା ଏବଂ ସେଥିରେ ପାର୍ଶିଆନ୍ କଳାର ପ୍ରଭାବ ସ୍ପଷ୍ଟ ପ୍ରତିଫଳିତ ହୋଇଥିଲା । ବିହାରର ସସରାମ ଠାରେ ନିର୍ମିତ ଶେରଶାହଙ୍କର ସ୍ମୃତିପୀଠଟିରେ ହିନ୍ଦୁ ଓ ମୁସଲମାନ ଉଭୟ ପ୍ରକାର ସ୍ଥାପତ୍ୟ କଳାର ସମନ୍ୱୟ ଘଟିଥିଲା ଏବଂ ତାହା କେବଳ ଭାରତୀୟ କାରୁକଳାର ଏକ ସୂକ୍ଷ୍ମ ନିଦର୍ଶନ ନୁହେଁ, ତତ୍ ସଙ୍ଗେ ସଙ୍ଗେ ସମ୍ପ୍ରଦାୟଗତ ସହଯୋଗିତାର ଏକ ପ୍ରକୃଷ୍ଟ ଦୃଷ୍ଟାନ୍ତ ମଧ୍ୟ ।

ବାସ୍ତବରେ ଦେଖିବାକୁ ଗଲେ, ଆକବରଙ୍କ ସମୟରେ ହିଁ ମୋଗଲ-ଯୁଗୀୟ ସ୍ଥାପତ୍ୟ କଳାର ଉଲ୍ଲେଖ ଯୋଗ୍ୟ ବିକାଶ ଓ ବିସ୍ତାର ଘଟିଥିଲା ।

ଆକବର ତାଙ୍କର ରାଜଧାନୀ ଆଗ୍ରା ଠାରେ ଦିବାନ୍‌-ଈ-ଆମ୍‌, ଦିବାନ-ଈ-ଖାସ, ଜାହାଙ୍ଗିରୀ ମହଲ କେବଳ ନିର୍ମାଣ କରି ନଥିଲେ, ସେଠାରୁ ଛବିଶ ମାଇଲ ଦୂରବର୍ତ୍ତୀ ପାହାଡ଼ିଆ ଅଞ୍ଚଳ ଫତେପୁର ସିକ୍ରୀକୁ ଏକ ସ୍ଥାପତ୍ୟ ମନ୍ଦିରରେ ପରିଣତ କରି ଦେଇଥିଲେ । ଗୁଜରାଟ ବିଜୟର ନିଦର୍ଶନ ରୂପେ ଦଣ୍ଡାୟମାନ ୧୭୬ ଫୁଟ ଉଚ୍ଚତା ବିଶିଷ୍ଟ ପ୍ରବେଶ ଦ୍ୱାର 'ବୁଲନ୍ଦ ଦରବାଜା' ତାଙ୍କର କଳା ପ୍ରେମର ଅମର ସ୍ମାରକୀ । । ଜାହାଙ୍ଗିରଙ୍କ ଦ୍ୱାରା ୧୬୦୫ ଠାରୁ ୧୬୧୩ ମଧ୍ୟରେ ନିର୍ମିତ ହୋଇଥିବା ସିକନ୍ଦ୍ରାସ୍ଥ ଆକବରଙ୍କ ପ୍ରକାଣ୍ଡ କବର ପୀଠର ନକ୍ସା ସମ୍ରାଟ ଆକବରଙ୍କ ଜୀବନ କାଳରେ ହିଁ ପ୍ରସ୍ତୁତ କରାଯାଇ ଥିଲା । ଜାହାଙ୍ଗିରଙ୍କ ସମୟରେ ଭାରତୀୟ ସ୍ଥାପତ୍ୟ କଳା ବିଶେଷ ଅଗ୍ରଗତି କରି ନଥିଲେ ମଧ୍ୟ ସେ ସେଥିର କ୍ଷେତ୍ରରେ ବିତସ୍ପୃହ ନଥିଲେ । ସିକନ୍ଦ୍ରାର ଆକବରଙ୍କ କବର ପୀଠ ବ୍ୟତୀତ ଆଗ୍ରାସ୍ଥ ଇତିମାଦ୍ଦୁଲା କବର † ମଧ୍ୟ ତାଙ୍କ ସମୟରେ ବେଗମ୍‌ ନୂରଜାହାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

କିନ୍ତୁ ମୋଗଲ ଯୁଗର ସମସ୍ତ ସ୍ଥାପତ୍ୟ ସ୍ରଷ୍ଟାଙ୍କ କୃତୀକୁ ଶାହଜାହାନଙ୍କ ଶିଳ୍ପ ଭାସ୍କର୍ଯ୍ୟ ବଳି ପଡ଼ିଥିଲା । ଦିଲ୍ଲୀର ଦିବାନ୍‌ ଈ-ଖାସ୍‌, ଓ ଦିବାନ୍‌ ଈ-ଆମ୍‌; ଆଗ୍ରାର ମୋତି ମସଜିଦ୍‌, ଜାମି ମସଜିଦ୍‌, ଓ ବିଶ୍ୱର ଏକ ତଥାକଥିତ ସପ୍ତାଶ୍ଚର୍ଯ୍ୟ 'ତାଜମହଲ' ତାଙ୍କର ଅମ୍ଳାନ ଅବଦାନ । ଏହା ବ୍ୟତୀତ, ଆଗ୍ରା, ଦିଲ୍ଲୀ, କାବୁଲ, ଲାହୋର, ଆଜମୀର, କାଶ୍ମୀର, ଅହମଦବାଦ ପ୍ରଭୃତି ସ୍ଥାନରେ ସେ ବହୁ ଦୁର୍ଗ, ପ୍ରାସାଦ, ମସଜିଦ୍‌ ଓ ଉଦ୍ୟାନ ନିର୍ମାଣ କରି ଯାଇଥିଲେ । ଆକବର ଓ ଶାହଜାହାନଙ୍କର କଳାକୃତୀର ତୁଳନାତ୍ମକ ବିଚାର କରିବାକୁ ଯାଇ ଡକ୍ଟର୍‌ କାଳୀକିଙ୍କର ଦତ୍ତ ❋ ଯଥାର୍ଥରେ କହିଛନ୍ତି ଯେ ବିଶାଳତା ଓ ମୌଳିକତା ଦୃଷ୍ଟିରୁ ଶାହଜାହାନଙ୍କ ନିର୍ମାଣକଳା ନିକୃଷ୍ଟତର ହେଲେ ମଧ୍ୟ ବିସ୍ତୃତ ରୂପବିନ୍ୟାସ ତଥା ସମୃଦ୍ଧ ଓ ସୁଦକ୍ଷ ଅଳଙ୍କରଣ କ୍ଷେତ୍ରରେ ତାହା

---

† ନୂରଜାହାନ ନିଜ ପିତା (ଇତିମାଦ୍ଦୁଲା)ଙ୍କର ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ମୂଲ୍ୟବାନ ମର୍ମର ପ୍ରସ୍ତରରେ ସେଥିର କଳାଶ୍ରୀ ମଣ୍ଡିତ କବର ପୀଠ ନିର୍ମାଣ କରିଥିଲେ ।

❋ 'An Advanced History of India'
ପୁସ୍ତକର ପୃ: ୫୮୪ ଦ୍ରଷ୍ଟବ୍ୟ ।

ଉତ୍କୃଷ୍ଟତର । ସେଥିଯୋଗୁଁ ଶାହଜହାନଙ୍କର ସ୍ଥାପତ୍ୟକୃତିକୁ 'ବୃହତ୍ତର ରତ୍ନାଭରଣ' (Jewellery on a bigger scale) ବୋଲି କୁହାଯାଉଅଛି । ଶାହଜହାନଙ୍କ ପରେ ଅଉରଙ୍ଗଜେବଙ୍କ ପୃଷ୍ଠପୋଷକତା ଅଭାବରୁ ମୋଗଲ-ଯୁଗୀୟ କଳାର ଅଧଃପତନ ଘଟିଥିଲା ।

ସ୍ଥାପତ୍ୟଶିଳ୍ପ ଭଳି ଚିତ୍ରକଳା ବା ଅଙ୍କନ କଳାର ବିକାଶ ଦିଗରେ ମଧ୍ୟ ଏହି ଯୁଗର ଅବଦାନ ରହିଅଛି । ପୂର୍ବବର୍ତ୍ତୀ ମୁସଲମାନ ଯୁଗର ସୁଲତାନଗଣ ଅଙ୍କନ କଳାକୁ ଅଣ-ଇସଲାମୀ ବୃତ୍ତି ରୂପେ ଗ୍ରହଣ କରି ଥିବାରୁ ସେତେବେଳେ ତାର ବିକାଶ ସାଧିତ ହୋଇପାରି ନଥିଲା । ହୁମାୟୁନ ପେର୍ଶିଆରେ ନିର୍ବାସିତ ଜୀବନ ଅତିବାହିତ କରୁଥିଲା ବେଳେ ଏହି କଳା ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ତାଙ୍କ ଭାରତ ପ୍ରତ୍ୟାବର୍ତ୍ତନ ସମୟରେ ସେ ସେଠାରୁ ଅବ୍‌ଦୁସ୍ ସମଦ ଓ ମୀର୍ ସୟିଦ ଅଲ୍ଲୀ ନାମକ ଦୁଇଜଣ ବିଶିଷ୍ଟ ଚିତ୍ରକାରଙ୍କୁ ସଙ୍ଗରେ ନେଇ ଆସିଥିଲେ । ହୁମାୟୁନ ଓ ଆକବର ତାଙ୍କ ଠାରୁ ଚିତ୍ରକଳା ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିବା ସଙ୍ଗେ ସଙ୍ଗେ ରାଜ୍ୟରେ ତାର ପ୍ରଚାରପ୍ରସାର ନିମିତ୍ତ ପୃଷ୍ଠପୋଷକତା କରିଥିଲେ । ଆକବରଙ୍କ ସମୟରେ ସୁଖ୍ୟାତି ଅର୍ଜନ କରିଥିବା ସତର ଜଣ କଳାକାରଙ୍କ ମଧ୍ୟରେ ବାସବାନ୍, ଲାଲ, ମୁକୁନ୍ଦ, ଦାଶନାଥ, ହରିବଂଶ ପ୍ରମୁଖ ଅନ୍ୟୂନ ତେର ଜଣ ଶିଳ୍ପୀ ହିନ୍ଦୁ ଥିଲେ ବୋଲି ଅବୁଲ ଫଜଲଙ୍କ ବିବରଣୀରୁ ଜଣାଯାଏ । ତାତ୍କାଳୀନ ମୁସଲମାନ କଳାକାରମାନଙ୍କ ମଧ୍ୟରେ ଅବ୍‌ଦୁସ୍ ସମଦ ଓ ଫରୁକ୍ ବେଗଙ୍କ ନାମ ଉଲ୍ଲେଖ-ଯୋଗ୍ୟ । ଫତେପୁର ସିକ୍ରୀଠାରେ ପ୍ରାଚୀରରେ ଅଙ୍କିତ ଚିତ୍ରାବଳୀ ତଦାନୀନ୍ତନ ସମ୍ମିଳିତ ହିନ୍ଦୁ ଓ ଇସଲାମୀ କଳାପ୍ରତିଭାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ଜାହାଙ୍ଗିର ଚିତ୍ରକଳାର ବିକାଶ ଦିଗରେ ଅଧିକ ଧ୍ୟାନ ଦେଇଥିଲେ ଏବଂ ଶିଳ୍ପୀମାନଙ୍କୁ ଉତ୍ସାହିତ କରିବାକୁ ଯାଇ ଅଧିକ ମୂଲ୍ୟ ଦେଇ ଚିତ୍ରପଟମାନ ସଂଗ୍ରହ କରୁଥିଲେ । ଏହା ଦ୍ୱାରା ସେ ଚିତ୍ରକଳାର ବିକାଶ ଦିଗରେ କେବଳ ସହାୟକ ହୋଇ ନଥିଲେ, ତତ୍ ସଂଗେ ସଂଗେ ପାର୍ଶିଆନ୍ ପ୍ରଭାବରୁ ମୁକ୍ତ ଏକ ସ୍ୱତନ୍ତ୍ର ଭାରତୀୟ ଚିତ୍ରକଳାର ଅଭ୍ୟୁଦୟ ନିମିତ୍ତ ଅନୁକୂଳ ପରିବେଶ ସୃଷ୍ଟି କରିଥିଲେ । ଜାହାଂଗିରଙ୍କ ରାଜତ୍ୱ କାଳର ହିନ୍ଦୁ କଳାକାରମାନଙ୍କ ମଧ୍ୟରେ ବିଶନ ଦାସ, ମନୋହର ଓ ଗୋବର୍ଦ୍ଧନଙ୍କ ନାମ ଉଲ୍ଲେଖ ଯୋଗ୍ୟ ।

ସେହି ସମୟର ମୁସଲମାନ ଚିତ୍ରଶିଳ୍ପୀଙ୍କ ମଧ୍ୟରେ ଆଗା ରେଜା, ଅବୁଲ ହାସାନ୍, ମହମ୍ମଦ ନାଦିର, ମହମ୍ମଦ ମୁରାଦ ଓ ଉସ୍ତାଦ ମାନ୍ସୁର ପ୍ରସିଦ୍ଧି ଲାଭ କରିଥିଲେ ।

ଜାହାଙ୍ଗିରଙ୍କ ପରେ ଶାହଜାହାନ ସ୍ଥାପତ୍ୟ ଶିଳ୍ପ ପ୍ରତି ଅଧିକ ଦୃଷ୍ଟି ଦେଇ ଚିତ୍ରକଳା ପ୍ରତି ଔଦାସୀନ୍ୟ ପ୍ରକାଶ କରିବା ଫଳରେ ଏହାର ଅଧଃପତନ ଆରମ୍ଭ ହୋଇଥିଲା ଏବଂ ଅଉରଙ୍ଗଜେବ ଚିତ୍ରାଙ୍କନକୁ ଇସଲାମଧର୍ମ ବିରୋଧୀ ଭାବରେ ଅଭିହିତକରି ତାର ବିରୁଦ୍ଧାଚରଣ କରିବା ଦ୍ୱାରା ମୋଗଲ ଯୁଗୀୟ କଳାର ବିପର୍ଯ୍ୟୟ ଘଟିଥିଲା । ତଥାପି ଚିତ୍ରାଙ୍କନ ପ୍ରତିଭା ସମ୍ପୂର୍ଣ୍ଣ ବିଲୁପ୍ତ ହୋଇ ଯାଇନଥିଲା । ସ୍ୱୟଂ ଅଉରଙ୍ଗଜେବଙ୍କ ଚିତ୍ରପଟ ସମେତ ତାଙ୍କ ଶାସନ କାଳର କେତେକ ଘଟଣାବଳୀର ଚିତ୍ରାବଳୀ ଏ ଯାବତ୍ ସଂଗ୍ରହାଳୟ-ମାନଙ୍କରେ ସଂଗୃହୀତ ହୋଇ ରହିଛି । ସୂକ୍ଷ୍ମ ବର୍ଣ୍ଣନା ପରିପାଟୀ ଓ ନିଚ୍ଛକ ବାସ୍ତବତାର ପରିପ୍ରକାଶ ମୋଗଲ ଚିତ୍ରାଙ୍କନର ବିଶେଷତ୍ୱ ରୂପେ ଗ୍ରହଣୀୟ ।

ମୋଗଲ ଶାସନର କ୍ରମବିଲୟ କାଳରେ ମୋଗଲ ଦରବାରର ବିଶିଷ୍ଟ ଶିଳ୍ପୀଗଣ ଯେତେବେଳେ ଲକ୍ଷ୍ନୌ, ପାଟନା, କଲିକତା, ହାଇଦରାବାଦ, ମହୀଶୂର ପ୍ରଭୃତି ସ୍ଥାନକୁ ନିଜର କର୍ମକ୍ଷେତ୍ର ରୂପେ ବାଛି ନେଇଥିଲେ, ସେତେ-ବେଳେ ରାଜପୁତନାର କଳାକାରମାନେ ହିନ୍ଦୁ ପୁରାଣ ଗ୍ରନ୍ଥର ଅବଲମ୍ବନରେ ଚିତ୍ରାଙ୍କନ କ୍ଷେତ୍ରରେ ନୂତନ କଳାପ୍ରତିଭା ପ୍ରଦର୍ଶନ କରିଥିଲେ ଏବଂ ସେହି ରାଜପୁତ କଳାର ସ୍ୱାତନ୍ତ୍ର୍ୟ ଅବଶ୍ୟ ସ୍ୱୀକାର୍ଯ୍ୟ ।

## ସଙ୍ଗୀତ ଓ ସାହିତ୍ୟ

ଅଉରଙ୍ଗଜେବଙ୍କ * ବ୍ୟତୀତ ଅନ୍ୟ ସମସ୍ତ ମୋଗଲ ଶାସକ ନୃତ୍ୟ, ଗୀତ ଓ ସଙ୍ଗୀତର ସୁମଧୁର ମୂର୍ଚ୍ଛନାରେ ଆତ୍ମବିଭୋର ହେଉଥିଲେ । ବାବର ଥିଲେ ଜଣେ ଗୀତିକାର; ହୁମାୟୁନଙ୍କ ପ୍ରାର୍ଥନା ମଣ୍ଡପରେ ଶୁଣା

---

* ଅଉରଙ୍ଗଜେବ ଦରବାରର ଗାୟକମାନଙ୍କୁ ବରଖାସ୍ତ କରିଦେଲା ପରେ ସେମାନେ ମୃତ ସଙ୍ଗୀତକୁ କବର ଦେବା ଛଳନାରେ ଏକ ବ୍ୟଙ୍ଗ ଶବ ଶୋଭାଯାତ୍ରାର ଆୟୋଜନ କରିଥିଲେ । ସେଥିରେ ଉତ୍ତ୍ୟକ୍ତ ହୋଇ ଅଉରଙ୍ଗଜେବ ରାଜ୍ୟରେ ସଙ୍ଗୀତର ପ୍ରଚାର ଉପରେ ଦୃଢ଼ ନିଷେଧାଜ୍ଞା ଜାରି କରିଥିଲେ ।

ଯାଉଥିବା ସଙ୍ଗୀତର ସୁଲଳିତ ସ୍ୱର; ଆକବରଙ୍କ ପ୍ରଗାଢ଼ ସଙ୍ଗୀତପ୍ରେମ ତାଙ୍କ ଦରବାରକୁ ବଶିଷ୍ଟ ଗାୟକ, ବାଦକ ଓ ସଙ୍ଗୀତଜ୍ଞମାନଙ୍କୁ ଆକର୍ଷିତକରି ଆଣୁଥିଲା । ଅବୁଲ ଫଜଲଙ୍କ ବିବରଣୀରୁ ଜଣାଯାଏ ଯେ ଆକବରଙ୍କ ଦାରବାରରେ ତାନ୍‌ସେନ୍, ବାଜବାହାଦୁର ପ୍ରମୁଖ ଛତିଶ ଜଣ ସୁଗାୟକ ନିଯୁକ୍ତ ହୋଇଥିଲେ । ଶାହଜହାନ କଣ୍ଠ-ସଙ୍ଗୀତ ସାଙ୍ଗକୁ ଯନ୍ତ୍ର-ସଙ୍ଗୀତର ବିକାଶ ପ୍ରତି ଧ୍ୟାନ ଦେଇଥିଲେ । ତାଙ୍କ ସମୟର ଶ୍ରେଷ୍ଠ ସଙ୍ଗୀତଜ୍ଞମାନଙ୍କ ମଧ୍ୟରେ ଜଗନ୍ନାଥ ଓ ଜନାର୍ଦ୍ଦନ ଭଟ୍ଟଙ୍କ ନାମ ଉଲ୍ଲେଖ ଯୋଗ୍ୟ । ପ୍ରକୃତରେ ଦେଖିବାକୁ ଗଲେ, ସମସ୍ତ କ୍ଷେତ୍ର ଅପେକ୍ଷା ଏହି ସଙ୍ଗୀତ ସାମ୍ରାଜ୍ୟର ହିନ୍ଦୁ-ମୁସଲମାନ ସଂସ୍କୃତି ସର୍ବାଧିକ ସମନ୍ୱିତ ହୋଇଥିଲା ଏବଂ ସାଂପ୍ରତିକ ହିନ୍ଦୁସ୍ଥାନୀ ସଙ୍ଗୀତର ବିକାଶ ମୂଳରେ ତାର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଥିଲା ।

ମୋଗଲ ସମ୍ରାଟଗଣ ସାହିତ୍ୟର ରସାସ୍ୱାଦନରେ କୁଣ୍ଠିତ ନଥିବା ଯୋଗୁଁ ଆଲୋଚ୍ୟ ଯୁଗରେ ବହୁ ପ୍ରତିଭାର ବିକାଶ ଘଟିଥିଲା ଏବଂ ଅନେକ ସୁସାହିତ୍ୟର ସୃଷ୍ଟି ସମ୍ଭବ ହୋଇଥିଲା । ଏହି ଯୁଗରେ ବିଶେଷତଃ ଆକବରଙ୍କ ଶାସନ କାଳରେ ବହୁ କାବ୍ୟକବିତା, ଐତିହାସିକ ରଚନା ଓ ଅନୁବାଦ ଗ୍ରନ୍ଥ ପ୍ରକାଶ ପାଇଥିଲା । ତନ୍ମଧ୍ୟରୁ ଅବୁଲ ଫଜଲଙ୍କର 'ଆଇନ-ଇ-ଆକବରୀ' ଓ 'ଆକବର ନାମା', ନିଜାମୁଦ୍ଦିନ ଅହମ୍ମଦଙ୍କର 'ତବ୍‌କତ୍-ଇ-ଆକବରୀ'; ବାଦାଉନୀଙ୍କର 'ମୁନ୍ତଖାବ-ଉତ୍‌ତାରିଖ' ଉଲ୍ଲେଖନୀୟ ଐତିହାସିକ ଗ୍ରନ୍ଥ । ଅନୁବାଦ କ୍ଷେତ୍ରରେ ମଧ୍ୟ ସେତେବେଳେ ସାର୍ଥକ ଉଦ୍ୟମ କରାଯାଇଥିଲା । ବାଦାଉନୀ ଚାରିବର୍ଷ ପରିଶ୍ରମକରି ୧୫୯୧ରେ 'ରାମାୟଣ'ର ଅନୁବାଦ କରିଥିଲେ ଏବଂ ବହୁ ମୁସଲିମ ଲେଖକଙ୍କର ମିଳିତ ଉଦ୍ୟମରେ 'ରଜମନାମା' ନାମରେ 'ମହାଭାରତ' ଅନୂଦିତ ହୋଇଥିଲା । ଏତଦ୍‌ବ୍ୟତୀତ, ସେହି ସମୟରେ 'ଲୀଳାବତୀ ସୂତ୍ର', 'ଅଥର୍ବବେଦ', 'ହରିବଂଶ', 'ରାଜତରଙ୍ଗିଣୀ' 'ପଞ୍ଚତନ୍ତ୍ର' ପ୍ରଭୃତି ସଂସ୍କୃତ ଗ୍ରନ୍ଥ ପାର୍ସି ଭାଷାରେ ଅନୁବାଦ କରାଯାଇଥିଲା । ସେତେବେଳର ପ୍ରଧାନ କବିମାନଙ୍କ ମଧ୍ୟରେ ଘିଜାଲି, ଫୈଜି ଓ ମହମ୍ମଦ ହୁସେନ୍ ନାଜରୀ ନାମ ଉଲ୍ଲେଖ ଯୋଗ୍ୟ ।

ଆକବରଙ୍କ ଉତ୍ତରାଧିକାରୀ ଜାହାଙ୍ଗିର ମଧ୍ୟ ଥିଲେ ଜଣେ ପ୍ରଗାଢ଼ ସାହିତ୍ୟପ୍ରେମୀ । ବାବରଙ୍କ ଭଳି ସେ ମଧ୍ୟ ଗୋଟିଏ ସର୍ବାଙ୍ଗ ସୁନ୍ଦର ଆତ୍ମଜୀବନୀ ପ୍ରଣୟନ କରିଥିଲେ । ତାଙ୍କ ସମୟର ପ୍ରଧାନ କୃତୀ ମଧ୍ୟରେ

'ମାସୀର-ଈ-ଜାହାଙ୍ଗିରୀ', 'ଇକ୍‌ବାଲନାମା-ଈ-ଜାହାଙ୍ଗିରୀ' ଓ 'ଜୁବ୍‌ଦୁତ୍ ତାରିଖ' ଅଗ୍ରଗଣ୍ୟ । ଜାହାଙ୍ଗିରଙ୍କ ଦରବାରର ପଣ୍ଡିତବର୍ଗଙ୍କ ମଧ୍ୟରେ ଗିଆସ୍‌ବେଗ୍, ନକୀବ ଖାଁ, ମୁତାବଦ ଖାଁ, 'ନଆମତୁଲ୍ଲା ଓ ଅବଦୁଲ୍ଲ-ହକ୍ ଧିଲାବ ପ୍ରଧାନ ।

ଜାହାଙ୍ଗିରଙ୍କ ପରେ ଶାହଜହାନ ମଧ୍ୟ ସୁସାହିତ୍ୟ ବିକାଶର ପୃଷ୍ଠ-ପୋଷକତା କରିଥିଲେ । ଅବଦୁଲ୍ଲ ହମିଦ ଲାହୋରୀ ଓ ଅମିନାଈ କ୍ୱାଜବିନୀଙ୍କର 'ବାଦଶାହ ନାମା', ଇନାୟତ୍ ଖାଁଙ୍କର 'ଶାହଜହାନାମା', ମହମ୍ମଦ ଶାଲୀଙ୍କର 'ଆମଲ-ଈ-ଶାଲି' ଶାହଜହାନଙ୍କ ଶାସନ କାଳର ଶ୍ରେଷ୍ଠ ଗ୍ରନ୍ଥ । ଶାହଜହାନଙ୍କ ଜ୍ୟେଷ୍ଠପୁତ୍ର ଦାରସୁଖ ମଧ୍ୟ ଜଣେ ସାହିତ୍ୟ ପିପାସୁ ଥିଲେ । ସେ ନିଜେ ଉପନିଷଦ ଓ ଭଗବତ୍‌ଗୀତାର ପାର୍ଶି ଅନୁବାଦ କରିଥିଲେ । ଅଉରଙ୍ଗଜେବ ସାହିତ୍ୟପ୍ରେମୀ ନଥିଲେ ସତ, କିନ୍ତୁ ତାଙ୍କ ଶାସନ କାଳରେ ମଧ୍ୟ ମିର୍ଜା ମହମ୍ମଦ କାଜମଙ୍କର ଆଲମଗିରନାମା', ମହମ୍ମଦ ସାକୀଙ୍କର 'ମାସୀର-ଈ-ଆଲମଗିରୀ', ସୁଜନ ରାଇ ଷତ୍ରୀଙ୍କର 'ଖୁଲାସତ୍-ଉତ୍-ତାରିଖ', ଭୀମସେନଙ୍କର 'ନୁସ୍‌କା-ଈ-ଦିଲଖୁସ୍' ରଚିତ ହୋଇଥିଲା ଏବଂ ମୁସଲମ ଆଇନର ଏକ ପୂର୍ଣ୍ଣାଙ୍ଗ ସଙ୍କଳନ 'ଫତୁଆ-ଈ-ଆଲମଗିରୀ' ପ୍ରଣୟନ ପାଇଁ ସ୍ୱୟଂ ଅଉରଙ୍ଗଜେବ ଗ୍ରନ୍ଥକାର ଈଶ୍ୱର ଦାସଙ୍କୁ ଉତ୍ସାହିତ କରିଥିଲେ । କେବଳ ସେତିକି ନୁହେଁ, ସେତେବେଳେ ଖାଫି ଖାଁ ଗୁପ୍ତଭାବରେ ଅଉରଙ୍ଗ-ଜେବଙ୍କ ରାଜତ୍ୱ କାଳର ବିବରଣୀ 'ମୁନ୍ତଖାବ୍-ଉଲ୍-ଲୁବାବ୍' ଲିପିବଦ୍ଧ କରୁଥିଲେ ।

ମୋଗଲ ଯୁଗରେ କେବଳ ପାର୍ଶି ସାହିତ୍ୟର ବିକାଶ ଘଟିନଥିଲା, ତତ୍ ସଙ୍ଗେ ସଙ୍ଗେ ହିନ୍ଦୀ, ବଙ୍ଗାଳୀ, ଓଡ଼ିଆ, ବ୍ରଜଭାଷା ପ୍ରଭୃତି ଆଞ୍ଚଳିକ ଭାଷାରେ ମଧ୍ୟ ଅନେକ ସାହିତ୍ୟ ଗ୍ରନ୍ଥ ପ୍ରଣୀତ ହୋଇଥିଲା । ତେଣୁ ଐତିହାସିକ-ମାନେ ଏହି ଯୁଗକୁ ଯଥାର୍ଥରେ 'ହିନ୍ଦୁସ୍ଥାନୀ ସାହିତ୍ୟର ଅଭ୍ୟୁତ୍ଥାନ ଯୁଗ' ରୂପେ ଅଭିହିତ କରିଛନ୍ତି । ତାତ୍କାଳୀନ ହିନ୍ଦୀ ସାହିତ୍ୟ ପ୍ରଣେତାଙ୍କ ମଧ୍ୟରେ ବିରବଲ୍, ମାଲିକ ଅହମ୍ମଦ, ଅବ୍‌ଦୁର ରହିମ୍, ରାଜା ମାନସିଂହ, ରାଜା ଭଗବାନଦାସ,କେଶବଦାସ,ନରହରି ଓ ହରିନାଥ ପ୍ରଧାନ । ଏମାନଙ୍କ ମଧ୍ୟରୁ ଆକବର ବିରବଲ୍‌ଙ୍କୁ 'କବିପ୍ରିୟ' ଓ ନରହରିଙ୍କୁ'ମହାପାତ୍ର'ଉପାଧିରେ ଭୂଷିତ କରିଥିଲେ । ମାଲିକ ମହମ୍ମଦଙ୍କର ଚମେବାର ରାଣୀ ପଦ୍ମିନୀଙ୍କ ବିଷୟରେ ରଚିତ 'ପଦ୍ମାବତୀ କାବ୍ୟ' ଓ ଅବ୍‌ଦୁର ରହିମଙ୍କର 'ଦୋହା'ଗୁଡ଼ିକ ଅଦ୍ୟାବଧି

ଆଦୃତ ହୋଇଅଛି । କେଶବ ଦାସଙ୍କର କାବ୍ୟ କଳା ସମ୍ବନ୍ଧୀୟ ରଚନା ସମାଲୋଚନା-ସାହିତ୍ୟର ଅଦଗ୍ରନ୍ଥ ରୂପେ ପରିଗଣିତ ହୋଇଅଛି ।

ଆଲୋଚ୍ୟ ଯୁଗୀୟ ସାହିତ୍ୟର ଅନ୍ୟ ଏକ ବିଶେଷତ୍ୱ ଏହି ଯେ ତାତ୍କାଳୀନ କବି-ମାନସରେ କୃଷ୍ଣଭକ୍ତି ବା ରାମଭକ୍ତିର ପ୍ରତ୍ୟକ୍ଷ ପ୍ରଭାବ ପଡ଼ିଥିଲା । ଯମୁନା ଉପକୂଳବର୍ତ୍ତୀ ବ୍ରଜଭୂମିରୁ ବହୁ କୃଷ୍ଣଭକ୍ତ କବିଙ୍କର ଅବିର୍ଭାବ ଘଟିଥିଲା । ଶ୍ରୀକୃଷ୍ଣଙ୍କର ପ୍ରେମଲୀଳା ସମ୍ବଳିତ ସାହିତ୍ୟ ମଧ୍ୟରେ ବ୍ରଜ ଭାଷାରେ ସଙ୍କଳିତ ଅନ୍ଧକବି ସୁରଦାସ ( ୧୪୯୭—୧୫୮୪ ) ଙ୍କର 'ସୁରସାଗର'; ନନ୍ଦଦାସଙ୍କର 'ରସ ପଞ୍ଚାଧ୍ୟାୟୀ'; ବିଥାଳ ନାଥଙ୍କର' ଚୌରାଶୀ ବୈଷ୍ଣବ କ ବାର୍ତ୍ତ'; ପରମାନନ୍ଦ ଦାସ, କୁମ୍ଭ ଦାସ ଓ ରସ ଖାଁଙ୍କର ମିଳିତ ରଚନା 'ପ୍ରେମାବଳିକା' ଏହି ଯୁଗର ଶ୍ରେଷ୍ଠ ଅବଦାନ । ରାମଭକ୍ତ ହିନ୍ଦୀ କବିଙ୍କ ମଧ୍ୟରେ ତୁଳସୀ ଦାସ (୧୫୩୨—୧୬୨୩) ଅଗ୍ରଗଣ୍ୟ ଏବଂ ତାଙ୍କର ବିଶ୍ୱ-ବିଖ୍ୟାତ ଗ୍ରନ୍ଥ 'ରାମଚରିତ ମାନସ' ହିନ୍ଦୁସ୍ଥାନୀ ସାହିତ୍ୟର ଏକ ସମୁଜ୍ଜ୍ୱଳ ମଣି । ଫର୍କୁହାରଙ୍କ ଭାଷାରେ, 'ଏହା ଆଧୁନିକ ହିନ୍ଦୁ ଧର୍ମର ଏକ ଶ୍ରେଷ୍ଠ ଗ୍ରନ୍ଥ ଏବଂ ଦୀର୍ଘ ତିନି ଶତାବ୍ଦୀ ଧରି ଅନ୍ୟ ଯେ କୌଣସି ଗ୍ରନ୍ଥ ଅପେକ୍ଷା ଅଧିକ ସଂଖ୍ୟକ ହିନ୍ଦୁଙ୍କୁ ପ୍ରଭାବିତ କରିଛି ।' *

ଏହି ଯୁଗରେ ବଙ୍ଗ ପ୍ରଦେଶରେ ବୈଷ୍ଣବ ସାହିତ୍ୟର ସବିଶେଷ ପ୍ରସାର ଘଟିଥିଲା । ତାତ୍କାଳୀନ ବଶିଷ୍ଟ ବଙ୍ଗୀୟ ବୈଷ୍ଣବ କବିମାନଙ୍କ ମଧ୍ୟରେ 'ଚୈତନ୍ୟ ଚରିତା ମୃତ'ର ପ୍ରଣେତା କୃଷ୍ଣଦାସ କବିରାଜ ( ଜନ୍ମ—୧୫୧୭ ), 'ଚୈତନ୍ୟ ଭାଗବତ'ର ରଚୟିତା ବୃନ୍ଦାବନ ଦାସ ( ଜନ୍ମ—୧୫୦୭ ), 'ଚୈତନ୍ୟ ମଙ୍ଗଳ'ର ଲେଖକ ଜୟାନନ୍ଦ ( ଜନ୍ମ—୧୫୧୩ ), ସେହି 'ଚୈତନ୍ୟ ମଙ୍ଗଳ' ନାମକ ଅନ୍ୟ ଏକ ଜୀବନୀର ପ୍ରଣେତା ତ୍ରିଲୋଚନ ଦାସ (ଜନ୍ମ—୧୫୨୩) ଏବଂ 'ଭକ୍ତି ରତ୍ନାକର' (ଚୈତନ୍ୟଙ୍କ ଜୀବନୀ)ର ଗ୍ରନ୍ଥକାର ନରହରି ଚକ୍ରବର୍ତ୍ତୀଙ୍କ ନାମ ଉଲ୍ଲେଖଯୋଗ୍ୟ । ବୈଷ୍ଣବ ସାହିତ୍ୟ ବ୍ୟତୀତ ସେତେବେଳେ ବଙ୍ଗ ପ୍ରଦେଶରେ ଚଣ୍ଡୀ ଭକ୍ତି ରସାପ୍ଲୁତ ସାହିତ୍ୟ ମଧ୍ୟ ଆଦୃତ ହୋଇଥିଲା ବୋଲି ମୁକୁନ୍ଦ ରାମ ଚକ୍ରବର୍ତ୍ତୀଙ୍କର 'କବିକଙ୍କଣ ଚଣ୍ଡୀ' ଗ୍ରନ୍ଥର

---

* J. N. Farquhar ଙ୍କର ' An out line of the Religious literature of India' ଗ୍ରନ୍ଥର ପୃ.—୩୨୯ ଦ୍ରଷ୍ଟବ୍ୟ ।

ଲୋକପ୍ରିୟତାରୁ ପ୍ରମାଣିତ ହୁଏ । ପୁଣି ସେତେବେଳେ ସେଠାରେ 'ଭାଗବତ', 'ମହାଭାରତ' ପ୍ରଭୃତି ଅନୁବାଦ ଗ୍ରନ୍ଥର ମଧ୍ୟ ପ୍ରସାର ଘଟିଥିଲା ।

ଏହି ଯୁଗ 'ଉତ୍କଳୀୟ ସାହିତ୍ୟର ସୁବର୍ଣ୍ଣଯୁଗ' ଥିଲା ବୋଲି ଆଗରୁ କୁହାଯାଇ ସାରିଛି । ବାସ୍ତବରେ ଦେଖିବାକୁ ଗଲେ ଷୋଡ଼ଶସପ୍ତଦଶ ଶତାବ୍ଦୀ ହିଁ ଓଡ଼ିଆ ସାହିତ୍ୟର ଉତ୍କର୍ଷ କାଳ । ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ ପ୍ରକାଶ କଲେ, "ପଞ୍ଚଦଶ ଶତାବ୍ଦୀରେ ସାରଳାଙ୍କ ସୁବିପୁଳ ସାରସ୍ୱତ ସାଧନା ଓଡ଼ିଆ ଭାଷାକୁ ନମନୀୟ, ସୌକୁମାର୍ଯ୍ୟ ପୁଣି ସାହିତ୍ୟକୁ ଏକ ବଳିଷ୍ଠ ଆତ୍ମପ୍ରତ୍ୟୟ ପ୍ରଦାନ କରିସାରିଥିଲା । ଭଗୀରଥପରି ଓଡ଼ିଆ ସାହିତ୍ୟର ଯେଉଁ ସୁରଧୂନୀଙ୍କୁ ସେ ଶିଳା-ବନ୍ଧନରୁ ମୁକ୍ତ ଦେଇଥିଲେ, ତାହା ଏହି (୧୬ଶ ଓ ୧୭ଶ) ଶତାବ୍ଦୀରେ ଏକ ମହାପ୍ରବାହ ଆହରଣ କରିଥିଲା । ଏଥିରେ କେବଳ ପୌରାଣିକ ବ୍ୟାପ୍ତି ନଥିଲା, ଏଥିରେ ମଧ୍ୟ ଥିଲା ତାତ୍ତ୍ୱିକ ଗଭୀରତା; ପୁଣି ଇନ୍ଦ୍ରଧନୁର କାବ୍ୟିକ ବର୍ଣ୍ଣାଢ଼୍ୟତା ସେଥିରେ ମଧ୍ୟ ପ୍ରତିଫଳିତ ହୋଇଥିଲା ।"*

ଏହି ଯୁଗର ପାଞ୍ଚଜଣ କବି ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଅନନ୍ତ ଦାସ 'ପଞ୍ଚସଖା' ନାମରେ ପରିଚିତ ଥିଲେ ଏବଂ ତାଙ୍କର ରାଶି ରାଶି ସୁବିପୁଳ ସାହିତ୍ୟରୁ ନିର୍ଗତ ଆଧ୍ୟାତ୍ମିକ ଚିନ୍ତାଧାରାର ପ୍ରଭାବ ଓଡ଼ିଆ ସାହିତ୍ୟ ଜଗତରେ ଶତ ଶତ ବର୍ଷ ଧରି ଅପ୍ରତିହତ ଥିଲା ଓ କଞ୍ଚିତ ପରିମାଣରେ ଅଦ୍ୟାବଧି ତାହା ଅନୁଭୂତ ହେଉଛି ବୋଲି ମଧ୍ୟ କୁହାଯାଇପାରେ । ଏଥିପାଇଁ କେତେକ ସମାଲୋଚକ ଆଲୋଚ୍ୟ ଯୁଗକୁ 'ପଞ୍ଚସଖା ଯୁଗ' ରୂପେ ଅଭିହିତ କରିଛନ୍ତି । ଏହି ପଞ୍ଚସଖାଙ୍କ ପ୍ରଣୀତ ଶତାଧିକ କାବ୍ୟଗ୍ରନ୍ଥ ମଧ୍ୟରୁ ବଳରାମ ଦାସଙ୍କ 'ଜଗମୋହନ ରାମାୟଣ' (ଦାଣ୍ଡି ରାମାୟଣ), ଜଗନ୍ନାଥ ଦାସଙ୍କ 'ଭାଗବତ,' ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟ-ସଂହିତା', ଯଶୋବନ୍ତଙ୍କ 'ଗୀତ ଗୋବିନ୍ଦଚନ୍ଦ୍ର' ଏବଂ ଅନନ୍ତ ଦାସଙ୍କ 'ଭକ୍ତିମୁକ୍ତିଦାୟକ ଗୀତା'ର ପ୍ରଭାବଶାଳୀ ଲୋକପ୍ରିୟତା ସର୍ବଜନ ସ୍ୱୀକାର୍ଯ୍ୟ । ପଞ୍ଚସଖାଙ୍କ ବ୍ୟତୀତ ଏହି ଯୁଗର ସାହିତ୍ୟ ଭଣ୍ଡାରକୁ 'ଇଚ୍ଛାବତୀ', 'ଅନଙ୍ଗ ରେଖା' ପ୍ରଭୃତିର ପ୍ରଣେତା ଧନଞ୍ଜୟ ଭଞ୍ଜ (୧୬୩୦—୧୭୦୧), 'ବୈଦେହୀଶ ବିଳାସ', 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ', 'ଲାବଣ୍ୟବତୀ', 'ପ୍ରେମ ସୁଧାନିଧି' ପ୍ରଭୃତି ବହୁ କାବ୍ୟଗ୍ରନ୍ଥର ସ୍ରଷ୍ଟା କବିସମ୍ରାଟ ଉପେନ୍ଦ୍ର ଭଞ୍ଜ (୧୬୭୦—

---

* ସୁରେନ୍ଦ୍ର ମହାନ୍ତିଙ୍କର 'ଓଡ଼ିଆ ସାହିତ୍ୟର ମଧ୍ୟପର୍ବ' ପୁସ୍ତକର ପୃ. ୫୭ ଦ୍ରଷ୍ଟବ୍ୟ ।

୧୭୨୦), 'ରସକଲ୍ଲୋଳ' କାର ଘନକୃଷ୍ଣ ଓ 'ବିଦଗ୍ଧ ଚିନ୍ତାମଣି'ର ଚିନ୍ତା ଅଭିମନ୍ୟୁ ସାମନ୍ତ ସିଂହାର (୧୭୫୭—୧୮୦୭) ପ୍ରମୁଖ ବୈଷ୍ଣବଧର୍ମୀ ଓ ଭକ୍ତିବାଦୀ କବିଙ୍କର ଅବଦାନ ଅତୁଳନୀୟ । ଏହି ଯୁଗର ଅନ୍ୟ କାବ୍ୟକୃତି-ମାନଙ୍କ ମଧ୍ୟରେ ଅର୍ଜୁନ ଦାସଙ୍କ 'ରାମବିଭା' ଓ 'କଳ୍ପଲତା', ବନମାଳୀ ଦାସଙ୍କ 'ଗୃହ ଇଚ୍ଛାବତୀ', ନରସିଂହ ସେଣଙ୍କ 'ପରିମଳା', ବିଷ୍ଣୁ ଦାସଙ୍କ 'ପ୍ରେମଲୋଚନା', 'ସାବିତ୍ରୀଚରିତ', 'ମହାକାଳୀ ଚଉତିଶା', 'ବର୍ଷାଭାବନା' ଚଉତିଶା ଇତ୍ୟାଦି, ରୂପଗୋସ୍ୱାମୀଙ୍କ 'ରୂପମଞ୍ଜରୀ', ଦେବଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ', ବୃନ୍ଦ ଦାସଙ୍କ 'ଗୋପୀଚନ୍ଦନ', କପିଳେଶ୍ୱର ଦାସଙ୍କ 'କପଟକେଳୀ', ଖିମାର୍ଧୀବର୍ଙ୍କ 'କପଟପାଶା', ହରିହର ନରେନ୍ଦ୍ରଙ୍କ 'ମଦାଳସା', ଶଙ୍କର ଦାସଙ୍କ 'ଉଷାଭିଳାଷ', ହରିହର ଦାସଙ୍କ 'ଚନ୍ଦ୍ରାବତୀ ବିଳାସ', କାର୍ତ୍ତିକ ଦାସଙ୍କ 'ରୁକ୍ମଣୀବିଭା', ପ୍ରତାପ ରାୟଙ୍କ 'ଶଶିସେଣା', ପୁରୁଷୋତ୍ତମ ଦାସଙ୍କ 'କାଞ୍ଚିକାବେରୀ' ଓ 'ଗଙ୍ଗାମହାତ୍ମ୍ୟ' ଓ ଦନାଇ ଦାସଙ୍କ 'ଗୋପୀଭାଷା' ଉଲ୍ଲେଖ ଯୋଗ୍ୟ ।

ଏହା ବ୍ୟତୀତ, ସେତେବେଳେ ଓଡ଼ିଶାରେ ଏକ ସମୃଦ୍ଧ 'ବ୍ରଜବୋଲି' ସାହିତ୍ୟ ମଧ୍ୟ ସୃଷ୍ଟି ହୋଇଥିଲା । ରାଗାନୁଗା ଭକ୍ତି ଥିଲା ଏହି ସାହିତ୍ୟର ପ୍ରଧାନ ଉପାଦାନ । ତାତ୍କାଳୀନ ବ୍ରଜବୋଲି କବିମାନଙ୍କ ମଧ୍ୟରେ ରାୟ ରାମାନନ୍ଦ, ଚମ୍ପତିରାୟ, ମୁରାରୀରାୟ, ପ୍ରତାପରୁଦ୍ର ଦେବ, କାହ୍ନୁ ଦାସ, ଦାମୋଦର ଦାସ, ବୃନ୍ଦଦାସ ଓ ନାୟିକବି ମାଧବୀ ଦାସ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ପୁଣି, ନୀଳାମ୍ବର ଦାସଙ୍କର 'ଜୈମିନି ଭାରତ', 'ପଦ୍ମପୁରାଣ', 'ଦେଉଳତୋଳା'; ବିପ୍ରନାରାୟଣଙ୍କର 'ହରିବଂଶ', ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ', ପିତାମ୍ବର ଦାସଙ୍କ 'ନୃସିଂହ ପୁରାଣ', ଚୈତନ୍ୟ ଦାସଙ୍କ 'ବିଷ୍ଣୁଗର୍ଭ ପୁରାଣ' ଓ 'ନିର୍ଗୁଣ ମହାତ୍ମ୍ୟ', ଈଶ୍ୱର ଦାସଙ୍କ 'ଚୈତନ୍ୟ ଭାଗବତ', ଭଗବାନ ଦାସଙ୍କ 'ଗୌରାଙ୍ଗ ଭାଗବତ', ଦିବାକର ଦାସଙ୍କ 'ଜଗନ୍ନାଥ ଚରିତାମୃତ' ଓ 'ଏକାଦଶୀ ମହାତ୍ମ୍ୟ', ବଳରାମ ଦାସ (୨ୟ)ଙ୍କ 'କୃଷ୍ଣଲୀଳା', 'ରାସଲୀଳା' ଓ 'କାନ୍ତ କୋଇଲି', ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି', ଶଙ୍କର ଦାସଙ୍କ 'ବାରମାସୀ କୋଇଲି', ଲୋକନାଥଙ୍କ 'ଜ୍ଞାନୋଦୟ କୋଇଲି' ଇତ୍ୟାଦି ପୁରାଣ ଗ୍ରନ୍ଥ ଓ କୋଇଲି-ଚଉତିଶା ଏହି ଯୁଗର ଦାନ । ଅଧିକନ୍ତୁ 'ପଞ୍ଚତନ୍ତ୍ର', 'ହିତୋପଦେଶ', 'ଗୀତଗୋବିନ୍ଦ' ପ୍ରଭୃତିର ଓଡ଼ିଆ ଗଦ୍ୟାନୁବାଦ, ବ୍ରଜନାଥ ବଡ଼ଜେନାଙ୍କ 'ଚତୁର ବିନୋଦ' ଏବଂ 'ସୋମନାଥ ବ୍ରତ', 'ସୁଦଶାବ୍ରତ' ପ୍ରଭୃତି ବ୍ରତକଥା ତାତ୍କାଳୀନ ଗଦ୍ୟ-ସାହିତ୍ୟର ଦୃଷ୍ଟାନ୍ତ ।

ତେବେ ମୋଗଲ ଯୁଗୀୟ ସାହିତ୍ୟର ଏକ ବ୍ୟାପକ ସମୀକ୍ଷା କଲେ ପ୍ରତିପାଦିତ ହୁଏ ଯେ, ସେଥିରେ ବିକାଶଶୀଳ ପ୍ରତିଭା ତଥା ନୂତନତାର ପଦଧ୍ୱନି ଅନୁଭୂତ ହେଉଥିଲେ ସୁଦ୍ଧା ତହିଁରୁ କୌଣସି ମୌଳିକତତ୍ତ୍ୱ ତଥା ସୃଜନଶୀଳ ନବ ନବୋନ୍ମେଷଶାଳିନୀ ପ୍ରଜ୍ଞାର ସନ୍ଧାନ ମିଳୁ ନଥିଲା । ସେସବୁ ସାହିତ୍ୟ ଥିଲା ପୂର୍ବତନ ମୁସଲମାନ ଯୁଗୀୟ ଧାର୍ମିକତତ୍ତ୍ୱର ପରିପ୍ରକାଶ ଓ ପରିପ୍ରସାର ମାତ୍ର । "ତଥାପି ମଧ୍ୟ ଯୁଗୀୟ ସାହିତ୍ୟରେ କେତେକ ସାଧାରଣ ଆଭିମୁଖ୍ୟ ବା ଲକ୍ଷଣ ପରିଲକ୍ଷିତ ହୋଇଥାଏ, ଯଥା—(କ) ଗଦ୍ୟ ଅପେକ୍ଷା ପଦ୍ୟର ପ୍ରାଧାନ୍ୟ, (ଖ) ସାହିତ୍ୟରେ ଧର୍ମର ବଳବର୍ଦ୍ଧିତ୍ୱ, (ଗ) ଇହକାଳ ଅପେକ୍ଷା ପରକାଳ ଓ ଜୀବନ ଅପେକ୍ଷା ନିର୍ବାଣ ଉପରେ ଅଧିକ ଗୁରୁତ୍ୱ ଆରୋପ, (ଘ) ଏହାର ସ୍ୱାଭାବିକ ପରିଣତି ରୂପେ ଜୀବନ ଓ ସମାଜ ବିମୁଖତା, (ଙ) ତାହାର ଏକ ପ୍ରତିବାଦ ରୂପେ ସାହିତ୍ୟରେ ଉତ୍କଟ ଶୃଙ୍ଗାର ଚର୍ଚ୍ଚା ଓ ପ୍ରାକୃତ,ଲୌକିକ ପୁଣି ସଂସ୍କୃତ କାବ୍ୟ ପରଂପରା ଦ୍ୱାରା ତାହାର ପରିପୁଷ୍ଟି, (ଚ) ଦେବ ଦେବୀ-ମାନଙ୍କ ଅଲୌକିକ ଲୀଳାର ନେପଥ୍ୟରେ ମାନବୀୟ ଅନୁଭୂତିର ବ୍ୟଞ୍ଜନା ଓ ବିଶ୍ଳେଷଣ, (ଛ) ସେହି ସୂତ୍ରରେ କାବ୍ୟ ରଚନାରେ ବୈଷ୍ଣବ ରସ-ଚର୍ଯ୍ୟା ଓ ରସଶାସ୍ତ୍ରର ପ୍ରେରଣା ଓ (ଜ) ଆଳଙ୍କାରିକ ଓ ଶୃଙ୍ଗାରାତ୍ମକ ସଂସ୍କୃତ କାବ୍ୟକର୍ତ୍ତୃ, ବିଶେଷତଃ ଶ୍ରୀହର୍ଷ ଓ ଜୟଦେବଙ୍କ ପ୍ରଭାବ । ଏ ସମସ୍ତ ମଧ୍ୟ ଯୁଗୀୟ ଆଭିମୁଖ୍ୟ ଅନ୍ୟ ଭାରତୀୟ ସାହିତ୍ୟର ମଧ୍ୟ ଯୁଗରେ ମଧ୍ୟ ପ୍ରକାଶ ପାଇଅଛି । ପୁଣି ବିଭିନ୍ନ ୟୁରୋପୀୟ ସାହିତ୍ୟର ମଧ୍ୟ ଯୁଗରେ ସୁଦ୍ଧା ଏହି ସମସ୍ତ ଆଭିମୁଖ୍ୟ କେତେ-କାଂଶରେ ପରିଲକ୍ଷିତ ହୋଇଥାଏ ।" *

## ଏ ଯୁଗର ଅପକର୍ଷ

ଏକ ସାମଗ୍ରିକ ଦୃଷ୍ଟିରୁ ସମୀକ୍ଷଣ କଲେ, ସୁରଭିତ ମୋଗଲଗୋଲାପ କଣ୍ଟକମୟ ମନେହୁଏ । ଆଲୋଚ୍ୟ ଯୁଗ ଭାରତର ସାଂସ୍କୃତିକ ତଥା ରାଜନୈତିକ ଇତିହାସରେ ଏକ ଘୋର ବିପର୍ଯ୍ୟୟର ଦୃଷ୍ଟାନ୍ତ ରୂପେ ପ୍ରତିଭାତ ହୁଏ । ମୋଗଲ ଦରବାରର ରାଜକର୍ମଚାରିବୃନ୍ଦଙ୍କର ଦୁର୍ନୀତି ଓ ଦୁରାଚାର ଯେତିକି ଦୁଃଖଦାୟକ ଥିଲା, ଗାଁ-ଗହଳରେ ଶାନ୍ତି ଶୃଙ୍ଖଳା ରକ୍ଷା ତଥା ନ୍ୟାୟ ଶାସନର ଅଭାବ

* ଏଜନ ପୃ.-୩—୪ ଦ୍ରଷ୍ଟବ୍ୟ ।

ଉତୋଧିକ ମର୍ମନ୍ତୁଦ ହୋଇଥିଲା । କମାଣ ବାହିନୀ ଓ ନୌବାହିନୀର ଦୁର୍ବଳତା ଯନ୍ତ୍ରିତ ସେନାବାହିନୀର ଶୃଙ୍ଖଳା ରକ୍ଷା ପ୍ରଶ୍ନ ବିଜଡ଼ିତ ହୋଇ ମୋଗଲ ବାହିନୀର ଏକ ଦୟନୀୟ ଅବସ୍ଥାର ସୂଚନା ଦେଉଥିଲା । ଏପରିକି ଭାରତୀୟ ବାଣିଜ୍ୟ ପୋତ ଗୁଡ଼ିକ ଉପରେ ଜଳଦସ୍ୟୁମାନଙ୍କର ଆକ୍ରମଣକୁ ପ୍ରତିହତ କରିବାପାଇଁ ତାହା ସମର୍ଥ ନ ଥିଲା । ଏହା ବ୍ୟତୀତ, ଜନ ସାଧାରଣଙ୍କୁ ଶିକ୍ଷିତ ତଥା ସମାଜରେ ଶିକ୍ଷାର ମାନବୃଦ୍ଧି କରିବା ଦିଗରେ ମଧ୍ୟ ମୋଗଲ ଶାସନ କୌଣସି ପଦକ୍ଷେପ ଗ୍ରହଣ କରି ନଥିଲା । ସାହିତ୍ୟ ସଙ୍ଗୀତ ଚର୍ଚ୍ଚା ନିମିତ୍ତ ଦରବାରର ଦ୍ୱାର ଉନ୍ମୁକ୍ତ ରଖିବା ମୂଳରେ ମୋଗଲ ସମ୍ରାଟ ଗଣଙ୍କର ଭୋଗବିଳାସ ବାସନାହିଁ ବଳବତ୍ତରଥିଲା । ଏହି ଯୁଗରେ ସୁସମୃଦ୍ଧ ସଂସ୍କୃତ ସାହିତ୍ୟର କେବଳ ବିଳୟ ଭଳି ନଥିଲା, କଳା ସୁଷମା ବିମଣ୍ଡିତ ହିନ୍ଦୁ ମନ୍ଦିର ନିର୍ମାଣ ପରଂପରାରେ ମଧ୍ୟ ପୂର୍ଣ୍ଣଚ୍ଛେଦ ପଡ଼ି ଯାଇଥିଲା ।

ସେତେବେଳେ ଭାରତରେ ହିନ୍ଦୁ ଶକ୍ତିର ପୁନରୁତ୍‌ଥାନ ନିମିତ୍ତ କୌଣସି ପ୍ରୟାସ ହୋଇ ନଥିଲା କିମ୍ବା ତଜ୍ଜନିତ ଚେତନାର ସ୍ପନ୍ଦନ ସୁଦ୍ଧା ଅନୁଭୂତ ହେଉ ନଥିଲା । ଭାରତର ହିନ୍ଦୁ ନରପତିମାନେ ମୋଗଲ ରାଜଶକ୍ତି ଅଲଂଘନୀୟ ବୋଲି ଭାବି ନେଇଥିଲେ । ସେହି ପରିସ୍ଥିତିରେ ହିନ୍ଦୁ ସଂସ୍କୃତି ଓ ଇସଲାମୀ ସଂସ୍କୃତି ଏକୀଭୂତ ହୋଇ ପଡ଼ିଥିଲା । ସେହି ପରିବେଷ୍ଟନୀର ପ୍ରଭାବରେ ସାହିତ୍ୟ କ୍ଷେତ୍ରରେ ଯେଉଁ ଆଲୋଡ଼ନ ଓ ଉଦ୍‌ବେଳନ ପ୍ରକାଶ ପାଇବାର କଥା, ଆଲୋଚ୍ୟ ଯୁଗରେ ତାହା ମଧ୍ୟ ଦୃଷ୍ଟିଗୋଚର ହୋଇ ନଥିଲା । ସେହି ସମୟର ସାହିତ୍ୟ ମୁଖ୍ୟତଃ ସମ୍ଭୋଗ କଳାର ବିଶ୍ଳେଷଣ ନତୁବା ଧାର୍ମିକତତ୍ତ୍ୱର ପରି-ବେଷଣ ନିମିତ୍ତ ଉଦ୍ଦିଷ୍ଟ ଥିଲା । ୟୁରୋପୀୟ ମଧ୍ୟ ଯୁଗ ଭଳି ହେତୁବାଦ ପରିବର୍ତ୍ତେ ବିଶ୍ୱାସବାଦ, ସଦାଚାରର ପରିବର୍ତ୍ତେ ଧର୍ମାଚାର ଓ ସଂଗ୍ରାମ ପରିବର୍ତ୍ତେ ସୁଷୁପ୍ତି ଏହି ଯୁଗର ଜାତୀୟ ଜୀବନର ମୁଖ୍ୟ ଆଭିମୁଖ୍ୟ ହୋଇଥିଲା । ତେବେ ୟୁରୋପରେ ମଧ୍ୟଯୁଗରେ ଗ୍ରୀକ୍ ସଂସ୍କୃତିର ପ୍ରାଣପ୍ରବାହ ଓ ୟୁରୋପୀୟ ସାହିତ୍ୟର ମାନବୀୟ ଆଭିମୁଖ୍ୟ ଧର୍ମଧ୍ୱଜୀ ପାଦ୍ରୀମାନଙ୍କ କବଳରୁ ସମାଜକୁ ମୁକ୍ତ କରିବାକୁ ସକ୍ଷମ ହୋଇପାରି ଥିଲାବେଳେ ହିନ୍ଦୁ ସଂସ୍କୃତି ଓ ଧର୍ମତତ୍ତ୍ୱର ଜୀବନ ବିମୁଖତାରେ ଭାରତର ସମସ୍ତ ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ଚେତନା ଜଡ଼ୀଭୂତ ହୋଇ ଯାଇଥିଲା । ଜନ ଜୀବନର ସମସ୍ତ ପ୍ରତିଭା, ପ୍ରେରଣା, ଉତ୍ସାହ ଓ ଉଦ୍ଦୀପନା ଧାର୍ମିକ ନିଗଡ଼ ଭିତରେ ଆବଦ୍ଧ ହୋଇ ପଡ଼ିଥିଲା ।

ସପ୍ତଦଶ ଶତାବ୍ଦୀରେ ଭାରତ ପର୍ଯ୍ୟଟନରେ ଆସିଥିବା ହାକିନ୍ସ, ସାର୍ ଟମାସ୍ ରୋ, ଫ୍ରାନ୍ସିସ୍କୋ ପେଲସର୍ଟ ଓ ବେର୍ନିୟର୍ ପ୍ରମୁଖ ବିଦେଶୀ ପରିବ୍ରାଜକଗଣ ମୋଗଲ ଦରବାରର ଚାକଚକ୍ୟରେ ବିମୋହିତ ହେବା ସଙ୍ଗେ ସଙ୍ଗେ ତଦାନୀନ୍ତନ ଶାସନର ଦୋଷଦୁର୍ବଳତା ତଥା ସମାଜ-ଜୀବନର ଅଭାବ ଓ ଆକାଂକ୍ଷା ବିଷୟରେ ମଧ୍ୟ ସଚେତନ ହୋଇ ପାରିଥିଲେ । ବେର୍-ନିୟର୍ ତାତ୍କାଳୀନ ଶାସନର କଠୁ ସମାଲୋଚନା କରିବାକୁ ଯାଇ "ମୋଗଲ ସମ୍ରାଟ ହିନ୍ଦୁସ୍ଥାନରେ ଜଣେ ବିଦେଶୀ" (the Great Mughul is a foreigner in Hindusthan) ବୋଲି କହିଥିଲେ । ଏହି ୟୁରୋପୀୟ ପର୍ଯ୍ୟଟକମାନଙ୍କର ଭାରତ-ଭ୍ରମଣ ବିବରଣୀ ଆମ ଦେଶର ଦୁର୍ବଳତାକୁ ବାହାରେ ପ୍ରକାଶ କରିବା ସଙ୍ଗେ ସଙ୍ଗେ ବ୍ରିଟିଶ ବଣିକ ଓ ଶାସକ ଗୋଷ୍ଠୀଙ୍କୁ ଭାରତରେ ପ୍ରଭାବ ବିସ୍ତାର ନିମିତ୍ତ ପ୍ରୋତ୍ସାହିତ କରିଥିଲା ଏବଂ ପ୍ରକାରାନ୍ତରେ ଭାରତର ପରାଧୀନତାର କାରଣ ହୋଇଥିଲା ।

ଏହି ସବୁ ଦିଗରୁ ବିଚାର କଲେ, ମୋଗଲ ଯୁଗରେ ସମାଜ, ରାଜନୀତି, ଧର୍ମ, ସାହିତ୍ୟ ଓ କଳା ପ୍ରତ୍ୟେକ କ୍ଷେତ୍ରରେ ସୃଜନ ଶୀଳତା, ପାରଂପରିକତା ଓ ମାନବିକତାର ଅଭାବ ହିଁ ବାରମ୍ବାର ଭଲ ସ୍ପଷ୍ଟ ପ୍ରତିଭାତ ହୁଏ । ଏଥିପାଇଁ ମୋଗଲ ଯୁଗକୁ "ଭାରତୀୟ ଇତିହାସର ଏକ ଅନ୍ଧକାର ଯୁଗ" ବୋଲି କହିବାପାଇଁ ମଧ୍ୟ ଇତିହାସବିଦ୍‌ମାନେ ପଶ୍ଚାଦ୍‌ପଦ ହୋଇ ନାହାନ୍ତି ।

---

# ପରିଶିଷ୍ଟ

## ବଂଶ ପରିଚୟ

## ମୌର୍ଯ୍ୟଯୁଗ

ଚନ୍ଦ୍ରଗୁପ୍ତ

ବିନ୍ଦୁସାର



# ଗୁପ୍ତଯୁଗ

ଘଟୋତ୍କଚଗୁପ୍ତ

|

ଚନ୍ଦ୍ରଗୁପ୍ତ (୧ମ)

|

ସମୁଦ୍ର ଗୁପ୍ତ

|

ଚନ୍ଦ୍ରଗୁପ୍ତ (୨ୟ)




---

## ପଷ୍ୟଭୂତ ବଂଶ

ନରବର୍ଦ୍ଧନ

|

ରାଜ୍ୟବର୍ଦ୍ଧନ

|

ଆଦିତ୍ୟବର୍ଦ୍ଧନ

|

ପ୍ରଭାକରବର୍ଦ୍ଧନ



# ପ୍ରତିହାର ବଂଶ



ଲକ୍ଷ୍ମଣ [ରଘୁବଂଶ]
ନାଗଭଟ୍ଟ
[ ? ]
କାକୁସ୍ଥ
ଦେବରାଜ
ବତ୍ସରାଜ
ନାଗଭଟ୍ଟ (୨ୟ)
ରାମଭଦ୍ର
ଭୋଜ (୧ମ)
ଯୁବରାଜ ନାଗଭଟ୍ଟ
ମହେନ୍ଦ୍ର ପାଳ
ମହୀପାଳ
ଭୋଜ (୨ୟ)
ବିନାୟକ ପାଳ
ମହେନ୍ଦ୍ର ପାଳ (୨ୟ)
ଦେବପାଳ
ବିଜୟପାଳ
ମହୀପାଳ (୨ୟ)
ରାଜ୍ୟପାଳ
ତ୍ରିଲୋଚନ ପାଳ
ଯଶପାଳ

# ଚାଲୁକ୍ୟ ବଂଶ

- ଜୟସିଂହ
  - ରଣରାଗ
    - ପୁଲକେଶିନ (୧ମ)
      - କୀର୍ତ୍ତିବର୍ମନ
        - ପୁଲକେଶିନ (୨ୟ)
          - ଚନ୍ଦ୍ରାଦିତ୍ୟ
          - ଆଦିତ୍ୟବର୍ମନ
          - ବିକ୍ରମାଦିତ୍ୟ (୧ମ)
            - ବିନୟାଦିତ୍ୟ
              - ବିଜୟାଦିତ୍ୟ
                - ବିକ୍ରମାଦିତ୍ୟ (୨ୟ)
                  - କୀର୍ତ୍ତିବର୍ମନ (୨ୟ)
                - ଭୀମ
          - ଜୟସିଂହ
        - ବିଷ୍ଣୁବର୍ଦ୍ଧନ
        - ଜୟସିଂହ
          - ନାଗ ବର୍ଦ୍ଧନ
      - ମଙ୍ଗଳେଶ



## ରାଷ୍ଟ୍ରକୂଟ ବଂଶ


ଦନ୍ତୀବର୍ମନ
ଇନ୍ଦ୍ର (୧ମ)
ଗୋବିନ୍ଦ (୧ମ)
କର୍କ
ଇନ୍ଦ୍ର (୨ୟ)
କୃଷ୍ଣ (୧ମ)
( ବା ଅକାଳ ବର୍ଷ )
ନାନା
ଗୋବିନ୍ଦ (୨ୟ)
ଧ୍ରୁବ
କମ୍ଭ
ଗୋବିନ୍ଦ ( ୩ୟ )
ଇନ୍ଦ୍ର
ଆମୋଘ ବର୍ଷ ( ୧ମ )
[ ଖ୍ରୀ ୮୧୪—୮୭୭ ]

## ଦାସ ବଂଶ

- କୁତବୁଦ୍ଦିନ ଆଇବାକ୍
  - ଆରାମ ଶାହ (ପୋଷ୍ୟ ପୁତ୍ର ?)
  - ଶାମସୁଦ୍ଦିନ ଇଲ୍‌ତୁତ୍‌ମିସ (ଜାମାତା)
    - ନାସିରୁଦ୍ଦିନ
    - ରୁକ୍‌ନୁଦ୍ଦିନ
      - ଆଲାଉଦ୍ଦିନ ମାସୁଦ
    - ରେଜିୟା
    - ମୁଇଜୁଦ୍ଦିନ
    - ନାସିରୁଦ୍ଦିନ ମାମୁଦ
      - କନ୍ୟା + ବାଲ୍ବାଖାଁ (ଜାମାତା)
        - ମୁଇଜୁଦ୍ଦିନ (ମୃତ-୧୨୯୦)
    - ଗିଆସୁଦ୍ଦିନ
      - ମହମ୍ମଦ



## ଖିଲଜୀ ବଂଶ

- କଇମ ଖାଁ
  - (ଆକବର ଖିଲ୍‌ଜୀ ବଂଶ)
  - ଜଲାଲୁଦ୍ଦିନ ଫିରୋଜ ଶାହ
    - ରୁକ୍‌ନୁଦ୍ଦିନ ଇବ୍ରାହିମ
  - ସିହାବୁଦ୍ଦିନ (ମାସୁଦ)
    - ଆଲାଉଦ୍ଦିନ ସିକନ୍ଦର ସାନୀ
      - ଖିଜର ଖାଁ
      - ସିହାବୁଦ୍ଦିନ
      - କୁତବୁଦ୍ଦିନ ମୁବାରକ



## ତୋଗଲକ ବଂଶ




## ସୟଦ ବଂଶ




## ଲୋଦୀ ବଂଶ



# ମୋଗଲ ବଂଶ



(୧) ବାବର
(୨) ହୁମାୟୁନ
କାମରାନ
ହିନ୍ଦାଲ
ଆସ୍କାରି
(୩) ଆକବର
ମୀର୍ଜାହାକିମ
(୪) ଜାହାଙ୍ଗିର (ସାଲିମ)
ମୁରାଦ
ଡାନିୟାଲ୍
ଖୁସ୍ରୁ
ପରବେଜ୍
(୫) ଶାହଜହାନ (ଖୁରାମ)
ଶାରୟାର
ଦାରାସୁଖ
ଜହାନାରା
ସୁଜା
(୬) ଅଉରଙ୍ଗଜେବ
ମୁରାଦ
ରୋଶନାରା
ମହମ୍ମଦ ସୁଲତାନ
(୭) ମୁଜାମ (ବାହାଦୁରଶାହ)
ଆଜମ
ଆକବର
ମହମ୍ମଦକାମ୍
ବିଦାର ବଖତ
ନେକୁସିୟାର
ମୁହିଉସୁନାତ୍
ଶାହଜହାନ (୩ୟ)
(୮) ଜହନ୍ଦର ଶାହ
ଅଜିମଉଶାନ
ରଫିଉଶାନ
ଖୁଜସ୍ତା ଅଖତାର୍
(୧୪)ଅଜିଜୁଦ୍ଦିନ
(୯)ଫରୁକସାୟାର
(୧୨) ମହମ୍ମଦ ଶାହ
(୧୫)ମୀର୍ଜାଅବଦୁଲା
(୧୩)ଅହମ୍ମଦଶାହ
(୧୬)ଆକବରଶାହ
ରଫିଉଦ୍ଦର୍ଜା (୧୦)
ରଫିଉଦ୍ଦଲା (୧୧)
ମହମ୍ମଦ ଇବ୍ରାହିମ
(୧୭) ବାହାଦୁର ଶାହ (୨ୟ)

# ଭୋନ୍ସଲ ବଂଶ


ମଲଜୀ
ଶାହଜୀ
ଶମ୍ଭୁଜୀ
ଶିବାଜୀ
ଶମ୍ଭୁଜୀ (୧ମ)
ରାଜାରାମ
ଶାହୁ (୧ମ)
ବା
(ଶିବାଜୀ ୨ୟ)
ଶିବାଜୀ (୩ୟ)
ଶମ୍ଭୁଜୀ (୨ୟ)
ରାମରାଜା
ଶିବାଜୀ (୪ର୍ଥ)
ଶମ୍ଭୁ
ଶାହଜୀ
ଶିବାଜୀ (୫ମ)
ରାଜାରାମ (୨ୟ)
ଶିବାଜୀ (୬ଷ୍ଠ)
ଶାହୁ ଛତ୍ରପତି

— — —

## ପେଶବା ବଂଶ



ବିଶ୍ୱନାଥ
ବାଲାଜୀ ବିଶ୍ୱନାଥ
ବାଜୀରାଓ
ଚିମ୍‌ନାଜୀ ଆପ୍ପା
ବାଲାଜୀ ବାଜୀରାଓ
ରଘୁନାଥ ରାଓ (ରାଘବ)
ବିଶ୍ୱାସ ରାଓ
ମାଧବରାଓ
ନାରାୟଣ ରାଓ
ମାଧବରାଓ ନାରାୟଣ
ଅମୃତ ରାଓ (ପୋଷ୍ୟପୁତ୍ର)
ବାଜୀରାଓ (୨ୟ)
ଚିମନ୍‌ଜୀ ଆପ୍ପା
ବିନାୟକ ରାଓ
ନାନାସାହେବ (ପୋଷ୍ୟପୁତ୍ର)

# ଶାସକ ଓ ଶାସନକାଳ *

| | | |
|---|---|---|
| ବିମ୍ବିସାର | ଖ୍ରୀ: ପୂ: | ୫୪୫—୪୯୪ |
| ଅଜାତ ଶତ୍ରୁ | „ | ୪୯୪—୪୬୫ |
| ଚନ୍ଦ୍ରଗୁପ୍ତ ମୌର୍ଯ୍ୟ | „ | ୩୨୪ ୩୦୦ |
| ବିନ୍ଦୁସାର | „ | ୩୦୦—୨୭୩ |
| ଅଶୋକ | „ | ୨୭୩—୨୩୨ |
| ପୁଷ୍ୟମିତ୍ର | „ | ୧୮୭—୧୫୧ |
| କନିଷ୍କ | ଖ୍ରୀ: ଅ: | ୧୨୦—୧୪୩ |
| ଚନ୍ଦ୍ରଗୁପ୍ତ (୧ମ) | | ୩୨୦—୩୩୦ |
| ସମୁଦ୍ରଗୁପ୍ତ | | ୩୩୦—୩୮୦ |
| ଚନ୍ଦ୍ରଗୁପ୍ତ(୨ୟ) (ବିକ୍ରମାଦିତ୍ୟ) | | ୩୮୦—୪୧୫ |
| କୁମାରଗୁପ୍ତ | | ୪୧୫—୪୫୫ |
| ସ୍କନ୍ଦଗୁପ୍ତ | | ୪୫୫—୪୬୭ |
| ହର୍ଷବର୍ଦ୍ଧନ (ଶିଳାଦିତ୍ୟ) | | ୬୦୬—୬୪୭ |
| ସାବୁକ୍ତିଗିନ୍ | | ୯୬୩—୯୯୭ |
| ଜୟପାଳ | | ୯୯୭—୧୦୩୦ |
| ମହମ୍ମଦ ଘୋରୀ | | ୧୧୭୩—୧୨୦୬ |
| ଇଲ୍‌ତୁତ୍‌ମିସ୍ | | ୧୨୧୧—୧୨୩୬ |
| ସୁଲତାନ ରେଜିୟା | ଖ୍ରୀ: ଅ: | ୧୨୩୬—୧୨୪୦ |
| ଗିୟାସୁଦ୍ଦିନ ବଲବନ୍ | | ୧୨୬୬—୧୨୮୭ |
| ଜଲାଲୁଦ୍ଦିନ ଖିଲିଜୀ | | ୧୨୯୦-୧୨୯୬ |
| ଆଲାଉଦ୍ଦିନ ଖିଲିଜୀ | | ୧୨୯୬—୧୩୧୬ |
| ଗିୟାସୁଦ୍ଦିନ ତୋଗଲକ | | ୧୩୨୦—୧୩୨୫ |
| ମହମ୍ମଦ ତୋଗଲକ | | ୧୩୨୫—୧୩୫୧ |
| ଫିରୋଜ ତୋଗଲକ | | ୧୩୫୧—୧୩୮୮ |
| ବାବର | | ୧୪୯୪—୧୫୩୦ |
| ହୁମାୟୁନ | | ୧୫୩୦—୧୫୫୬ |
| ଶେରଶାହ | | ୧୫୩୦—୧୫୪୫ |
| ଆକବର | | ୧୫୫୬—୧୬୦୫ |
| ଜାହାଙ୍ଗିର | | ୧୬୦୫—୧୬୨୭ |

* ଭାରତର ପ୍ରାଚୀନ ଓ ମଧ୍ୟଯୁଗର କେତେକ ଶାସକଙ୍କର ଶାସନକାଳ ସମ୍ବନ୍ଧରେ ଐତିହାସିକମାନଙ୍କ ମଧ୍ୟରେ ମତଭେଦ ରହିଛି । ତେଣୁ ଏହି ପୁସ୍ତକରେ ବହୁ ଗବେଷକଙ୍କ ଦ୍ୱାରା ସ୍ୱୀକୃତ ସମୟ-ସିଦ୍ଧାନ୍ତକୁ ଠିକ୍ ଭାବ ଗ୍ରହଣ କରାଯାଇଛି ।

| | ଖ୍ରୀ: ଅ: | | ଖ୍ରୀ: ଅ: |
|---|---|---|---|
| ଶାହଜହାନ | ୧୬୨୮—୧୬୫୮ | ଅହମ୍ମଦ ଶାହ | ୧୭୪୮ – ୧୭୫୪ |
| ଅଉରଙ୍ଗଜେବ | ୧୬୫୮ – ୧୭୦୭ | ଆଲମଗିର୍ (୨ୟ) | ୧୭୫୪—୧୭୫୯ |
| ଶିବାଜୀ (ଛତ୍ରପତି) | ୧୬୭୪—୧୬୮୦ | ଶାହ ଆଲମ (୨ୟ) | ୧୭୫୯—୧୮୦୬ |
| ବାହାଦୁର ଶାହ | ୧୭୦୭— ୧୭୧୨ | ଆକବର (୨ୟ) | ୧୮୦୬—୧୮୩୭ |
| ଜାହାନ୍ଦାର ଶାହ | ୧୭୧୨—୧୭୧୩ | ବାହାଦୁର ଶାହ (୨ୟ) | ୧୮୩୭—୧୮୫୮ |
| ଫରୁକ୍‌ସାୟାର | ୧୭୧୩—୧୭୧୯ | | |
| ମହମ୍ମଦ ଶାହ | ୧୭୧୯—୧୭୪୮ | | |

———

# ଯୁଗାବସ୍ଥାର ସଂକ୍ଷିପ୍ତ ଟିପ୍ପଣୀ

## ପ୍ରାଗୈତିହାସିକ ଯୁଗ ( ଖ୍ରୀ: ପୂ: ୪୦୦୦–୨୫୦୦ )

### ଇତିହାସ ଓ ସଭ୍ୟତା

ପଶୁବତ୍ ଜୀବନ ଯାପନ;
ପଶୁପକ୍ଷୀଶିକାରକରି ଜୀବିକାର୍ଜନ;
ପର୍ବତଗୁମ୍ଫାରେ ବାସ;
ଖ୍ରୀ:ପୂ ୩୨୫୦ ପରେ —
ମହେଞ୍ଜୋଦାରର ନଗର ସଭ୍ୟତା;
ଗୃହ ନିର୍ମାଣ, କୂପଖନନ, ନର୍ଦ୍ଦମା-ନିର୍ଗମନାଦି ଆବିଷ୍କୃତ;
ନିଗ୍ରୋ, ଆଷ୍ଟ୍ରେଲୀୟ ଓ ମେସୋପଟେମୀୟ ସଂସ୍କୃତିର କ୍ରମ ପ୍ରସାର;
ହାତୀ, ଓଟ, କୁକୁର ପ୍ରଭୃତି ଗୃହପାଳିତ ପଶୁ;
ମୃଣ୍ମୟ ମୁଦ୍ରାର ପ୍ରଚଳନ ।

### ଶିଳ୍ପ, କଳା ଓ ସ୍ଥାପତ୍ୟ

କୁଟୀର ଶିଳ୍ପର ବିକାଶ;
ମୃଣ୍ମୟ ପାତ୍ର ନିର୍ମାଣ;
ବସ୍ତ୍ରବୁଣା ଓ କୃଷି ଉପକରଣ ନିର୍ମାଣ;
କୁରାଢ଼ି, କ୍ଷୁର, ଦାଆ, ପାନିଆ ବ୍ୟବହୃତ;
କଟିବନ୍ଧ, ମଲ୍ଲି ନୂପୁରାଦି ଅଳଙ୍କାରର ପ୍ରଚଳନ;
ଖୋଦନ ଓ ଅଙ୍କନ ଚିତ୍ରକଳାର ବିକାଶ ।

### ଶିକ୍ଷା ଓ ସାହିତ୍ୟ

ବାଚନିକ ବା ଶ୍ରୁତି ଶିକ୍ଷା;
'ମୁଣ୍ଡା', 'ମୁଙ୍ଗେର' ଓ 'ଦ୍ରାବିଡ଼'
କଥିତ ଭାଷାର ପ୍ରଚଳନ ।

### ଧର୍ମ ଓ ସଂସ୍କୃତି

ବୃକ୍ଷ ପୂଜା ଓ ପଶୁପୂଜା;
ଲିଙ୍ଗ ଓ ଯୋନିର ଉପାସନା;
ଶିବ-ଶକ୍ତି ଆରାଧନାର ସୂଚନା

# ବୈଦିକଯୁଗ ( ଖ୍ରୀ: ପୂ ୨୫୦୦–୫୦୦)

## ଇତିହାସ ଓ ସଭ୍ୟତା

ଆର୍ଯ୍ୟମାନଙ୍କର ଆଗମନ ଓ କ୍ଷମତା ବିସ୍ତାର;
ଆର୍ଯ୍ୟ—ଅନାର୍ଯ୍ୟ—ସଂଘର୍ଷ;
ପୁରୁଷାନୁକ୍ରମିକ ରାଜଶାସନ; ପବିତ୍ର ଓ ସାଡ଼ମ୍ବର ଅଭିଷେକ; ସମ୍ରାଟଙ୍କ ସର୍ବାଭୌମ କ୍ଷମତା;
ସଭା-ସମିତିରେ ରାଜକାର୍ଯ୍ୟର ବିଚାର;
ରାଜସୂୟ, ଅଶ୍ୱମେଧାଦି ଯଜ୍ଞଦ୍ୱାରା ଶକ୍ତି ପରୀକ୍ଷା;
ଦୃଢ଼ ଜାତିଭେଦ ପ୍ରଥା;
କାର୍ପାସ, ଚର୍ମ, ପଶମ, ଉର୍ଣ୍ଣବାସ, ହିରଣ୍ୟଖଚିତ ଅଧିବାସାଦି ବ୍ୟବହୃତ;
ଘୋଡ଼ାଦୌଡ଼, ଶିକାର, ପଶା-ଖେଳ, ନର୍ତ୍ତନ, ଗାଥାଗାୟନ ଓ ବୀଣା ବାଦନ ପ୍ରଭୃତି ଆମୋଦନ;
ନୌବାଣିଜ୍ୟର ପ୍ରସାର ।

## ଶିଳ୍ପ, କଳା ଓ ସ୍ଥାପତ୍ୟ

ସହସ୍ରଦ୍ୱାର ଓ ସ୍ତମ୍ଭଯୁକ୍ତ ରାଜପ୍ରାସାଦ;
ଶତପ୍ରାଚୀର ବିଶିଷ୍ଟ ପ୍ରସ୍ତର ଦୁର୍ଗ;
ସୁନା, ରୂପା, କଂସା, ତମ୍ବା, ଲୁହା ପ୍ରଭୃତିର ଆସବାବପତ୍ର, ଅଳଙ୍କାର ଆଭରଣ ଓ ମୁଦ୍ରାବିନିମୟ ରୂପେ ବ୍ୟବହାର;
ସୀବନ ଶିଳ୍ପ ଓ ରଞ୍ଜନ ବିଦ୍ୟାର ବିକାଶ ।

## ଶିକ୍ଷା ଓ ସାହିତ୍ୟ

ଋଗ୍‌ବେଦ ଓ ତତ୍ପରେ ସାମବେଦ, ଯଜୁର୍ବେଦ, ଅଥର୍ବବେଦ, ସଂହିତା, ଆରଣ୍ୟକ ଓ ଉପନିଷଦ ପ୍ରଭୃତିର ସୃଷ୍ଟି;
ପଦପାଠ, କ୍ରମପାଠ, ପ୍ରତିସାଖ୍ୟ, ଅନୁକ୍ରମଣି ଇତ୍ୟାଦି ଆନୁଷଙ୍ଗିକ ଗ୍ରନ୍ଥ ପ୍ରଣୟନ;
ଗୁରୁଗୃହ ବା ଆଶ୍ରମରେ ଶିକ୍ଷା ଅର୍ଜନ;
ତପ, ଯଜ୍ଞ ଓ ଭିକ୍ଷା ଦ୍ୱାରା ଆତ୍ମଶୁଦ୍ଧି;
ଚରକମାନଙ୍କ ଭ୍ରାମ୍ୟମାଣ ଶିକ୍ଷା;
ରାଜାମାନଙ୍କର ଶିକ୍ଷା ସମ୍ମିଳନୀ;
ଗଣିତ, ଜ୍ୟୋତିଷ, ନୀତିଶାସ୍ତ୍ର, ଗାରୁଡ଼ ବିଦ୍ୟାଦିର ପ୍ରସାର ।

## ଧର୍ମ ଓ ସଂସ୍କୃତି

ଆକାଶ, ପୃଥିବୀ, ବାୟୁ, ମେଘ ଓ ଅଗ୍ନି ଆଦିଙ୍କର ପୂଜା;
ଶ୍ରଦ୍ଧା, ମନ୍ୟୁ ଆଦି କଳ୍ପିତ ଦେବତାଙ୍କର ଉପାସନା;
ପଞ୍ଚରୂପରେ ସୂର୍ଯ୍ୟପୂଜା;
ଦୁଗ୍ଧ, ଶସ୍ୟ, ଘୃତାଦି ଯଜ୍ଞବଳି;
ପରବର୍ତ୍ତୀକାଳରେ ଏକେଶ୍ୱରବାଦର ପ୍ରବର୍ତ୍ତନ;
ବିଷ୍ଣୁ ଓ ରୁଦ୍ରପୂଜାର ଆବିର୍ଭାବ ।

# ମାଗଧ (ବୌଦ୍ଧ)ଯୁଗ (ଖ୍ରୀ: ପୂ: ୫୦୦–ଖ୍ରୀ: ପୂ: ୩୨୫)

## ଇତିହାସ ଓ ସଭ୍ୟତା

କାଶୀ, କୁରୁ, ପାଞ୍ଚାଳ, ଅଙ୍ଗ, ମଗଧାଦି ଷୋଳଟି ସାମ୍ରାଜ୍ୟର ଅଭ୍ୟୁଦୟ;
ବିମ୍ବିସାର, ଅଜାତଶତ୍ରୁ ଓ ନନ୍ଦ ବଂଶରାଜାଙ୍କର ରାଜତ୍ୱ;
ଆଲେକ୍‌ଜାଣ୍ଡରଙ୍କ ଭାରତ ଆକ୍ରମଣ;
ଉତ୍ତରାଞ୍ଚଳରେ ସତୀଦାହ ପ୍ରଥାର ପ୍ରଚଳନ;
ଯୁଦ୍ଧରେ ହସ୍ତୀ, ଖଣ୍ଡା, ବର୍ଚ୍ଛା, ଧନୁଶରାଦିର ବ୍ୟବହାର;
ସମାଜରେ ଶ୍ରେଷ୍ଠୀ ଗଣିକାଙ୍କର ବିଶିଷ୍ଟ ସ୍ଥାନ;
ବାଣିଜ୍ୟର ପ୍ରସାର;
ବିନିମୟର ମାଧ୍ୟମ ରୂପେ ରୌପ୍ୟ ମୁଦ୍ରାର ବ୍ୟବହାର ।

## ଶିଳ୍ପ, କଳା ଓ ସ୍ଥାପତ୍ୟ

ହସ୍ତଶିଳ୍ପର ବିକାଶ;
ତକ୍ଷଶିଳାର ଉତ୍‌ଖନନରୁ ପ୍ରସ୍ତର ଶିଳ୍ପର ପ୍ରମାଣ;
କାଠ ଓ ହାତୀଦାନ୍ତର କାରୁକାର୍ଯ୍ୟ;
ଅଜାତଶତ୍ରୁ ପ୍ରମୁଖଙ୍କ ପ୍ରତିକୃତି;
ଗିରିଗୁହା ଓ ବୌଦ୍ଧବିହାରମାନଙ୍କର ପ୍ରସ୍ତର ପ୍ରତିମୂର୍ତ୍ତି ।

## ଶିକ୍ଷା ଓ ସାହିତ୍ୟ

ଶ୍ରୌତ ସୂତ୍ର, ଗୃହ୍ୟସୂତ୍ର, ଧର୍ମ-ସୂତ୍ର, କାମସୂତ୍ର, ପ୍ରଭୃତି ସୂତ୍ର-ସାହିତ୍ୟର ବିକାଶ;
ବାରାଣସୀ ଓ ତକ୍ଷଶିଳା ଶିକ୍ଷା-ପୀଠରେ ପରିଣତ;
ରାଜାନୁକୂଲ୍ୟରେ ଗଣିକାମାନଙ୍କର ବିଶିକ୍ଷା ଓ ତାଲିମ ବ୍ୟବସ୍ଥା ।

## ଧର୍ମ ଓ ସଂସ୍କୃତି

ଇନ୍ଦ୍ର, ବୈଶ୍ରବଣ, ଶିବ, କାର୍ତ୍ତିକେୟ, ଉମା, ବାସିନୀ ପ୍ରଭୃତି ଦେବଦେବୀ ପୂଜା;
ନଦୀ ଓ ବୃକ୍ଷ ପୂଜା;
ଜୈନ ଓ ବୌଦ୍ଧଧର୍ମର ଅଭ୍ୟୁଦୟ ପ୍ରସାର;
ହୀନଯାନ ଓ ମହାଯାନ ଗୋଷ୍ଠୀର ଅଭ୍ୟୁଦୟ;
ଦିଗମ୍ବର ଓ ଶ୍ୱେତାମ୍ବର ଗୋଷ୍ଠୀରେ ଜୈନଧର୍ମାବଲମ୍ବୀ ବିଭକ୍ତ ।

# ମୌର୍ଯ୍ୟଯୁଗ ( ଖ୍ରୀ:ପୂ: ୩୨୫-୧୮୭ )

## ଇତିହାସ ଓ ସଭ୍ୟତା

ଚନ୍ଦ୍ରଗୁପ୍ତ, ବିନ୍ଦୁସାର, ଅଶୋକଙ୍କ ରାଜତ୍ୱ;
ଦିବ୍ୟ-ରାଜତ୍ୱ ଧାରଣାର ଅଭ୍ୟୁଦୟ;
ବିଶ୍ୱଜନୀନ ଚନ୍ତାଧାରାର ବିକାଶ;
ଦ୍ୱୈତ-ଶାସନ ପ୍ରଥାର ଆଂଶିକ ପ୍ରଚଳନ;
ଜନ ମଙ୍ଗଳ ରାଷ୍ଟ୍ରର ପ୍ରଥମ ପରିକଳ୍ପନା;
ମେଗାସ୍ଥିନିସ୍‌ଙ୍କ ଭାରତାଗମନ ।

## ଶିଳ୍ପ, କଳା ଓ ସ୍ଥାପତ୍ୟ

ସାଞ୍ଚି, ସାରନାଥ, ଉଦୟଗିରି, ଖଣ୍ଡଗିରି, ଜୋଗିମରା ପ୍ରଭୃତି ସ୍ଥାନରେ ନିର୍ମିତ ବୌଦ୍ଧସ୍ତୂପ ଓ ଅଶୋକ-ସ୍ତମ୍ଭାଦି ମୌର୍ଯ୍ୟକଳାର ସ୍ୱାତନ୍ତ୍ର୍ୟ ।

## ଶିକ୍ଷା ଓ ସାହିତ୍ୟ

ଅଶୋକଙ୍କର ଶିଳାଲେଖ;
କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର';
ଭଦ୍ରବାହୁଙ୍କ 'କଳ୍ପସୂତ୍ର';
ପାଣିନୀଙ୍କ 'ବ୍ୟାକରଣ';
ପାଲି ସାହିତ୍ୟର ବିକାଶ ;
ରାମାୟଣ ଓ ମହାଭାରତର ରଚନା ଅସମ୍ପୂର୍ଣ୍ଣ ।

## ଧର୍ମ ଓ ସଂସ୍କୃତି

ହିନ୍ଦୁ ବ୍ରାହ୍ମ ଧର୍ମର ପୁନଃ ଜାଗରଣର ଆରମ୍ଭ;
ଶୈବ ଓ ବୈଷ୍ଣବ ଧର୍ମର ପ୍ରଭାବ;
ତନ୍ତ୍ରବାଦର ପ୍ରଭାବ ।

# ପୌରାଣିକ ଯୁଗ ( ଖ୍ରୀ:ପୂ: ୧୮୭–ଖ୍ରୀ:ଅ ୩୨୦ )

| ଇତିହାସ ଓ ସଭ୍ୟତା | ଶିଳ୍ପ, କଳା ଓ ସ୍ଥାପତ୍ୟ | ଶିକ୍ଷା ଓ ସାହିତ୍ୟ | ଧର୍ମ ଓ ସଂସ୍କୃତି |
| --- | --- | --- | --- |
| ଶୁଙ୍ଗ ବଂଶ ଓ ସାତବାହନ ବଂଶୀୟ ରାଜାମାନଙ୍କ ଶାସନ; ଶକ ଓ ପହ୍ଲବମାନଙ୍କ ଅନୁପ୍ରବେଶ;<br>କୁଶାନ ବଂଶର ପ୍ରଭୁତ୍ୱ ବିସ୍ତାର — କନିଷ୍କଙ୍କ ରାଜତ୍ୱ; ନାଗାବଂଶର ଅଭ୍ୟୁତ୍ଥାନ ଓ ପତନ;<br>ସାମନ୍ତ ଶାସନ ସଙ୍ଗେ ସଙ୍ଗେ ସ୍ୱାୟତ୍ତ ଶାସନର ସୂଚନା ।<br>ସରଳ ଓ ନିରାପଦ ସାମାଜିକ ଜୀବନ;<br>କ୍ରୀତଦାସ ପ୍ରଥାର ପ୍ରଚଳନ;<br>ରୌପ୍ୟ ଓ ତାମ୍ର ମୁଦ୍ରା ପ୍ରବର୍ତ୍ତନ । | ବାରହୁତ, ବୁଦ୍ଧଗୟା, ମଥୁରାର ସ୍ତୂପ ସମୂହ;<br>ସାଞ୍ଚିଠାରେ କଳା ନିର୍ମାଣର ବିକାଶ;<br>ବୁଦ୍ଧଙ୍କର ସଶରୀର ରୂପ ପରିବେଷଣ ତଥା ପ୍ରତିମାଗଠନ କଳାର ପ୍ରବର୍ତ୍ତନ । | ପୂର୍ଣ୍ଣାଙ୍ଗ ରାମାୟଣ ଓ ମହାଭାରତ;<br>ଶ୍ରୀମଦ୍ ଭଗବତ୍ ଗୀତା,<br>ମନୁ ସଂହିତା, ଯାଜ୍ଞବଲକ୍ୟ ସ୍ମୃତି ଓ ଉପନିଷଦାବଲୀର ପ୍ରଭାବ;<br>ଅଶ୍ୱଘୋଷଙ୍କର 'ବୁଦ୍ଧଚରିତ';<br>ପତଞ୍ଜଳିଙ୍କର 'ମହାଭାଷ୍ୟ';<br>ଗୁଣାଢ୍ୟଙ୍କ 'ବୃହତ୍‌କଥା';<br>ଆର୍ଯ୍ୟସୁରଙ୍କର 'ଜାତକମାଳା' ଏବଂ ସଦ୍ଧର୍ମ ପୁଣ୍ଡରିକ, ଲଳିତ ବିସ୍ତର;<br>କାତନ୍ତ୍ର, ଗାଥା ସପ୍ତଶତୀ ଇତ୍ୟାଦି । | ବର୍ଣ୍ଣାଶ୍ରମ ଧର୍ମ, ଚତୁର୍ବର୍ଗ, ତ୍ରିବିଧ ମାର୍ଗ, ତ୍ରିମୂର୍ତ୍ତି ଧାରଣା, ଗୋଭକ୍ତି ଆଦି ହିନ୍ଦୁଧର୍ମର ସର୍ବବିଧ ଗୁଣର ପରିପ୍ରକାଶ;<br>ଶୈବ, ଶାକ୍ତ ଓ ବୈଷ୍ଣବ ସମ୍ପ୍ରଦାୟର ବିକାଶ । |

# ଗୁପ୍ତ ଯୁଗ ( ଖ୍ରୀ: ଅ: ୩୨୦—୬୪୭ )

## ଇତିହାସ ଓ ସଭ୍ୟତା

ଚନ୍ଦ୍ରଗୁପ୍ତ, ସମୁଦ୍ରଗୁପ୍ତ, ବିକ୍ରମାଦିତ୍ୟ, ହର୍ଷବର୍ଦ୍ଧନଙ୍କ ରାଜତ୍ୱ;
ରାଜାମାନଙ୍କ ଉପରେ ଦେବତ୍ୱ ଆରୋପ;
ବଂଶାନୁକ୍ରମିକ ଶାସନ;
କେନ୍ଦ୍ରୀଭୂତ ରାଷ୍ଟ୍ରମଣ୍ଡଳ ପ୍ରଥା ପ୍ରବର୍ତ୍ତନ;
ଜାତିଭେଦ ପ୍ରଥାର ଶିଥିଳତା;
ସତୀଦାହ ପ୍ରଥାର ପ୍ରଚଳନ;
ବହୁଦାର ଗ୍ରହଣ ରୂପୀ ଆଭିଜାତ୍ୟ ।

## ଶିଳ୍ପ, କଳା ଓ ସ୍ଥାପତ୍ୟ

ବିଷ୍ଣୁ, ଶିବ, ବୁଦ୍ଧଙ୍କର ମୂର୍ତ୍ତିକଳା;
ନାଳନ୍ଦାର ତାମ୍ରନିର୍ମିତ ବୁଦ୍ଧମୂର୍ତ୍ତି;
ଅଜନ୍ତାର ଚିତ୍ରାଙ୍କନ;
ଦେବଗଡ଼ର ପ୍ରସ୍ତର ମନ୍ଦିର;
ସ୍ୱର୍ଣ୍ଣ ମୁଦ୍ରାରେ କଳା ନୈପୁଣ୍ୟ ।

## ଶିକ୍ଷା ଓ ସାହିତ୍ୟ

କାଳିଦାସ, ବରାହମିହିର ପ୍ରମୁଖ 'ନବରତ୍ନ' ପଣ୍ଡିତଙ୍କର ଅଭ୍ୟୁଦୟ; ଭରତ ମୁନିଙ୍କ 'ନାଟ୍ୟଶାସ୍ତ୍ର', ବିଷ୍ଣୁଶର୍ମାଙ୍କ 'ପଞ୍ଚତନ୍ତ୍ର', ଶୁଦ୍ରକଙ୍କ 'ମୃଚ୍ଛକଟିକ', ବିଶାଖା ଦତ୍ତଙ୍କ 'ମୁଦ୍ରାରାକ୍ଷସ' ଏବଂ ମହାଭାରତର ପରିମାର୍ଜିତ ସଂସ୍କରଣ ଓ ଅଷ୍ଟାଦଶ-ବିଧ ପୁରାଣ ଗ୍ରନ୍ଥର ଅଭ୍ୟୁଦୟ; ଶିଳ୍ପଶାସ୍ତ୍ର, ଜ୍ୟୋତିଷ ଶାସ୍ତ୍ରାଦିର ବିକାଶ ।

## ଧର୍ମ ଓ ସଂସ୍କୃତି

ମୀମାଂସା, ସାଂଖ୍ୟ ବେଦାନ୍ତାଦି ଷଡ଼ବିଧ ହିନ୍ଦୁଧର୍ମର ବିକାଶ; ଶିବ ଓ ବିଷ୍ଣୁ ଉପାସନା; ଜୈନ ଓ ବୌଦ୍ଧଧର୍ମର ପ୍ରଭାବ ଓ ବିଦେଶରେ ପ୍ରସାର ।

# ରାଜପୁତ ଯୁଗ ( ଖ୍ରୀ: ଅ: ୬୪୭—୯୬୨ )

## ଇତିହାସ ଓ ସଭ୍ୟତା

ପ୍ରତିହାର ବଂଶ, ପଲ୍ଲବ ବଂଶ, ଚାଲୁକ୍ୟ ବଂଶ, ରାଷ୍ଟ୍ରକୂଟ ବଂଶର ପ୍ରଭୃତି ବିସ୍ତାର;
ଗ୍ରାମ୍ୟ ସ୍ତରରେ ସ୍ୱାୟତ୍ତଶାସନର ପ୍ରାଧାନ୍ୟ;
ସଭା-ସମିତି ମାଧ୍ୟମରେ ଶାସନ ପରିଚାଳନା ।

## ଶିଳ୍ପ, କଳା ଓ ସ୍ଥାପତ୍ୟ

କାଶ୍ମୀର ଠାରୁ ରାମେଶ୍ୱର ପର୍ଯ୍ୟନ୍ତ ସର୍ବତ୍ର ବହୁ ଉନ୍ନତ କାରୁକାର୍ଯ୍ୟ ବିମଣ୍ଡିତ ମନ୍ଦିର ନିର୍ମାଣ;
ଆର୍ଯ୍ୟ କଳା, ଦ୍ରାବିଡ଼ କଳା ଓ ଶୈଳ ଅଙ୍କନ କଳାର ସ୍ୱାତନ୍ତ୍ର୍ୟ ପ୍ରକଟିତ;
ଏଲୋରା ଓ ହାତୀ ଗୁମ୍ଫାର ସ୍ଥାପତ୍ୟ ଓ ଚିତ୍ରାଙ୍କନ ।

## ଶିକ୍ଷା ଓ ସାହିତ୍ୟ

ଉଦ୍ଦଣ୍ଡପୁର ( ବିହାର ), ମାଳବ, ବିକ୍ରମଶିଳା, ଦେବଗିରି, କାଞ୍ଚି, ଅମରାବତୀ, ପଣ୍ଡିଚେରୀ ପ୍ରଭୃତି ସ୍ଥାନରେ ଶିକ୍ଷାନୁଷ୍ଠାନର ପ୍ରତିଷ୍ଠା;
ଛନ୍ଦ ଅଳଙ୍କାର, ଧ୍ୱନି ଆଦି ବୈୟାକରଣିକ ତତ୍ତ୍ୱର ବିକାଶ;
ବାଣଭଟ୍ଟଙ୍କର 'ହର୍ଷଚରିତ', 'କାଦମ୍ବରୀ', ଦଣ୍ଡୀଙ୍କର 'ଦଶ-କୁମାର ଚରିତ', 'କାବ୍ୟାଦର୍ଶ', ଭର୍ତ୍ତୃହରିଙ୍କ 'ନୀତି-ଶତକମ୍' ଭବଭୂତିଙ୍କର 'ମାଳତୀ-ମାଧବ' 'ଉତ୍ତର ରାମ ଚରିତ' ପ୍ରଭୃତିର ସୃଷ୍ଟି ।

## ଧର୍ମ ଓ ସଂସ୍କୃତି

ଜୈନ ଓ ବୌଦ୍ଧ ଧର୍ମର ପ୍ରାଧାନ୍ୟ ହ୍ରାସ;
ଅଦ୍ୱୈତ ବାଦର ଅଭ୍ୟୁଦୟ;
ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ଚତୁଃଧର୍ମପୀଠ ସ୍ଥାପନ;
ବୈଷ୍ଣବମାନଙ୍କର 'ଆଳବାର୍' ସମ୍ପ୍ରଦାୟ ଓ ଶୈବମାନଙ୍କର 'ନୟନମାର୍' ସମ୍ପ୍ରଦାୟର ବିକାଶ;
ବିଷ୍ଣୁପୁରାଣ ଓ ହରିବଂଶ ପୁରାଣର ଆଧାରରେ ଭାଗବତର ପ୍ରକାଶ ।

# ମୁସଲମାନ ଯୁଗ ( ଖ୍ରୀ: ଅ: ୯୭୨–୧୫୨୬ )

## ଇତିହାସ ଓ ସଭ୍ୟତା

ମୁସଲମାନ ଶକ୍ତିର ବିସ୍ତାର;
ଦାସବଂଶ, ଖିଲିଜୀବଂଶ, ତୋଗଲକ ବଂଶ, ସୟଦ ଓ ଲୋଦୀବଂଶୀୟ ଶାସକଙ୍କ ରାଜତ୍ୱ;
ଦିଲ୍ଲୀ ସାମ୍ରାଜ୍ୟର ବିଲୟ ଓ ବାହମନୀ ସାମ୍ରାଜ୍ୟାଦି ବହୁ ସ୍ୱାଧୀନ ରାଜ୍ୟର ଅଭ୍ୟୁଦୟ;
ବଙ୍ଗ, ଓଡ଼ିଶା, ବିଜୟନଗର ପ୍ରଭୃତି ସ୍ୱାଧୀନ ରାଜ୍ୟର ସାମରିକ ଅଭ୍ୟୁତ୍ଥାନ ।
ସତୀଦାହ, ବାଲ୍ୟବିବାହ ଓ କ୍ରୀତଦାସ ପ୍ରଥାର ବ୍ୟାପକ ପ୍ରଚଳନ ।

## ଶିଳ୍ପ, କଳା ଓ ସ୍ଥାପତ୍ୟ

କାର୍ପାସ, ରେଶମ, ପଶମ ଲୁଗା ଓ ଚନ୍ଦ, କାଗଜ, ଜୋତା ପ୍ରଭୃତି-କ୍ଷୁଦ୍ର ଶିଳ୍ପର ବିକାଶ;
ଅସ୍ତ୍ରଶସ୍ତ୍ର, ସୁରା, ସୁବାସିତ ତୈଳାଦିର ଉତ୍ପାଦନ;
ଦିଲ୍ଲୀର 'କୁତବମୀନାର୍', ଦୌଲତାବାଦର 'ଚାନ୍ଦମୀନାର', ଗୁଲବର୍ଗର 'ଜାମି ମସ୍‌ଜିଦ୍', ପୁରୀର ଜଗନ୍ନାଥ ମନ୍ଦିର, କୋଣାର୍କର ସୂର୍ଯ୍ୟମନ୍ଦିର, ମଦୁରା, ବିଜୟନଗର ଓ ରାମେଶ୍ୱରମ୍‌ର ସ୍ଥାପତ୍ୟଶିଳ୍ପ ଏ ଯୁଗର କଳାକୃତିର ନିଦର୍ଶନ ।

## ଶିକ୍ଷା ଓ ସାହିତ୍ୟ

ହିନ୍ଦୁ ଓ ଇସଲାମୀ ସାହିତ୍ୟର ପାରସ୍ପରିକ ପରିପ୍ରକାଶ; ଉର୍ଦ୍ଦୁ ଭାଷାର ଜନ୍ମ;
ବିଦ୍ୟାନାଥଙ୍କର 'ପ୍ରତାପରୁଦ୍ର କଲ୍ୟାଣ', ଜୟଦେବଙ୍କ 'ଗୀତ ଗୋବିନ୍ଦ', ରବିବର୍ମନଙ୍କ 'ପ୍ରଦ୍ୟୁମ୍ନ ଅଭ୍ୟୁଦୟ', ପାର୍ଥସାରଥିମିଶ୍ରଙ୍କ 'ଶାସ୍ତ୍ରଦୀପିକା' ଓ ବହୁ ଅନୁବାଦ ଗ୍ରନ୍ଥର ପ୍ରକାଶ;
ଶେଖ ନାଜମୁଦ୍ଦିନ୍, ମୌଲନା ଉମ୍ରାଣୀ, ନାଜମୁଦ୍ଦିନ ଜିଲ୍ଲାଣୀ, ସିକନ୍ଦର ଲୋଦୀ ପ୍ରମୁଖ ପାର୍ଶୀ ଓ ଉର୍ଦ୍ଦୁ ସାହିତ୍ୟକଙ୍କ ଆବିର୍ଭାବ ।

## ଧର୍ମ ଓ ସଂସ୍କୃତି

ରାମାନନ୍ଦ, ଚୈତନ୍ୟ, କବୀର, ବଲ୍ଲଭାଚାର୍ଯ୍ୟଙ୍କ ଏକେଶ୍ୱର ଆଦର୍ଶ ପ୍ରଚାର;
ରାମାନୁଜଙ୍କ 'ବିଶିଷ୍ଟ ଦ୍ୱୈତବାଦ', ମାଧ୍ୱଙ୍କର 'ଦ୍ୱୈତବାଦ', ମେକନ୍ଦରଙ୍କ 'ଶୈବ ସିଦ୍ଧାନ୍ତ', ବାସବଙ୍କର 'ବୀର ଶୈବପ୍ରଥା' ତଥା 'ଲିଙ୍ଗାୟତ ଗୋଷ୍ଠୀ'ର ଅଭ୍ୟୁଦୟ;
ବୈଷ୍ଣବ ଭକ୍ତମାନଙ୍କର ଦ୍ୱିବିଧ ଭକ୍ତି-କାନ୍ତଭାବ ଓ ମଧୁରଭାବ;
ଗୁରୁନାନକଙ୍କ ଶିଖଧର୍ମର ପ୍ରଚାର ।

# ମୋଗଲ ଯୁଗ (ଖ୍ରୀ: ଅ: ୧୫୨୬-୧୭୫୦)

| ଇତିହାସ ଓ ସଭ୍ୟତା | ଶିଳ୍ପ, କଳା ଓ ସ୍ଥାପତ୍ୟ | ଶିକ୍ଷା ଓ ସାହିତ୍ୟ | ଧର୍ମ ଓ ସଂସ୍କୃତି |
|---|---|---|---|
| ମୋଗଲ ଶକ୍ତିର ବିସ୍ତାର;<br>ବାବର, ହୁମାୟୁନ, ଆକବର, ଜାହାଙ୍ଗିର, ଶାହଜହାନ ଅଉରଙ୍ଗଜେବ ପ୍ରମୁଖଙ୍କ ରାଜତ୍ୱ;<br>ଶିଖ ଓ ମରହଟ୍ଟା ଶକ୍ତିର ଅଭ୍ୟୁଦୟ;<br>ୟୁରୋପୀୟମାନଙ୍କ ପ୍ରଭାବ ବିସ୍ତାର । | ହିନ୍ଦୁ, ମୋଗଲ ଓ ରାଜପୁତ କଳାର ସ୍ୱାତନ୍ତ୍ର୍ୟ ପ୍ରକାଶ;<br>ସ୍ଥାପତ୍ୟଶିଳ୍ପ ସଙ୍ଗେ ସଙ୍ଗେ ଅଙ୍କନ କଳାର ବିକାଶ;<br>ଦିଲ୍ଲୀସ୍ଥ 'ପୁରୁଣା କିଲ୍ଲ', ଫତେପୁର-ସିକ୍ରୀର 'ବୁଲନ୍ଦ ଦରବାଜା,' 'ତାଜମହଲ';<br>ପାର୍ଶିଆନ ପ୍ରଭାବରୁ ମୁକ୍ତ ସ୍ୱତନ୍ତ୍ର ଭାରତୀୟ ଚିତ୍ରକଳାର ବିକାଶ;<br>ଉନ୍ନତ ବହିର୍ବାଣିଜ୍ୟ; ସୌଖୀନ ପଦାର୍ଥର ରପ୍ତାନି । | ପାର୍ଶୀ ସାହିତ୍ୟର ବିକାଶ ସଙ୍ଗେ ସଙ୍ଗେ ହିନ୍ଦୀ, ଓଡ଼ିଆ, ବଙ୍ଗଳା, ବ୍ରଜ ଭାଷା ପ୍ରଭୃତି ଆଞ୍ଚଳିକ ଭାଷାରେ ସାହିତ୍ୟର ବିକାଶ;<br>'ଆଇନ-ଇ-ଆକବରୀ,' 'ରାଜମନାମା,' 'ଇକବାଲ ନାମା'-ଇ-ଜାହାଙ୍ଗିରୀ,' 'ଆଲମଗିର ନାମା,' 'ସୁରସାଗର', 'ରାମଚରିତ ମାନସ', 'ଚୈତନ୍ୟ ଚରିତାମୃତ', 'କବି କଙ୍କଣଚଣ୍ଡି' ଆଦି ବିବିଧ ସାହିତ୍ୟର ସୃଷ୍ଟି;<br>କଣ୍ଠ-ସଙ୍ଗୀତ ଓ ଯନ୍ତ୍ର ସଙ୍ଗୀତର ବିକାଶ । | ହିନ୍ଦୁ ଓ ଇସଲାମ ଧର୍ମର ସୁସମ୍ପର୍କ ପ୍ରତିଷ୍ଠା;<br>ହିନ୍ଦୁଧର୍ମର ବଳବର୍ଦ୍ଧନ;<br>ହିନ୍ଦୁଧର୍ମାବଲମ୍ବୀମାନଙ୍କ ମଧ୍ୟରେ ସମ୍ପ୍ରଦାୟଗତ ବିଭେଦ;<br>ବାଧ୍ୟତାପୂର୍ବକ ବହୁ ହିନ୍ଦୁଙ୍କ ଇସଲାମ ଧର୍ମ ଗ୍ରହଣ;<br>ହିନ୍ଦୁଧର୍ମତତ୍ତ୍ୱର ଜୀବନ ବିମୁଖତା । |

## ଏଇ ଲେଖକଙ୍କର ଅନ୍ୟାନ୍ୟ ରଚନା

ଯୁଗଜନକ ମହାତ୍ମା ଗାନ୍ଧୀ

ଯୁଗସ୍ରଷ୍ଟା ନେହରୁ

ଯୁଗଜ୍ୟୋତି ଲାଲବାହାଦୁର ଶାସ୍ତ୍ରୀ

ଯୁଗମାନବ ଜାକିର ହୁସେନ୍

ଯୁଗପୁରୁଷ ଗୋପବନ୍ଧୁ ଦାସ

ଯୁଗନେତ୍ରୀ ଇନ୍ଦିରା ଗାନ୍ଧୀ

ପୃଥିବୀର ଅମର ମଣିଷ ( ୨ୟ ଖଣ୍ଡ )

ଯୁଗେ ଯୁଗେ ଆଫ୍ରିକା

ଜାତି ଫନ୍ଦ

ମାନସ ମନ୍ଥନ (ଉପନ୍ୟାସ)

ଡାହାଣୀର ଆତ୍ମହତ୍ୟା

— ପ୍ରକାଶ ପ୍ରତୀକ୍ଷାରେ —

ଯୁଗଦ୍ରଷ୍ଟା ରାଧାକୃଷ୍ଣନ

ଶ୍ରୀମଦ୍ ଭାଗବତ (ଅନୁବାଦ)

ସ୍ୱପ୍ନ ବଳୟ (ଉପନ୍ୟାସ)